# ଭୁବନେଶ୍ୱର ଇତିହାସ

କେଦାରନାଥ ମହାପାତ୍ର



କେଦାରନାଥ ଗବେଷଣା ପ୍ରତିଷ୍ଠାନ
କେଦାରଗୌରୀମାର୍ଗ, ଭୁବନେଶ୍ୱର - ୨

**ଭୁବନେଶ୍ୱର ଇତିହାସ**
**ଲେଖକ: କେଦାରନାଥ ମହାପାତ୍ର**

ପ୍ରକାଶକ : କେଦାରନାଥ ଗବେଷଣା ପ୍ରତିଷ୍ଠାନ,
କେଦାରଗୌରୀ ମାର୍ଗ, ଭୁବନେଶ୍ୱର-୭୫୧୦୦୨

ଅକ୍ଷର ସଂଯୋଜନା ଓ ମୁଦ୍ରଣ - ଅର୍‌ଗାନିକ୍ ପ୍ରେସ୍,
ଭୁବନେଶ୍ୱର-୭୫୧୦୦୨

**ପ୍ରଥମ ସଂସ୍କରଣ : ୨୦୧୮**

ମୂଲ୍ୟ - ତିନିଶହ ଟଙ୍କା ମାତ୍ର

**BHUBANESWAR ITIHASA**
**Written by :Kedaranatha Mahapatra**

**Publisher by :** Kedaranatha Gaveshana Pratisthana, Kedargouri Marg, Bhubaneswar-751002

**Type Setting & Printed at :** Organic Press, Bhubaneswar-751002

**First Edition** - 2018

**Price :** Rs.300/- (Rupees Three hundred only)

# ପ୍ରସ୍ତାବନା

କେଦାରନାଥ ଗବେଷଣା ପ୍ରତିଷ୍ଠାନର ଦିବଂଗତ ସମ୍ପାଦକ ଡକ୍ଟର ଭଗବାନ ପଣ୍ଡାଙ୍କ ଉଦ୍ୟମରେ ଓଡ଼ିଶାର ପ୍ରଖ୍ୟାତ ଐତିହାସିକ ସ୍ୱର୍ଗତ କେଦାରନାଥ ମହାପାତ୍ରଙ୍କ ଦ୍ୱାରା ଲିଖିତ 'ଭୁବନେଶ୍ୱର ଇତିହାସ'ର ସମ୍ପାଦନା ଓ ପ୍ରକାଶନ ନିମନ୍ତେ ଯେଉଁ ପ୍ରଚେଷ୍ଟା ଆରମ୍ଭ ହୋଇଥିଲା, ଦୀର୍ଘଦିନ ପରେ ତାହା ଆଜି ଫଳପ୍ରସୂ ହୋଇଛି । ଏକ କ୍ଷୁଦ୍ର ଗୁଣ୍ଡୁଚିମୂଷା ଭଳି ଏହି ମହାନ କାର୍ଯ୍ୟର ସମ୍ପାଦନା ଓ ବିଷୟ ସଜ୍ଜୀକରଣ କ୍ଷେତ୍ରରେ ମୋର କିଛି ଅବଦାନ ଥିଲା, ପ୍ରାକ୍ତନ ସମ୍ପାଦକ ଶ୍ରୀଯୁକ୍ତ ଭାଗୀରଥି ମହାପାତ୍ରଙ୍କ ପ୍ରସ୍ତୁତ 'ଅବତରଣିକା'ରେ ତାହାର ସୂଚନା ପ୍ରଦତ୍ତ ।

ଏହି ଦୀର୍ଘ ବିଳମ୍ବିତ ମହାନ କାର୍ଯ୍ୟକୁ ଗୋଷ୍ଠୀଗତ ଉଦ୍ୟମରେ ସମାପନ କରାଯାଇଛି । ଏହି ଅବସରରେ ବିଭିନ୍ନ ସ୍ତରରେ ଏହି କାର୍ଯ୍ୟ ସହିତ ସଂପୃକ୍ତ ଅନୁଷ୍ଠାନର ପ୍ରତିଷ୍ଠାତା ସଭାପତି ସ୍ୱର୍ଗତ ଗୁଣନିଧି ମହାପାତ୍ର, ପ୍ରାକ୍ତନ ସମ୍ପାଦକ ଡକ୍ଟର ଭଗବାନ ପଣ୍ଡା, ଶ୍ରୀଯୁକ୍ତ ଭାଗୀରଥି ମହାପାତ୍ର, ବର୍ତ୍ତମାନର ସଭାପତି ଶ୍ରୀ ରଘୁନାଥ ମିଶ୍ର, ସମ୍ପାଦନା ମଣ୍ଡଳୀର ସଦସ୍ୟବୃନ୍ଦ ପ୍ରଫେସର ରାଜକିଶୋର ମିଶ୍ର, ପ୍ରଫେସର ଗୋପାଳକୃଷ୍ଣ ଦାଶ, ପଣ୍ଡିତ ମାନଗୋବିନ୍ଦ ମହାସୂପକାର, ଶ୍ରୀ ଭାଗୀରଥି ମହାସୁଆର ଏବଂ ପ୍ରାକ୍ତନ କାର୍ଯ୍ୟକାରୀ ସମିତି ସଦସ୍ୟ ଡକ୍ଟର ରବିନାରାୟଣ ଦାଶ, ଡକ୍ଟର ଜଗନ୍ନାଥ ମହାନ୍ତି, ଓ ଡକ୍ଟର ଲାବଣ୍ୟଚନ୍ଦ୍ର ସାହୁ ପ୍ରମୁଖଙ୍କ ନିକଟରେ ଅନୁଷ୍ଠାନ ତରଫରୁ ମୁଁ କୃତଜ୍ଞତା ଜ୍ଞାପନ କରୁଛି । ପ୍ରାକ୍ତନ ସମ୍ପାଦକ ଶ୍ରୀ ଭାଗୀରଥି ମହାପାତ୍ରଙ୍କ କାର୍ଯ୍ୟକାଳ ମଧ୍ୟରେ ଏହି ପୁସ୍ତକ ପ୍ରକାଶନର ପ୍ରସ୍ତୁତି କାର୍ଯ୍ୟ ସରିଥିଲା । ତେଣୁ ଏହି ପୁସ୍ତକ ପ୍ରକାଶନର ସବୁ ଶ୍ରେୟ ତାଙ୍କର । ମୁଁ ଦୀର୍ଘ ଅସୁସ୍ଥତା ମଧ୍ୟରେ ଏହି ପୁସ୍ତକ ପ୍ରକାଶନ ଦେଖି ପାରିବି କି ନାହିଁ ଏହି ସନ୍ଦେହ ମଧ୍ୟରେ ଥିଲି । କିନ୍ତୁ ଭଗବାନଙ୍କର ଇଚ୍ଛାରେ ଆଜି ମୁଁ ସମ୍ପାଦକ ଥିଲାବେଳେ ପୁସ୍ତକଟି ପ୍ରକାଶିତ ହେଉଛି, ଏହା ମୋ ପାଇଁ ସୌଭାଗ୍ୟର କଥା ।

ଏହି ପୁସ୍ତକଟି ଯେଉଁମାନଙ୍କ ସହଯୋଗରେ ସୂର୍ଯ୍ୟାଲୋକ ଦେଖୁଛି ସେମାନେ ସମସ୍ତେ ଧନ୍ୟବାଦାର୍ହ । ବାରମ୍ବାର ସଂଶୋଧନ ପରେ ମୁଦ୍ରଣ କାର୍ଯ୍ୟନିମନ୍ତେ ଧୈର୍ଯ୍ୟ ରଖି ଏହି କାର୍ଯ୍ୟ ସମ୍ପାଦନ କରିଥିବାରୁ ଅର୍ଗାନିକ ପ୍ରେସ୍‌ର ସତ୍ତ୍ୱାଧିକାରୀ ଶ୍ରୀ ଅରୁଣ କୁମାର ପ୍ରଧାନଙ୍କୁ ମୋର ଆନ୍ତରିକ ଧନ୍ୟବାଦ । ଏହି ପୁସ୍ତକର ପ୍ରକାଶନ କାର୍ଯ୍ୟକୁ ତ୍ୱରାନିତ କରିବାକୁ ଆଗ୍ରହୀ ବର୍ତ୍ତମାନ କାର୍ଯ୍ୟକାରୀ ସମିତିର ସମସ୍ତ କର୍ମକର୍ତ୍ତା ଓ ସଦସ୍ୟ-ସଦସ୍ୟାଙ୍କ ନିକଟରେ ମୁଁ କୃତଜ୍ଞତା ଜ୍ଞାପନ କରୁଛି ।

ଡକ୍ଟର ହରେକୃଷ୍ଣ ପାତ୍ର
*ସମ୍ପାଦକ*
କେଦାରନାଥ ଗବେଷଣା ପ୍ରତିଷ୍ଠାନ

*୧୪, ଫେବୃୟାରୀ ୨୦୧୮*
*ମହାଶିବରାତ୍ରି*

# ଅବତରଣିକା

ପ୍ରଖ୍ୟାତ ଐତିହାସିକ ସ୍ୱର୍ଗତ କେଦାରନାଥ ମହାପାତ୍ରଙ୍କ ରଚିତ ପୁସ୍ତକ 'ଭୁବନେଶ୍ୱର ଇତିହାସ' ଏକ ବିରଳ କୃତି । ସ୍ୱର୍ଗତ ମହାପାତ୍ରଙ୍କ ରଚିତ ଓ ପ୍ରକାଶିତ ଅନ୍ୟାନ୍ୟ ପୁସ୍ତକଗୁଡ଼ିକ ବର୍ତ୍ତମାନ ସର୍ବାଦୃତ । କିନ୍ତୁ 'ଭୁବନେଶ୍ୱର ଇତିହାସ' ପୁସ୍ତକଟି ୧୯୩୩ ମସିହାରେ ରଚିତ ହୋଇଥିଲେ ମଧ ଅଜ୍ଞାତ କାରଣରୁ ବର୍ତ୍ତମାନ ସୁଦ୍ଧା ଅପ୍ରକାଶିତ ଥିଲା । କେଦାରନାଥ ଗବେଷଣା ପ୍ରତିଷ୍ଠାନ ବର୍ତ୍ତମାନ ଏହାକୁ ପ୍ରକାଶିତ କରି ଲୋକଲୋକଚନକୁ ଆଣିବା ପାଇଁ ପ୍ରୟାସ କରିଅଛି । ଏହି ପୁସ୍ତକଟିରେ ତତ୍‌କାଳୀନ ଭୁବନେଶ୍ୱରର ପୃଷ୍ଠଭୂମି, ଭୁବନେଶ୍ୱରର ଐତିହାସିକ ବିବରଣ, ଜୈନ ଓ ବୌଦ୍ଧଧର୍ମର ବିକାଶ, ଶୈବ, ଶାକ୍ତ ଓ ବୈଷ୍ଣବ ଧର୍ମଧାରା, ଉତ୍କଳୀୟ ମନ୍ଦିରଗୁଡ଼ିକର ବିଶେଷତ୍ୱ, ଶିଳ୍ପ ଓ ସ୍ଥାପତ୍ୟର କ୍ରମବିକାଶ, ଅଷ୍ଟାୟତନ(ତୀର୍ଥ, ଶମ୍ଭୁ ଓ ଚଣ୍ଡୀ ବିଷୟରେ ବିବରଣୀ), ପ୍ରାଚୀନ ମଠ ଓ ସେବାପୂଜା ଏବଂ ବ୍ରିଟିଶ ଶାସନ ସମୟରେ ଭୁବନେଶ୍ୱର ବିଷୟରେ ବିଶଦ୍ ଭାବେ ବର୍ଣ୍ଣିତ । ଏଣୁ ଏହି ପୁସ୍ତକଟି ସର୍ବସାଧାରଣରେ ଆଦୃତ ହେବା ସଙ୍ଗେ ସଙ୍ଗେ ଗବେଷକମାନଙ୍କ ପାଇଁ ଉପାଦେୟ ହେବାର ଆଶା କରାଯାଏ ।

ଏହି ପାଣ୍ଡୁଲିପିଟି ସ୍ୱର୍ଗତ କେଦାରନାଥ ମହାପାତ୍ରଙ୍କ ସ୍ୱଗୃହରୁ କେତେକ ପୁସ୍ତକ ଓ ପତ୍ରପତ୍ରିକା ସହ ସଂଗ୍ରହ କରାଯାଇଥିଲା । କେଦାରନାଥ ଗବେଷଣା ପ୍ରତିଷ୍ଠାନର ତତ୍‌କାଳୀନ ସଂପାଦକ ତଥା ବିଶିଷ୍ଟ ଗବେଷକ ଡ. ଭଗବାନ ପଣ୍ଡା ଏହାକୁ ସ୍ୱର୍ଗତ କେଦାରନାଥ ମହାପାତ୍ରଙ୍କ ପୁରୁଣା ନଥିପତ୍ର ମଧ୍ୟରୁ ଆବିଷ୍କାର କରି ପ୍ରକାଶନ ପାଇଁ ପ୍ରାରମ୍ଭିକ ଉଦ୍ୟମ କରିଥିଲେ । ଏଣୁ ମୁଁ ସ୍ୱର୍ଗତ ପଣ୍ଡା ମହାଶୟଙ୍କୁ ଶ୍ରେୟତା ଓ ଶ୍ରଦ୍ଧାଞ୍ଜଳି ଜ୍ଞାପନ କରୁଛି । ଗ୍ରନ୍ଥାଗାରିକା ଶ୍ରୀମତୀ ବିନୋଦିନୀ ସାହୁଙ୍କ ଜରିଆରେ ଉକ୍ତ ଅସ୍ପଷ୍ଟ ପାଣ୍ଡୁଲିପିର ପୁନର୍ଲିଖନ କରାଯାଇଥିବାରୁ ତାଙ୍କୁ ମଧ ଆନ୍ତରିକ ଧନ୍ୟବାଦ ଜଣାଉଛି । ତତ୍‌ପରେ ଶ୍ରୀ ଭଗବାନ ପଣ୍ଡା ଓ ସ୍ୱର୍ଗତ ରବିନାରାୟଣ ଦାଶ ଏହି ପାଣ୍ଡୁଲିପିକୁ ପ୍ରକାଶନ କରିବା ପାଇଁ ମନସ୍ଥ କରି କାର୍ଯ୍ୟାରମ୍ଭ କରିଥିଲେ । କିନ୍ତୁ ପରିତାପର ବିଷୟ ଉଭୟଙ୍କର ସ୍ୱାସ୍ଥ୍ୟଗତ ସମସ୍ୟା ଯୋଗୁ ଏହି କାର୍ଯ୍ୟ ସଂପୂର୍ଣ୍ଣ ହୋଇ ନଥିଲା । ୨୦୦୭ ମସିହାରେ ଏହି ପାଣ୍ଡୁଲିପିଟିର ପ୍ରକାଶନ ପ୍ରସ୍ତାବକୁ ଆଲୋଚନା କରାଯାଇ ତତ୍‌କାଳୀନ ଉପସଭାପତି ଡ. ଜଗନ୍ନାଥ ମହାନ୍ତିଙ୍କୁ ଦାୟିତ୍ୱ ନ୍ୟସ୍ତ କରାଯାଇଥିଲା; ମାତ୍ର ତାହା କାର୍ଯ୍ୟକାରୀ ହୋଇପାରିନଥିଲା ସମ୍ଭବତଃ ସ୍ୱର୍ଗତ ମହାନ୍ତିଙ୍କ ଅସୁସ୍ଥତା ଯୋଗୁ । ଏହି ପାଣ୍ଡୁଲିପିଟି ସ୍ୱର୍ଗତ ଦାଶଙ୍କ ପାଖରେ ଥିବାବେଳେ ତାଙ୍କର ଦେହାବସାନ ହେଲା ଏବଂ ତାହା ୨୦୧୧ ରେ ତତ୍‌କାଳୀନ ସଭାପତି ସ୍ୱର୍ଗତ ଗୁଣନିଧି ମହାପାତ୍ରଙ୍କ ପ୍ରଚେଷ୍ଟାରେ ସ୍ୱର୍ଗତ ଦାଶଙ୍କ ସ୍ୱଗୃହରୁ ଅଣାଯାଇଥିଲା ।

ଶେଷରେ ଏହି ଅପ୍ରକାଶିତ ପାଣ୍ଡୁଲିପି "ଭୁବନେଶ୍ୱର ଇତିହାସ"କୁ ପ୍ରତିଷ୍ଠାନ ନିଜେ ଛାପିବା ପାଇଁ ନିଷ୍ପତ୍ତି ହେଲା ୧୯.୦୩.୨୦୧୨ରେ ଅନୁଷ୍ଠିତ ପରିଚାଳନା ସମିତି ବୈଠକରେ । ସମ୍ମାନନୀୟ ସଭାପତି ଶ୍ରୀଯୁକ୍ତ ରଘୁନାଥ ମିଶ୍ରଙ୍କ ଆଗ୍ରହ ଓ ପ୍ରୋତ୍ସାହନରେ ଏହି ପାଣ୍ଡୁଲିପି ପ୍ରକାଶନର ପ୍ରାଥମିକ କାର୍ଯ୍ୟ ଡ. ହରେକୃଷ୍ଣ ପାତ୍ରଙ୍କ ଉପରେ ନ୍ୟସ୍ତ କରାଯାଇଥିଲା । ସେ ଆଗ୍ରହର ସହିତ ଏହି ପାଣ୍ଡୁଲିପିର ସମ୍ପାଦନା, ପାଠୋଦ୍ଧାର, ପାଠ ପୁନର୍ବିନ୍ୟାସ ସହ ଡି.ଟି.ପି. ପ୍ରସ୍ତୁତି ଓ ସଂଶୋଧନ କାର୍ଯ୍ୟ ସମାପନ କରିଥିଲେ । ପ୍ର. ରାଜକିଶୋର ମିଶ୍ର, ପଣ୍ଡିତ ମାନଗୋବିନ୍ଦ ମହାସୂପକାର, ଡ. ଗୋପାଳକୃଷ୍ଣ ଦାଶ ଓ ଯୁଗ୍ମ ସଂପାଦକ ଶ୍ରୀଯୁକ୍ତ ଭାଗୀରଥି ମହାସୁଆର ଆବଶ୍ୟକୀୟ ସଂଶୋଧନ କାର୍ଯ୍ୟରେ ସହଯୋଗ କରିଥିଲେ । ସଭାପତି ଏହି କାର୍ଯ୍ୟକୁ ଆରମ୍ଭ କରାଇଥିବାରୁ ମୁଁ ତାଙ୍କ ପାଖେ କୃତଜ୍ଞ । ଡ. ହରେକୃଷ୍ଣ ପାତ୍ର, ପ୍ରଫେସର ମିଶ୍ର, ଶ୍ରୀଯୁକ୍ତ ମହାସୂପକାର, ଡ. ଗୋପାଳକୃଷ୍ଣ ଦାଶ ଓ ଶ୍ରୀଯୁକ୍ତ ମହାସୁଆରଙ୍କୁ ମଧ୍ୟ ମୋର ହାର୍ଦ୍ଦିକ କୃତଜ୍ଞତା ଜ୍ଞାପନ କରୁଛି ।

ଏହି କାର୍ଯ୍ୟ ଆଗେଇ ଚାଲିଥିବା ସମୟରେ ଡ. ପାତ୍ରଙ୍କ ଅଚାନକ ଅସୁସ୍ଥତା ଆଉ ଏକ ପ୍ରତିବନ୍ଧକ ସୃଷ୍ଟି କଲା ଏବଂ ସେ ସଭାପତିଙ୍କୁ ଆଉ ଏ କାର୍ଯ୍ୟ ତାଙ୍କ ଦ୍ୱାରା ତୁଲାଇବା ସମ୍ଭବ ନୁହେଁ ବୋଲି ଜଣାଇଲେ । ତାପରେ ଉପରଲିଖିତ ଗବେଷକମାନଙ୍କର ଏକ ମିଳିତ ବୈଠକ ପରେ ପାଣ୍ଡୁଲିପିରେ ପ୍ରଦତ୍ତ ସଂସ୍କୃତ ଶ୍ଳୋକଗୁଡ଼ିକୁ ମୂଳପୁସ୍ତକ ସହିତ ମିଳାଇ ଆବଶ୍ୟକ ସଂଶୋଧନ କରାଗଲା । ପରିଶେଷରେ ମୁଖବନ୍ଧ ପ୍ରସ୍ତୁତି କାର୍ଯ୍ୟ ଡ. ଗୋପାଳକୃଷ୍ଣ ଦାଶ ସମ୍ପନ୍ନ କଲେ ଓ ତାର ପ୍ରୁଫ୍ ସଂଶୋଧନ କାର୍ଯ୍ୟ ଶ୍ରୀଯୁକ୍ତ ଭାଗୀରଥି ମହାସୁଆର କରିଥିଲେ ।

ଏହିପରି ବହୁ ଘାତପ୍ରତିଘାତ ଭିତରେ ସ୍ୱର୍ଗତ କେଦାରନାଥ ମହାପାତ୍ରଙ୍କ ରଚିତ 'ଭୁବନେଶ୍ୱର ଇତିହାସ' ସଂପାଦନା କରାଯାଇ ପ୍ରକାଶନ ନିମନ୍ତେ ଉଦ୍ୟମ କରାଯାଇଥିଲା । ମାତ୍ର କେତେକ କାରଣବଶତଃ ତାହାର ପ୍ରକାଶନ ପୁଣି ଘୁଞ୍ଚିଗଲା । ଯାହା ହେଉ ଏବେ ତାହାର ପ୍ରକାଶନ ହେଉଥିବା ବଡ଼ ଆନନ୍ଦର କଥା । ଏହି ପୁସ୍ତକଟି ସୁଧୀଜନଙ୍କ ଦ୍ୱାରା ଆଦୃତ ହେବ ବୋଲି ମୋର ଆଶା ଓ ବିଶ୍ୱାସ ।

ଭାଗୀରଥି ମହାପାତ୍ର
ପୂର୍ବତନ ସଂପାଦକ
**କେଦାରନାଥ ଗବେଷଣା ପ୍ରତିଷ୍ଠାନ**

# ପୁରୋବାକ୍

କାଳର ଗତିରେ ବହୁ ପରିଚୟ ମଧ ଦେଇ ଅଧୁନାତନ ଭୁବନେଶ୍ୱର ଏକ ବିକଶିତ ନଗରରେ ପରିଣତ ହେବାକୁ ଯାଉଛି । କୃତିବାସ (କୀର୍ତିବାସ) କଟକ, ଏକାମ୍ର, ସ୍ୱର୍ଣ୍ଣାଚଳ(ସ୍ୱର୍ଣ୍ଣାଦ୍ରି), ଗୁପ୍ତକାଶୀ, ଚକ୍ରକ୍ଷେତ୍ର ଓ ତ୍ରିଭୁବନେଶ୍ୱର - ଏହି ସବୁ ନାମ ଭୁବନେଶ୍ୱରର ପ୍ରାଚୀନତା ପ୍ରତିପାଦିତ କରବି ପାଇଁ ପର୍ଯ୍ୟାପ୍ତ ସାମଗ୍ରୀ ସାଉଁଟିବାର ଉପାଦେୟ ଉପାଦାନ ।

ଅଶୋକ, ଖାରବେଳ ଓ ଶିଶୁପାଳଗଡ଼ ପରି ଐତିହାସିକ ଚରିତ୍ର ଓ ପୁରାତନ ଭୁବନେଶ୍ୱରର ପ୍ରାଚୀନତାର ସାକ୍ଷ୍ୟ ପ୍ରଦାନ କରନ୍ତି । ଏହାର ଲୋକସଂସ୍କୃତି ବୌଦ୍ଧ ଓ ଜୈନ ଧର୍ମ ଧାରଣା ଦ୍ୱାରା ପ୍ରଭାବିତ ହୋଇଥିଲା । ପରବର୍ତ୍ତୀ ସମୟରେ ଶୈବତନ୍ତ୍ର ବୌଦ୍ଧ ଓ ଜୈନତନ୍ତ୍ରକୁ ଆତ୍ମସାତ୍ କରି ଉଭୟର ଗୁରୁତ୍ୱକୁ ଲୋପ କରିବାର ସାମର୍ଥ୍ୟ ପ୍ରଦର୍ଶନ କଲା । ପୁରୀ (ପୁରୁଷୋତ୍ତମ)ରେ ବୈଷ୍ଣବଧର୍ମର ଅଧିକ ପ୍ରଚାର ଓ ପ୍ରସାର ଲାଭକରିବା ଯୋଗୁ ଭୁବନେଶ୍ୱରର ଐତିହାସିକ ପ୍ରାଚୀନତା ପ୍ରାୟ ଉପେକ୍ଷିତ ହେଲା ।

ସ୍କନ୍ଦପୁରାଣରେ ଉତ୍କଳଖଣ୍ଡ, ବ୍ରହ୍ମପୁରାଣ ଓ କପିଳସଂହିତା ପୁରୁଷୋତ୍ତମ କ୍ଷେତ୍ରକୁ ମହିମାମଣ୍ଡିତ କରିଛନ୍ତି । ବିରଜାକ୍ଷେତ୍ରରୁ ପୁରୁଷୋତ୍ତମକ୍ଷେତ୍ର ପ୍ରତି ତୀର୍ଥଯାତ୍ରାରେ ଏକାମ୍ର ଏକ ପ୍ରାସଙ୍ଗିକ ଇତିବୃତ୍ତ ରୂପେ ସ୍ଥାନ ପାଇଛି । ଅଶୋକ ଓ ଖାରବେଳଙ୍କ ଶିଳାଲିପି, ଶିଶୁପାଳଗଡ଼ର ଖୋଦନ, କପିଳସଂହିତା, ଏକାମ୍ରପୁରାଣ, ଏକାମ୍ରଚନ୍ଦ୍ରିକା ଓ ସ୍ୱର୍ଣ୍ଣାଦ୍ରିମହୋଦୟପରି କେତେକ ସ୍ଥଳପୁରାଣ ବା କ୍ଷେତ୍ରମାହାତ୍ମ୍ୟ ଭୁବନେଶ୍ୱରର ପ୍ରାଚୀନତା ଓ ବୈଶିଷ୍ଟ୍ୟ ନିରୂପଣ କରିବାରେ ଅତୀବ ଉପାଦେୟ ତଥ୍ୟ ରୂପେ ସ୍ୱୀକୃତ ।

ଏକାମ୍ରପୁରାଣ ବିଶାଳ କଳେବର ଧାରଣ କରିଥିବା ଏକ ସ୍ଥଳପୁରାଣ । ଏକାମ୍ର ଚନ୍ଦ୍ରିକା ଓ ସ୍ୱର୍ଣ୍ଣାଦ୍ରିମହୋଦୟ ଏକାମ୍ର ପୁରାଣର ଅନେକ ଅଂଶ ସହ ସାମଞ୍ଜସ୍ୟ ରଖିଛନ୍ତି । ଗ୍ରନ୍ଥର ଆକାର ଦୃଷ୍ଟିରୁ ଏକାମ୍ର ପୁରାଣର ସଂକ୍ଷିପ୍ତ ସଂସ୍କରଣ ପରି ଜଣା ପଡୁଥିଲେ ମଧ ଉକ୍ତ ପୁରାଣଦ୍ୱୟ ସେମାନଙ୍କର ସ୍ୱାତନ୍ତ୍ର୍ୟ ରଖିବାର ଯଥାର୍ଥତା ରହିଛି । ଏକାମ୍ର ପୁରାଣ ଅନ୍ୟ ପୁରାଣ ଓ ଉପପୁରାଣ ପରି ଦୀର୍ଘ ହୋଇଥିବାରୁ ଆର. ସି. ହାଜରା, କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ଓ ଉପେନ୍ଦ୍ରନାଥ ଧଳଙ୍କ ପରି ଗବେଷକଙ୍କର ଅନୁସନ୍ଧାନର ବିଷୟ ହୋଇଛି । ଅନ୍ୟ ଦୁଇଟି ଲଘୁ ପୁରାଣ ହେବା ସହ ଇତିହାସ ଓ ପୁରାଣ ବିଷୟକୁ ସମ୍ପାଦିତ ଢଙ୍ଗରେ

ଉପସ୍ଥାପିତ କରିଛନ୍ତି । ଶ୍ରୀତତ୍ତ୍ୱବୋଧିନୀ ଓ ଲିଙ୍ଗରାଜ ପୂଜା ପଦ୍ଧତି ପରି ପୁସ୍ତକରେ ଭୁବନେଶ୍ୱରର ସାମଗ୍ରୀ ଉପଲବ୍ଧ ହୋଇପାରେ । ବ୍ରହ୍ମପୁରାଣର ଉତ୍କଳଦେଶ ମାହାତ୍ମ୍ୟରେ କୋଣାର୍କର ମାହାତ୍ମ୍ୟ ରହିଥିବାରୁ ତା'ର ପ୍ରଥମ ୧୩୮ ଅଧ୍ୟାୟ (ଆନନ୍ଦାଶ୍ରମ ସଂସ୍କରଣରେ ଉପଲବ୍ଧ)ରେ ଉତ୍କଳଦେଶର ପୁଙ୍ଖାନୁପୁଙ୍ଖ ବିବରଣ ମିଳେ । ଆର. ସି. ହାଜରା (Puranic Reecords on Hindu Rites and Customs, 1940 : 145-146, Dacca) ଖ୍ରୀଷ୍ଟୀୟ ଦଶମରୁ ଦ୍ୱାଦଶ ଶତାବ୍ଦୀ ମଧ୍ୟରେ ଏହାର କାଳ ନିର୍ଦ୍ଧାରଣ କରିଛନ୍ତି । ବାଚସ୍ପତି ମିଶ୍ର (ଖ୍ରୀଷ୍ଟୀୟ ପଞ୍ଚଦଶ ଶତାବ୍ଦୀ) 'ତୀର୍ଥଚିନ୍ତାମଣି'ରେ ଏହାର ଶ୍ଳୋକ ଉଦାହରଣ ରୂପେ ଦେଇଛନ୍ତି । କୋଣାର୍କ ମନ୍ଦିର (୧୨୪୧ ଖ୍ରୀ.ଅ) ବିଷୟ ଏଥିରେ ଥିବାରୁ ଉକ୍ତ ଅଂଶ ଖ୍ରୀଷ୍ଟୀୟ ଚତୁର୍ଦ୍ଦଶ ପଞ୍ଚଦଶ ଶତାବ୍ଦୀ ମଧ୍ୟରେ ହୋଇଥିବାର ସମ୍ଭବ । ପୁରାଣର ଉକ୍ତ ଅଂଶ ଅନ୍ତର୍ଭୁକ୍ତ ହୋଇଥିବାରୁ ବିରଜାକ୍ଷେତ୍ର, ଏକାମ୍ରକ୍ଷେତ୍ର, କୋଣାର୍କ ଓ ପୁରୁଷୋତ୍ତମ କ୍ଷେତ୍ରର ମାହାତ୍ମ୍ୟ ବର୍ଣ୍ଣନା କରିଥିବା ସ୍ଥଳପୁରାଣ ସବୁ ପଞ୍ଚଦଶ ଶତାବ୍ଦୀ ପରେ ହୋଇଥିବା ବିଚାର କରାଯାଇପାରେ ।

ଭୁବନେଶ୍ୱର ଇତିହାସ ଓ ପୁରାଣତତ୍ତ୍ୱ ପୌରାଣିକ ଭୁବନେଶ୍ୱର ଅପେକ୍ଷା ଅଧିକ ପ୍ରାଚୀନ । ଅଶୋକ ଓ ଖାରବେଳଙ୍କ ଅଧିକାର ଓ ରାଜତ୍ୱ ତଥା ଶିଳାଲିପି ଏହାର ପ୍ରାଚୀନତାର ବଳିଷ୍ଠ ପ୍ରମାଣ । ରାଜେନ୍ଦ୍ର ଲାଲ ମିତ୍ରଙ୍କର Antiquities of Orissa, ଓମାଲି ସାହେବଙ୍କର Gazetteer of Puri District, ମନମୋହନ ଗଙ୍ଗୋପାଧ୍ୟାୟଙ୍କର 'Orissa and her Remains', ଗୁରୁଦାସ ସରକାରଙ୍କର 'ମନ୍ଦିର କଥା', ଚିନ୍ତାମଣି ଆଚାର୍ଯ୍ୟଙ୍କର 'ଭୁବନେଶ୍ୱର', କୃଷ୍ଣଚନ୍ଦ୍ର ପାଣିଗ୍ରାହୀଙ୍କର 'Archaeological Remains at Bhubaneswar', ମାନଗୋବିନ୍ଦ ମହାସୂପକାରଙ୍କର 'ଭୁବନେଶ୍ୱର ଐତିହ୍ୟ' ଆଦି ପୁସ୍ତକ ଭୁବନେଶ୍ୱରର ବହୁ ଅନାଲୋଚିତ ଦିଗ ଲୋକଲୋଚନକୁ ଆଣିବାରେ ସହାୟକ ।

ବିଶିଷ୍ଟ ଐତିହାସିକ କେଦାରନାଥ ମହାପାତ୍ରଙ୍କ ରଚିତ "ଭୁବନେଶ୍ୱର ଇତିହାସ" ଏପର୍ଯ୍ୟନ୍ତ ଅପ୍ରକାଶିତ ଥିଲା । କେଦାରନାଥ ଗବେଷଣା ପ୍ରତିଷ୍ଠାନ ପୂଜ୍ୟପୂଜାର ଦୃଷ୍ଟାନ୍ତ ରୂପେ ମହାପାତ୍ରଙ୍କର ଉକ୍ତ ଅପ୍ରକାଶିତ ପୁସ୍ତକକୁ ଲୋକଲୋଚନକୁ ଆଣିବାର ଶ୍ଳାଘ୍ୟ ପ୍ରୟାସ କରିଛନ୍ତି । କେଦାରନାଥ ମହାପାତ୍ରଙ୍କର 'ଶ୍ରୀ ଜୟଦେବ ଓ ଗୀତଗୋବିନ୍ଦ', 'ଖୁରୁଧା ଇତିହାସ', 'Descriptive Catalogue' ପ୍ରଭୃତି ଅନେକ ପୁସ୍ତକ ଗବେଷକଙ୍କର ଧ୍ୟେୟ ହୋଇଛି । ଭୁବନେଶ୍ୱର ବିଷୟରେ ଏକ ପୁସ୍ତକର ଆବଶ୍ୟକତା ଅନୁଭୂତ ହେଉଥିଲା । ତାଙ୍କର ଏହି ପୁସ୍ତକ ଅଭିଜ୍ଞ ସମ୍ପାଦକ ମଣ୍ଡଳୀ ଦ୍ୱାରା ସମ୍ପାଦିତ

ହୋଇ ବହୁ ଜିଜ୍ଞାସା ପୂର୍ତ୍ତି ଓ ସୃଷ୍ଟି କରିବାର ଆଶା ରହିଛି ।

ଓଡ଼ିଶାର ସୋମବଂଶୀ(କେଶରୀ)ଙ୍କ ରାଜତ୍ୱ କାଳରେ ଯେଉଁ ସୁବର୍ଣ୍ଣଯୁଗ ସୃଷ୍ଟି ହୋଇଥିଲା; ଇତିହାସ ପୃଷ୍ଠାରେ ତାହା ବିବାଦୀୟ ଅଥବା ଉପେକ୍ଷିତ ହୋଇଛି । କେଦାରନାଥ ମହାପାତ୍ର ନିଜ ପୁସ୍ତକରେ ଏହି ବିଷୟରେ ଉଲ୍ଲେଖ କରିଛନ୍ତି । ପୁରାଣରେ ଭୁବନେଶ୍ୱର କୃତ୍ତିବାସ(କୀର୍ତ୍ତିବାସ) କଟକ ରୂପେ ପରିଚିତ । ଲଲାଟେନ୍ଦୁ କେଶରୀ ୫୮୮ ଶକାବ୍ଦ(୬୬୬ ଖ୍ରୀଷ୍ଟାବ୍ଦ)ରେ କୃତ୍ତିବାସ ପ୍ରାସାଦ ନିର୍ମାଣ କରିଥିବାର ସୂଚନା ମିଳେ । ଶିଳାଲିପି ଆଧାରରେ "କୃତ୍ତିବାସ(କୀର୍ତ୍ତିବାସ) କଟକ" ପ୍ରାଚୀନ ନାମ (କେଦାରନାଥ ମହାପାତ୍ର, ଭୁବନେଶ୍ୱର ୨୦୧୮ ପୃ୧୯) ରୂପେ ଦୃଷ୍ଟିପଥକୁ ଆସେ ।

'କପିଳସଂହିତା'ରେ ଦ୍ରୁମିଳଙ୍କର ପୁତ୍ର କୀର୍ତ୍ତି ଓ ବାସ । ଏମାନେ ବିତାଡ଼ିତ ହୋଇ ଏକାମ୍ର ବନକୁ ଗଲେ । କାତ୍ୟାୟନୀ (ଗୋପାଳିନୀ) କାମାର୍ତ୍ତ ରାକ୍ଷସ ଦ୍ୱୟଙ୍କୁ ସଂହାର କଲେ । କୃତ୍ତିବାସ ମନ୍ଦିର (ପ୍ରାସାଦ) ଥିବା କ୍ଷେତ୍ର ସହ କୀର୍ତ୍ତି ଓ ବାସଙ୍କ ସମ୍ବନ୍ଧ ଯୋଗୁ ଏହା କୀର୍ତ୍ତିବାସ କଟକ ରୂପେ ପରିଚୟ ବହନ କଲା । ଏଠାରେ ଉଲ୍ଲେଖଯୋଗ୍ୟ ଯେ, ଉକ୍ତ କଟକ ଏକାମ୍ରକାନନ(ବନ)ରେ ଅବସ୍ଥିତ । ଉକ୍ତକ୍ଷେତ୍ରରେ ଶୈବ ଓ ଶାକ୍ତ ଧର୍ମର ସମନ୍ୱୟ ହୋଇ ବୌଦ୍ଧ 'କୀର୍ତ୍ତି' ଓ 'ବାସ'ଙ୍କ ଉପରେ ବିଜୟଲାଭ ସହ କୃତ୍ତିବାସ ମନ୍ଦିର ଓ ଏକାମ୍ରକ୍ଷେତ୍ରର ପ୍ରତିଷ୍ଠା ହେଲା । ବୌଦ୍ଧଧର୍ମର କୀର୍ତ୍ତି ଓ ବାସଙ୍କ ପରାଜୟର ଆଖ୍ୟାନ ପ୍ରତୀକାତ୍ମକ ଭାବେ ବର୍ଣ୍ଣିତ । ପୌରାଣିକ ଆଖ୍ୟାନ ବ୍ୟତୀତ ଏହାର ଇତିହାସ ରହସ୍ୟାବୃତ ।

'ସ୍ୱର୍ଣ୍ଣାଦ୍ରି ମହୋଦୟ' ସର୍ବାପେକ୍ଷା ଅର୍ବାଚୀନ । ଏହା ଅନେକ ଅସଂଯୁକ୍ତ ସୂତ୍ରକୁ ଏକାଠି ସାଉଁଟି କରି ସମନ୍ୱୟ ସ୍ଥାପନ କରିଛି । ଭାରତର ବିଭିନ୍ନ କ୍ଷେତ୍ରରେ ଦ୍ୱାଦଶ ଜ୍ୟୋତିର୍ଲିଙ୍ଗ ପ୍ରସିଦ୍ଧ । ଦ୍ୱାଦଶ ଲିଙ୍ଗଙ୍କ ମଧ୍ୟରେ ରାଜା ହୋଇଥିବାରୁ କୃତ୍ତିବାସ ଲିଙ୍ଗରାଜ ବା ତ୍ରିଭୁବନେଶ୍ୱର ରୂପେ ପରିଚୟ ଲାଭ କରିଛନ୍ତି । ଏକାମ୍ର ବନ, ତ୍ରିଭୁବନେଶ୍ୱର ତଥା ଲିଙ୍ଗରାଜଙ୍କ କ୍ଷେତ୍ର ଆଜି ଭୁବନେଶ୍ୱର ରୂପେ ସ୍ୱୀକୃତି ପାଇଛି । (କେଦାରନାଥ ମହାପାତ୍ର, ପୃ.୨୨) ।

ଜନବିଶ୍ରୁତ ପୁରାଣମାନଙ୍କରେ ଅଯୋଧ୍ୟା, ମଥୁରା, ମାୟା, କାଶୀ, କାଞ୍ଚୀ, ଦ୍ୱାରକା ଓ ଅବନ୍ତିକା ପ୍ରଭୃତି ସପ୍ତ-ମୋକ୍ଷଦାୟିକା ପୁରୀ ରହିଛନ୍ତି । ପତିତପାବନୀ ଗଙ୍ଗା ତଟରେ କାଶୀ ମୋକ୍ଷଦାୟକ ଶୈବକ୍ଷେତ୍ରର ମାନ୍ୟତା ପାଇଛି । ଓଡ଼ିଶାର ପୁରାଣରାଜି ସ୍ୱ-ସ୍ୱକ୍ଷେତ୍ରରେ ମହିମା ବର୍ଣ୍ଣନ କରିବାରେ ଆଦୌ କୁଣ୍ଠିତ ନୁହନ୍ତି । ପୁରୁଷୋତ୍ତମ ପୁରୀ ଓ ମୋକ୍ଷଦାୟିକା ଭୁବନେଶ୍ୱରରେ ଶତ ଶତ ଶିବ ମନ୍ଦିର ନିର୍ମିତ ହୋଇଛି । ଭାସ୍କର୍ଯ୍ୟପୂର୍ଣ୍ଣ ଶିବ-ଲିଙ୍ଗ ମନ୍ଦିର, ପବିତ୍ର ହ୍ରଦ, ତଡ଼ାଗ,

ପୁଣ୍ୟତୋୟା ଗନ୍ଧବତୀ(ଗଙ୍ଗା) ନଦୀ, ଘାଟ ଓ ତୀର୍ଥ ଭୁବନେଶ୍ୱରକୁ ଭକ୍ତିମୁକ୍ତିପ୍ରଦ ବୋଲି ମର୍ଯ୍ୟାଦା ଦେଇଛନ୍ତି । ଜନାକୀର୍ଣ୍ଣ ବାରାଣାସୀ ପରିତ୍ୟାଗ କରି ମହେଶ୍ୱର ଶାନ୍ତ, ପୁଣ୍ୟ ଏକାମ୍ରକାନନକୁ ଗୁପ୍ତବାସ କରିବାକୁ ଆସିଲେ । କପିଳସଂହିତା ଓ ସ୍ୱର୍ଣ୍ଣାଦ୍ରି ମହୋଦୟ ଉତ୍କଳର ଶ୍ରେଷ୍ଠତ୍ୱ ସହ ଏକାମ୍ର କାନନର ମହିମାଗାନ କଲେ । କପିଳସଂହିତାରେ ବର୍ଣ୍ଣିତ ଶିବଙ୍କର କାଶୀ ପରିତ୍ୟାଗ ଓ ଏକାମ୍ରକୁ ଆଗମନ ହେତୁ ଏକାମ୍ର ଗୁପ୍ତକାଶୀ ଭାବେ ମହିମାନ୍ୱିତ ହେଲା ।

ହରିହରଙ୍କର ଏକାତ୍ମତା ହେତୁ ବିଷ୍ଣୁଙ୍କ ଆୟୁଧର ନାମ ଅନୁସାରେ ଏହା ଚକ୍ରକ୍ଷେତ୍ର । ଶଙ୍ଖକ୍ଷେତ୍ର, ଚକ୍ରକ୍ଷେତ୍ର, ଗଦାକ୍ଷେତ୍ର ଓ ପଦ୍ମକ୍ଷେତ୍ର ରୂପେ ଯଥାକ୍ରମେ ପୁରୀ, ଭୁବନେଶ୍ୱର, ଯାଜପୁର ଓ କୋଣାର୍କ ବୈଷ୍ଣବକ୍ଷେତ୍ର ଭାବେ ସ୍ୱୀକୃତ । ପୁରୁଷୋତ୍ତମ କ୍ଷେତ୍ରର ଆକାର ଶଙ୍ଖାକାର । ଅନ୍ୟକ୍ଷେତ୍ରର ଏପରି ମାନଚିତ୍ର ନାହିଁ । ଭୁବନେଶ୍ୱର ଚକ୍ରକ୍ଷେତ୍ରର ଏକ ମାନଚିତ୍ର ପ୍ରସ୍ତୁତ କରାଯାଇପାରେ । ଏହି କ୍ଷେତ୍ରର ପ୍ରଦକ୍ଷିଣ ବିଧିରେ ଏକ କ୍ରୋଶବ୍ୟାପୀ ମଣ୍ଡଳାକାର କ୍ଷେତ୍ର ଆସୁଅଛି । ଖଣ୍ଡଗିରିଠାରୁ କୁଣ୍ଡଳେଶ୍ୱର ପର୍ଯ୍ୟନ୍ତ ଏବଂ ବଳହାଦେବୀଙ୍କ ଠାରୁ ବହିରଙ୍ଗେଶ୍ୱର ପର୍ଯ୍ୟନ୍ତ ମଣ୍ଡଳାକାର ଭୂମି ଏକାମ୍ରକ୍ଷେତ୍ର । ଏହାର ଦୈର୍ଘ୍ୟ ପ୍ରସ୍ଥ ତିନି ଯୋଜନ ବା ବାରମାଇଲ । ଏହା ମଧ୍ୟରେ ଭୁବନେଶ୍ୱର, ପୋଖରୀପୁତା, କୋଚିଲାପୁତା, ବାହାଡ଼ଲପୁର, ପୁରକନା, ବୋଡଣ୍ଡା, କଣ୍ଟିଲୋ, କୂହା, ବାପକାତି, ରଥିଜେମା, ହୀରାପୁର, କର୍ଣ୍ଣାଟାନିଆ, ଗଡ଼, ଶ୍ରୀରାମପୁର, ଦୁର୍ଗାଦାସପୁର, ଶିଶୁପାଳଗଡ଼ ଆଦି ପଚାଁଚାଳିଶ ଖଣ୍ଡ ଗ୍ରାମ ଅଛି ।

ପ୍ରଦକ୍ଷିଣ ବିଧିରେ ଚକ୍ରକ୍ଷେତ୍ରର କେନ୍ଦ୍ରରେ ଭୁବନେଶ୍ୱର(ଲିଙ୍ଗରାଜ) । (୧) ବଳହାଦେବୀ, (୨) କୁଣ୍ଡଳେଶ୍ୱର, (୩) ଯଦୁପୁର, (୪) ଖଣ୍ଡଗିରି, (୫) କୂହା, (୬) ଧବଳଗିରି ଚକ୍ରାକାରରେ ଅବସ୍ଥିତ । (ଚିନ୍ତାମଣି ଆଚାର୍ଯ୍ୟ, ଭୁବନେଶ୍ୱର, ୧୯୨୩:୩୬, ଉତ୍କଳସାହିତ୍ୟ, କଟକ)

ଯଯାତିକେଶରୀ ତାଙ୍କ ରାଜତ୍ୱର ଅନ୍ତିମକାଳରେ ଏକାମ୍ରରେ ରାଜଧାନୀ ସ୍ଥାପନ କରିଥିଲେ । ଷଷ୍ଠଶତାବ୍ଦୀର ଆରମ୍ଭରେ ସେ ଲିଙ୍ଗରାଜ ମନ୍ଦିରର ମୂଳପତ୍ତନ ପକାଇଥିଲେ । ଲଲାଟେନ୍ଦୁ କେଶରୀ ବା ଉଦ୍ୟୋତକେଶରୀ ୬୬୬ଖ୍ରୀଷ୍ଟାବ୍ଦରେ ଏହା ସମ୍ପୂର୍ଣ୍ଣ କରିଥିଲେ (କେଦାରନାଥ ମହାପାତ୍ର, ପୃ୧୨୬) । ସୋମବଂଶ(କେଶରୀ) ରାଜତ୍ୱକାଳରେ ବ୍ରାହ୍ମଣ୍ୟ ଧର୍ମର ଭିତ୍ତି ପଡ଼ିଥିଲା । ଦ୍ୱାଦଶ ଶତାବ୍ଦୀର ପ୍ରାକ୍‌କାଳରୁ ଗଙ୍ଗବଂଶ ଓ ସୂର୍ଯ୍ୟବଂଶର ଶାସନ ସମୟରେ ଏହା ପ୍ରସାର ଲାଭ କଲା । ଚୋଡ଼ଗଙ୍ଗଦେବ, ଅନଙ୍ଗଭୀମଦେବ, ପୁରୁଷୋତ୍ତମଦେବ ଓ

ପ୍ରତାପରୁଦ୍ରଦେବଙ୍କର କୀର୍ତ୍ତି ଏଠାରେ ବିରାଜିତ । ସୂର୍ଯ୍ୟବଂଶର ପ୍ରଥମ ରାଜା କପିଳେନ୍ଦ୍ରଦେବଙ୍କ କାଳରେ ଭୁବନେଶ୍ୱରର ଚରମ ବିକାଶ ହୋଇଥିଲା । ପାଟଳୀପୁତ୍ର ଓ କାଶୀ ନଗରଦ୍ୱୟ ଇତିହାସର ବିଶାଳପଟ୍ଟରେ ଗୌରବର ସ୍ଥାନ ଅଧିକାର କରିଛନ୍ତି । କୀର୍ତ୍ତିରାଜି ତୁଳନାରେ ଭୁବନେଶ୍ୱର ସହ ସେମାନଙ୍କର ସ୍ପର୍ଦ୍ଧା ଯେ ନିସ୍ପ୍ରଭ ଏହା କହିବା ନିଷ୍ପ୍ରୟୋଜନ । ଐହୋଲ, ମହାବଳୀପୁରମ୍ ଓ ଖଜୁରାହୋର ସୁଦୃଶ୍ୟ କୀର୍ତ୍ତି ଥିଲେ ମଧ୍ୟ ଭୁବନେଶ୍ୱର ପରି ସମୃଦ୍ଧ ଇତିହାସ ନାହିଁ । ଧର୍ମ, ସଂସ୍କୃତି, କୀର୍ତ୍ତି ଓ ଇତିହାସ ଦୃଷ୍ଟିରୁ ଭୁବନେଶ୍ୱର ସର୍ବଥା ଗର୍ବରେ ମସ୍ତକ ଉତ୍ତୋଳିତ କରିବାର ଉପାଦାନ ବହନ କରିଛି (Krishna Chandra Panigrahi, Archaeological Remains at Bhubaneswar, 1981:178, Kitabmahal, Cuttack) । ଭୁବନେଶ୍ୱରର ଉପେକ୍ଷିତ ଓ ଅନାଲୋଚିତ ଇତିହାସ ଲୋକଲୋଚନକୁ ଆଣିବାର ଆବଶ୍ୟକତା ଅନୁଭୂତ ହୁଏ ।

ଅଶୋକଙ୍କର କଳିଙ୍ଗବିଜୟ, ଅଶୋକସ୍ତମ୍ଭ, ଅଶୋକଝର ତଥା ଅଶୋକାଷ୍ଟମୀର ରଥଯାତ୍ରା ଆଦି ବୌଦ୍ଧକୀର୍ତ୍ତିର ସ୍ମାରକ । 'ଏକାମ୍ରପୁରାଣ', 'ସ୍ୱର୍ଣ୍ଣାଦି ମହୋଦୟ' ଆଦି ପୁରାଣ ରଙ୍ଗ ଓ ପୁଟ ଦେଇ ଏହି କୀର୍ତ୍ତିରାଜିକୁ ଶୈବ ଚିତ୍ରରେ ରଞ୍ଜିତ କରିଛନ୍ତି । ରାଜପୃଷ୍ଠପୋଷକତା ଯୋଗୁଁ ପରବର୍ତ୍ତୀ କାଳରେ ପରିବର୍ତ୍ତିତ ଧାର୍ମିକ ଭାବନାରେ କୀର୍ତ୍ତିବାସ ଲିଙ୍ଗରାଜଙ୍କର ପ୍ରଭୁତ୍ୱ ସ୍ଥାପିତ ହୋଇଛି । ରାମେଶ୍ୱର ଓ ଭାସ୍କରେଶ୍ୱର ପରି ବୌଦ୍ଧକୀର୍ତ୍ତିକୁ ଶୈବପର୍ବ ସହ ଯୋଡ଼ାଯାଇ ରୂପାନ୍ତର କରାଯାଇଛି । ରାଜାନୁଗତ ଧର୍ମ କୀର୍ତ୍ତିକୁ ବିଲୋପ ବା ଧ୍ୱଂସ କରିବା ଅପେକ୍ଷା ତାକୁ ନିଜରଙ୍ଗରେ ଆପଣେଇ ନେବା ଦ୍ୱାରା ଉକ୍ତ କୀର୍ତ୍ତିରାଜି ସୁରକ୍ଷିତ ରହିପାରିଛି ।

ଉଦୟଗିରି ଓ ଖଣ୍ଡଗିରି କୀର୍ତ୍ତିରାଜି ଇତିହାସରେ ଉଲ୍ଲେଖନୀୟ । ଖାରବେଳ(ଖ୍ରୀ.ପୂ. ୧୮୪-୧୪୮)ଙ୍କର ହାତୀଗୁମ୍ଫା ଶିଳାଲିପି କଳିଙ୍ଗର ପ୍ରଭାବ ଓ ଜୈନଧର୍ମ ପ୍ରସାରର ସାକ୍ଷ୍ୟ ପ୍ରଦାନ କରେ । ଡୁମୁଡୁମା, ଜାଗମରା, ବଡ଼ଗଡ଼ ପ୍ରଭୃତିରେ ଉପଲବ୍ଧ ଯକ୍ଷପ୍ରତିମା ସାଁଚି ସହ ଭୁବନେଶ୍ୱରର ସାଂସ୍କୃତିକ ସମ୍ବନ୍ଧ ସଂକେତିତ କରେ । ଦ୍ୱିତୀୟ ସାତକର୍ଣ୍ଣୀଙ୍କ ସମୟରେ ଆନ୍ଧ୍ରୀ ସାତବାହନ ବଂଶର କଳିଙ୍ଗ ଅଧିକାର ବେଳେ ଏହା ହୋଇଥିବା ସମ୍ଭବ (ପାଣିଗ୍ରାହୀ, ପୃ୨୦୮) ।

ଅଶୋକ ଓ ଖାରବେଳଙ୍କ କାଳରେ ସମୃଦ୍ଧି ଲାଭ କରିଥିବା ବୌଦ୍ଧ ଓ ଜୈନ ଧର୍ମର ଅବକ୍ଷୟ କାଳରେ ଲୋକ ସଂସ୍କୃତିରେ ପ୍ରଚଳିତ ନାଗ ଉପାସନା ଭାରତରେ (ଖ୍ରୀ. ପୂ. ପ୍ରଥମ ଶତାବ୍ଦୀରେ) ପ୍ରସାର ଲାଭ କରିଥିଲା । ଉଦୟଗିରି ଗୁମ୍ଫା ମନ୍ଦିରର ନାଗରାଜ ଓ ସୁନ୍ଦରପଦାରେ ମିଳିଥିବା ମସ୍ତକବିହିନ ନାଗମୂର୍ତ୍ତିର

ସତ୍ତା ଲୋକସଂସ୍କୃତିର ପ୍ରଭାବ ଦର୍ଶାଇଥାଏ । (ପାଣିଗ୍ରାହୀ, ପୃ ୨୦୯-୨୧୦) । କୁଶାଣବଂଶ ଓ ଗୁପ୍ତବଂଶ ମଧ୍ୟରେ ଏକ ଅଜ୍ଞାତ ଅଧ୍ୟାୟ ଭାରତର ଇତିହାସକୁ ଆବୃତପ୍ରାୟ କରିଛି । ଶିଶୁପାଳଗଡ଼ ଓ ଅନ୍ୟସ୍ଥାନରୁ (ଖ୍ରୀ.ଅ.୨୦୦-ଖ୍ରୀ.ଅ.୩୦୦) ତଥାକଥିତ ପୁରୀ କୁଶାଣମୁଦ୍ରା ଆବିଷ୍କୃତ ହୋଇଛି । ଧର୍ମଦାମଧର ନାମକ ରାଜାଙ୍କ ଚିହ୍ନଥିବା ମୁଦ୍ରା ଉପଲବ୍ଧ । ସେତେବେଳେ ବିହାର ଓ ଓଡ଼ିଶାରେ ବିଦେଶୀ ମୁରୁଣ୍ଡ ବଂଶର ରାଜତ୍ୱ ପ୍ରଚଳିତ ଥିଲା । ତତ୍‌କାଳରେ ଜୈନଧର୍ମର କ୍ଷୀଣଛାୟା ଅନୁଭୂତ ହେଉଥିଲା । ଭୁବନେଶ୍ୱରରେ ପୁରୀ କୁଶାଣ ମୁଦ୍ରାର ଯୁଗ କିପରି ଲୋପ ପାଇଲା, ତାହା କୁହେଳିକାଛନ୍ନ । ଏହି ମୁରୁଣ୍ଡବଂଶର ରାଜତ୍ୱ ଦୁର୍ବଳ ହେବାପରେ ପ୍ରଚ୍ଛନ୍ନ ଥିବା ବୌଦ୍ଧଧର୍ମ କ୍ରମଶଃ ମଥା ଟେକିଲା । ବୌଦ୍ଧଧର୍ମର ଯକ୍ଷପ୍ରତିମାର ସ୍ଥିତି ଏହା ସୂଚାଇଦିଏ । ଉଦୟଗିରି, ଖଣ୍ଡଗିରି, ତୁମୁତୁମା, ବ୍ରହ୍ମେଶ୍ୱର, ସୁନ୍ଦରପଦା ଓ ଶିଶୁପାଳଗଡ଼ରେ ବୌଦ୍ଧ ପ୍ରଭାବ ସ୍ପଷ୍ଟ । ବୌଦ୍ଧ ଧର୍ମ ଧାରଣା ସହ ଜୈନ ଓ ଶୈବ ଧର୍ମ ଗୌଣଭାବେ ନିଜ ସ୍ଥିତିକୁ ବଞ୍ଚାଇ ରଖିଥିଲେ (ପାଣିଗ୍ରାହୀ, ପୃ ୨୧୩) ।

ସମୁଦ୍ରଗୁପ୍ତଙ୍କର ଦକ୍ଷିଣାପଥ ଅଭିଯାନରେ ଓଡ଼ିଶାର ଉପକୂଳବର୍ତ୍ତୀ ଅଞ୍ଚଳ ଅଧିକୃତ ହୋଇଥିଲା । କାଳିଦାସଙ୍କ ରଘୁବଂଶର ରଘୁଙ୍କ ଦିଗ୍‌ବିଜୟରେ ଏହାର ପ୍ରତିଫଳନ ଦୃଷ୍ଟ ହୁଏ । ଦକ୍ଷିଣକୋଶଳ, ମହାକାନ୍ତାର, କୋଟ୍ଟୁରର ସ୍ୱାମିଦତ୍ତ, ଏରଣ୍ଡପଲ୍ଲିର ଦାମନ ଓ ଦେବରାଷ୍ଟ୍ରର କୁବେରଙ୍କୁ ସମୁଦ୍ରଗୁପ୍ତ ପରାଜିତ କରିଥିଲେ । ଏସବୁ ଅଞ୍ଚଳ କଳିଙ୍ଗର ଅନ୍ତର୍ଭୁକ୍ତ ଥିଲା । ଗଞ୍ଜାମ ଓ ବାଲେଶ୍ୱରର ତାମ୍ରଶାସନରୁ ଗୁପ୍ତ ପ୍ରଭାବ ସ୍ପଷ୍ଟ ଜାଣି ହେଉଥିଲା । ପୃଥିବୀ ବିଗ୍ରହ ଓ ଲୋକବିଗ୍ରହଙ୍କର ଅସ୍ତିତ୍ୱ ଗୁପ୍ତଶାସନର ସୂଚନା ଦିଏ । ପ୍ରାୟ ଖ୍ରୀ: ୬୧୯ରେ ବିଗ୍ରହ ରାଜତ୍ୱ ଲୋପପାଇଥିଲା । ବିଗ୍ରହରାଜଙ୍କୁ ଗୁପ୍ତ ରାଜପ୍ରତିନିଧି ରୂପେ ସ୍ୱୀକାର ନ କଲେ ମଧ୍ୟ ଭୁବନେଶ୍ୱର ଓ କେନ୍ଦୁଝରର ଡେଙ୍ଗାପୋଷି ଅଞ୍ଚଳରେ ଗୁପ୍ତ ସାଂସ୍କୃତିକ ପ୍ରଭାବ ଥିଲା । ବିଗ୍ରହ ରାଜତ୍ୱ ପରେ ଦ୍ୱିତୀୟ ମାଧବରାଜ ରାଜା ଶଶାଙ୍କ ଗଞ୍ଜାମ ସମେତ ଓଡ଼ିଶା ଅଧିକାର କରିଥିଲେ ।

ବୌଦ୍ଧ ଓ ଜୈନଧର୍ମ କ୍ରମଶଃ କ୍ଷୟ ହୋଇ ଖ୍ରୀଷ୍ଟୀୟ ପଞ୍ଚମ ଶତାବ୍ଦୀବେଳକୁ ଶୈବଧର୍ମ ଭୁବନେଶ୍ୱରରେ ପ୍ରଭାବ ବିସ୍ତାର କଲା । ଭାସ୍କରେଶ୍ୱରରେ ଅଶୋକସ୍ତମ୍ଭର ଶିବଲିଙ୍ଗ ରୂପେ ପରିଣତି ଏହାର ନିଦର୍ଶନ । ବୌଦ୍ଧ ଓ ଶୈବଙ୍କ ମଧ୍ୟରେ ସାଂସ୍କୃତିକ ପ୍ରତିଯୋଗିତା ହୋଇ ଶୈବଙ୍କର ପ୍ରତିପତ୍ତି ପ୍ରତିଷ୍ଠିତ ହୋଇଛି ।

ପୌରାଣିକ ଆଖ୍ୟାନ ଐତିହାସିକ ସତ୍ୟର ବୀଜ ବହନ କରେ । ଏକାମ୍ରପୁରାଣରେ ପୃଥିବୀପାଳ ଶଶାଙ୍କଙ୍କର କଳିଙ୍ଗ ଶାସନର ସୂଚନା ଉପଲବ୍ଧ ।

ଏକାମ୍ର ପୁରାଣ ବୌଦ୍ଧମାନଙ୍କୁ ରାକ୍ଷସ ଓ ଶୈବମାନଙ୍କୁ ଦେବ ରୂପେ ଚିତ୍ରିତ କରିଛି । ଏକାମ୍ରପୁରାଣ ବର୍ଣ୍ଣିତ ଶଶାଙ୍କ ତ୍ରିଭୁବନେଶ୍ୱରଙ୍କୁ ଅଧିଷ୍ଠାତା ଦେବ ରୂପେ ସ୍ୱୀକାର କରିଥିଲେ । ଏହି ତ୍ରିଭୁନେଶ୍ୱର ସ୍ୱୟମ୍ଭୂଲିଙ୍ଗ । ଟି.ଏ. ଗୋପୀନାଥରାଓ ଭାରତର ବିଭିନ୍ନ ଅଞ୍ଚଳରେ ୬୮ଟି ସ୍ୱୟମ୍ଭୂଲିଙ୍ଗଙ୍କର ସ୍ଥାନ ଉଲ୍ଲେଖ କରିଛନ୍ତି । ନିଗମ ଜ୍ଞାନଦେବଙ୍କର 'ଜୀର୍ଣ୍ଣୋଦ୍ଧାରଦଶକମ୍'ର ଟୀକାରେ ସ୍ୱୟମ୍ଭୂଲିଙ୍ଗଙ୍କର ବର୍ଣ୍ଣନା ଉପଲବ୍ଧ । କୃତ୍ତିବାସ ନାମରେ ସ୍ୱୟମ୍ଭୂଲିଙ୍ଗଙ୍କର ଉଲ୍ଲେଖ ଅଛି । ରାଓ ଉକ୍ତ ଲିଙ୍ଗଙ୍କ ସ୍ଥାନ ବିଷୟରେ ସନ୍ଦିହାନ । ସେ 'ଏକଗ୍ରାମ' ବୋଲି ସ୍ଥାନସଂକେତ ଦେଇ ପ୍ରଶ୍ନଚିହ୍ନିତ କରିଛନ୍ତି । କୃତ୍ତିବାସ(କୀର୍ତ୍ତିବାସ) ସ୍ୱୟମ୍ଭୂଲିଙ୍ଗ ଯେ ଏକାମ୍ରର ଏହା ନିଃସନ୍ଦେହ । ପରବର୍ତ୍ତୀ କାଳରେ ସେ ଲିଙ୍ଗରାଜ ରୂପେ ପ୍ରସିଦ୍ଧି ଅର୍ଜନ କଲେ । ମହାଭାରତର ଭୀଷ୍ମପର୍ବରେ କୈଳାସର ଅନ୍ୟନାମ ହେମକୂଟ । ଭୁବନେଶ୍ୱରର କୃତ୍ତିବାସଙ୍କ ସ୍ଥାନ ପୁଣ୍ୟପ୍ରଦ ହୋଇଥିବାରୁ ତାହାକୁ କୈଳାସ ସହ ସମାନ ମର୍ଯ୍ୟାଦା ଦିଆଯାଇ ସ୍ୱର୍ଣ୍ଣାଦ୍ରି ବା ସ୍ୱର୍ଣ୍ଣାଚଳ ନାମ ରଖାଯାଇଛି ।

ମାତଙ୍ଗର ପୁତ୍ର ଦ୍ରୂମିଳ । ଦ୍ରୂମିଳର ପୁତ୍ର କୀର୍ତ୍ତି ଓ ବାସ । ଆସାମର ରାଜା ଭାସ୍କରବର୍ମା ଓ ଚାଲୁକ୍ୟରାଜ ଦ୍ୱିତୀୟ ପୁଲକେଶୀ ଶଶାଙ୍କଙ୍କର ବିରୋଧୀ ଥିଲେ । ଏକାମ୍ର ପୁରାଣ ଶଶାଙ୍କର ପ୍ରଶସ୍ତି ଗାନ କରିଛି । ଦ୍ରବିଡ଼ ବା ଦ୍ରମିଳର ଅପଭ୍ରଂଶ ରୂପେ ଦ୍ରୂମିଳଙ୍କୁ ରାକ୍ଷସ ରୂପେ ବର୍ଣ୍ଣନା କରାଯାଇଛି । ଏକାମ୍ର ପୁରାଣ କୃତ୍ତିବାସ ବା କୀର୍ତ୍ତିବାସଙ୍କ ବିଷୟ ବର୍ଣ୍ଣନା କରି ଦେବୀ ପାଦହରା ସରୋବରର ବର୍ଣ୍ଣନା କରିଛି । ଦ୍ରୂମିଳଙ୍କ ପୁତ୍ରମାନଙ୍କ ମଧ୍ୟରେ ପୃଥୁଲୋମା ଜ୍ୟେଷ୍ଠ ଥିଲେ । ତାଙ୍କର ଅନ୍ୟ ଦୁଇ ପୁତ୍ର କୀର୍ତ୍ତି ଓ ବାସ ଅତ୍ୟନ୍ତ ଦୁର୍ଦ୍ଧାନ୍ତ ତଥା ବଳଶାଳୀ ଥିଲେ । ଦ୍ରୂମିଳ ତାଙ୍କୁ ରାଜ୍ୟରୁ ବିତାଡ଼ିତ କରିଥିଲେ । ସେମାନେ ଏକାମ୍ରକୁ ଆସିଲେ । ସେଠାରେ ପାର୍ବତୀ ଗୋପାଳିନୀ ରୂପେ ଛଦ୍ମରେ ରହୁଥିଲେ । ସେ ଦୁଇ ଭାଇ ତାଙ୍କ ରୂପରେ ମୋହିତ ହେଲେ । ନିଜର ବାସନା ଚରିତାର୍ଥ କରିବାକୁ ଗୋପାଳିନୀଙ୍କୁ ଜଣାଇଲେ । ଗୋପାଳିନୀ ଶିବଙ୍କୁ ଏହା ଜଣାଇଥିଲେ । କୌଣସି ପୁରୁଷ ଦେବତା ସେମାନଙ୍କର ସଂହାର କରିପାରିବେ ନାହିଁ ବୋଲି ସେମାନେ ବର ପାଇଥିଲେ । ଶିବ ବତାଇଥିବା ଉପାୟରେ ଦେବୀ ତାଙ୍କର ଦୁଇ ପାଦକୁ କାନ୍ଧରେ ବହନ କରିବାକୁ କହିଲେ । ମୋହଗ୍ରସ୍ତ ହୋଇ ସେ ଦୁହେଁ ଦେବୀଙ୍କ ପାଦକୁ କାନ୍ଧରେ ବହନ କଲେ ଓ ଦେବୀ ପାଦଚାପରେ ମୃତ୍ୟୁ ଲଭିଲେ । ଉକ୍ତ ସ୍ଥାନରୁ ଜଳ ଝରି ଦେବୀ ପାଦହରା ସରୋବର ସୃଷ୍ଟି ହେଲା । ମାର୍କଣ୍ଡେୟ ପୁରାଣର ଦୁର୍ଗାସପ୍ତଶତୀଛାୟାରେ ଶୁମ୍ଭ ଓ ନିଶୁମ୍ଭଙ୍କ ବଧପରି କୀର୍ତ୍ତି ଓ ବାସଙ୍କର ବଧ ବିଷୟ ରୋଚକ ଢ଼ଙ୍ଗରେ ବର୍ଣ୍ଣିତ । ପୁରାଣର ମାତଙ୍ଗ, ପୃଥୁଲୋମା(ପୃଥୁଳ), କୀର୍ତ୍ତି, ବାସ ଓ କୁବକ ଯଥାକ୍ରମେ ମଙ୍ଗଳେଶ,

ପୁଲକେଶୀ, କୀର୍ତ୍ତିବର୍ମା, ବିଷ୍ଣୁବର୍ଦ୍ଧକ ଓ କୁବ୍‌ଜ(କୁବ୍ ବିଷ୍ଣୁବର୍ଦ୍ଧକ)ଙ୍କ ସ୍ଥାନ ନେଇଛନ୍ତି । ଦ୍ରବିଡ଼(ଦ୍ରବିଳ)କୁ ଦ୍ରୁମିଳ ଭାବେ ବର୍ଣ୍ଣନା କରି ଏହି ପୌରାଣିକ ଆଖ୍ୟାନ ଦିଆହୋଇଛି । ପୁରାଣ ଓ ଇତିହାସର ଏହା ଏକ ସମନ୍ୱିତ ରୂପ ।

ଗଙ୍ଗବଂଶ ପୂର୍ବରୁ ଓଡ଼ିଶାରେ ଶୈଳୋଦ୍ଭବବଂଶ, ଭୌମକର ଓ ସୋମବଂଶୀ(କେଶରୀବଂଶ) ରାଜତ୍ୱ କରିଥିଲେ । ଶିଳାଲିପି ଓ ପାରମ୍ପରିକ ମାଦଳା ପାଞ୍ଜିର ଆଧାରରେ ନିମ୍ନଲିଖିତ ରାଜବଂଶ ପ୍ରଦତ୍ତ-

| ଶିଳାଲେଖରୁ | ମାଦଳାପାଞ୍ଜିରୁ |
|---|---|
| ଜନମେଜୟ(ଖ୍ରୀ.ଅ. ୯୫୦) | ଜନ୍ମେଜୟ କେଶରୀ |
| ଯଯାତି ପ୍ରଥମ(ଖ୍ରୀ.ଅ. ୯୭୫) | ଯଯାତି କେଶରୀ |
| ଭୀମରଥ(ଖ୍ରୀ.ଅ. ୧୦୦୦) | ଭୀମ କେଶରୀ |
| ଧର୍ମରଥ(ଖ୍ରୀ.ଅ. ୧୦୧୫) | ଧର୍ମ କେଶରୀ |
| ନହୁଷ(ଇନ୍ଦ୍ରରଥ ?/ଖ୍ରୀ.ଅ. ୧୦୫୦) | ଇନ୍ଦ୍ର କେଶରୀ |
| ଯଯାତି ଦ୍ୱିତୀୟ ଅଥବା ଚଣ୍ଡୀହର | |
| ଉଦ୍ୟୋତ କେଶରୀ(ଖ୍ରୀ.ଅ. ୧୦୬୫) | ଅନନ୍ତ କେଶରୀ |

ମାଦଳାପାଞ୍ଜି ଉଭୟ ଯଯାତିଙ୍କୁ ଏକ ଓ ଅଭିନ୍ନ ବୋଲି ଧରିଛି । ଦ୍ୱିତୀୟ ଯଯାତି ଲିଙ୍ଗରାଜ ମନ୍ଦିର ଆରମ୍ଭ କରିଥିଲେ । ତାଙ୍କର ପୁତ୍ର ଉଦ୍ୟୋତ କେଶରୀ (ଅନନ୍ତ କେଶରୀ) ଏହା ସମ୍ପୂର୍ଣ୍ଣ କରିଥିଲେ । ଶିଳାଲେଖରେ ଉଦ୍ୟୋତ କେଶରୀ କେବଳ କେଶରୀ ନାମ ଗ୍ରହଣ କରିଥିଲେ । ଏହା ଇତିହାସର ଏକ ପକ୍ଷ ।

କେଶରୀବଂଶର ଇତିହାସ ବିଷୟରେ ଅନେକ ଏକମତ ନୁହନ୍ତି । କେଦାରନାଥ ମହାପାତ୍ର ପୌରାଣିକ ବିବରଣ ଅଧାରରେ କୃତ୍ତିବାସ ପ୍ରାସାଦ(ମନ୍ଦିର) ବିଷୟ ଉଲ୍ଲେଖ କରି ଶିଳାଲିପି ଉଦ୍ଧାର କରି ଲଲାଟେନ୍ଦୁ କେଶରୀଙ୍କୁ ଏହାର କର୍ତ୍ତା ରୂପେ ଗ୍ରହଣ କରିଛନ୍ତି । ତାଙ୍କ ପୁସ୍ତକରେ ପ୍ରଥମ ପୃଷ୍ଠାରେ ସେ ଏହା ଚୂମ୍ବକରେ ଉଲ୍ଲେଖ କରିଛନ୍ତି । କୃତ୍ତିବାସ ମନ୍ଦିର ଖ୍ରୀଷ୍ଟୀୟ ୬୬୬ ଅବ୍ଦରେ ହୋଇଥିବା ତାଙ୍କର ମତ । କୃତ୍ତିବାସ ମନ୍ଦିର ଓ ସାମ୍ପ୍ରତିକ ଲିଙ୍ଗରାଜ ମନ୍ଦିରର କାଳ ବିଷୟରେ ଐତିହାସିକମାନଙ୍କର ଭିନ୍ନ ମତ ଦେଖାଯାଏ । କେଦାରନାଥ ମହାପାତ୍ରଙ୍କ ମତ

ସହ ଐତିହାସିକମାନେ ଭିନ୍ନ ମତ ପୋଷଣ କରିଥିଲେ ମଧ୍ୟ କେଦାରନାଥ ମହାପାତ୍ର ପୁରାଣ, ଇତିହାସ ଓ ଶିଳାଲେଖ ଆଧାରରେ ବଳିଷ୍ଠ ଯୁକ୍ତି ଦେଇଛନ୍ତି ।(କେଦାରନାଥ ମହାପାତ୍ର, ପୃ.୧,୧.୧୦୧-୧୦୯) । ଏହା ଐତିହାସିକ ଓ ଗବେଷକଙ୍କର ଅନୁସନ୍ଧାନ ସାପେକ୍ଷ । ଗବେଷଣାରେ ମତପାର୍ଥକ୍ୟ ରହିବା ସ୍ୱାଭାବିକ, ଏହା ପରବର୍ତ୍ତୀ ଗବେଷକଙ୍କ ପାଇଁ ପ୍ରଣିଧାନ ଯୋଗ୍ୟ ଉପାଦାନ ହୋଇଥାଏ ।

କେଦାରନାଥ ମହାପାତ୍ରଙ୍କର ସମ୍ପ୍ରତି ପ୍ରକାଶିତ ପୁସ୍ତକ ଏକ ଗବେଷଣାପକ୍ଷ । ସେ ଭୁବନେଶ୍ୱରର ଐତିହ୍ୟ, ପୁରାତତ୍ତ୍ୱ ଓ ଧର୍ମଧାରାର କ୍ଷେତ୍ର ସର୍ବେକ୍ଷଣ କରିଛନ୍ତି । ଚିନ୍ତାମଣି ଆଚାର୍ଯ୍ୟ, କେଦାରନାଥ ମହାପାତ୍ର ଓ ମାନଗୋବିନ୍ଦ ମହାସୂପକାର ବହୁ ମନ୍ଥନ କରି ସ୍ୱମତ ପୋଷଣ କରିଛନ୍ତି । କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ପ୍ରମୁଖ ଅନ୍ୟ ଏକ ମତ ପୋଷଣ କରିଛନ୍ତି । ଏପରି ବିରୁଦ୍ଧ ମତକୁ ଜାଣି ମଧ୍ୟ କେଦାରନାଥ ମହାପାତ୍ର ସ୍ୱଯୁକ୍ତି ଉପସ୍ଥାପିତ କରିଛନ୍ତି । କେଶରୀବଂଶର ଇତିହାସ କ୍ଷେତ୍ରରେ ଗ୍ରହଣ, ପ୍ରତ୍ୟାଖ୍ୟାନ ଓ ପୁନଃ ପ୍ରତିପାଦନ ସହ କିଛି ନୂଆ ତଥ୍ୟ ଭବିଷ୍ୟତରେ ଆସିପାରେ ବୋଲି ସମ୍ଭାବନା କରିବା ଅପ୍ରାସଙ୍ଗିକ ହେବ ନାହିଁ ।

କେଦାରନାଥ ମହାପାତ୍ର ଭୁବନେଶ୍ୱରର ମୁଖ୍ୟ ଓ ପ୍ରାସଙ୍ଗିକ ବିଷୟ ତାଙ୍କର ନିଜସ୍ୱ ଶୈଳୀରେ ଲୋକଲୋଚନକୁ ଆଣିଛନ୍ତି । ବୌଦ୍ଧ, ·ଜୈନ, ଶଙ୍କର, କେଶରୀବଂଶ, ଗଙ୍ଗବଂଶ ଓ ସୂର୍ଯ୍ୟବଂଶର ଆନୁଷଙ୍ଗିକ ଇତିହାସର ଅବତାରଣା କରି ପୁରାଣ ସହ ସମନ୍ୱୟ ରଖିବାକୁ ଶ୍ଳାଘ୍ୟ ପ୍ରୟାସ କରିଛନ୍ତି ।

ପ୍ରଥମ ଅଧ୍ୟାୟରେ ପୌରାଣିକ ବିବରଣ ସହ ଇତିହାସର ଯୋଗସୂତ୍ର ସ୍ଥାପିତ । ଦ୍ୱିତୀୟ ଅଧ୍ୟାୟରେ ସେ ବୌଦ୍ଧଧର୍ମର ବିକାଶ ଉପରେ ଆଲୋକପାତ କରିଛନ୍ତି । ବିଲକ୍ଷଣ ଭାସ୍କରେଶ୍ୱର ଲିଙ୍ଗ, ବୌଦ୍ଧ ରେଲିଙ୍ଗ, ଅନ୍ୟାନ୍ୟ ବୌଦ୍ଧକୀର୍ତ୍ତି, ରଥଯାତ୍ରା ସହ ଯୋଗୀମଠର ସମ୍ପର୍କ ଓ ବ୍ରାହ୍ମଣ୍ୟଧର୍ମର ଅଭ୍ୟୁଦୟ ସହ ପରମ୍ପରା, ଆସ୍ଥା ଓ ବିଶ୍ୱାସର ସଂଗତିସମ୍ପନ୍ନ ବିବରଣୀ ଦେଇଛନ୍ତି । ତୃତୀୟ ଅଧ୍ୟାୟରେ ଶୈବ ଧର୍ମ ଧାରା ଭାରତୀୟ ପୃଷ୍ଠଭୂମିକୁ ଆଧାର ରୂପେ ଗ୍ରହଣ କରିଛି । ଶିବ ପୂଜା ଭାରତର ତଥା ପୃଥିବୀର ପ୍ରାଚୀନତମ ଉପାସନା ପରମ୍ପରା । ରୁଦ୍ର, ଶିବ-ପଶୁପତିଙ୍କର କଳ୍ପନାକୁ ୫୦୦୦ ବର୍ଷ ମଧ୍ୟରେ ସୀମିତ କରାଯାଇ ପାରିବ ନାହିଁ । (କେ.ନା.ମହାପାତ୍ର, ପୃ.୫୨) । ଶିବପୂଜା ସହ ଯୋଗ, ଲିଙ୍ଗପୂଜାର ପ୍ରାଚୀନତା ଓ ଲିଙ୍ଗ ସହ ଯୋନିପୀଠର ସମାବେଶକୁ ଦିବ୍ୟରୂପ ଦେବାପାଇଁ ଐତିହାସିକ ମହାପାତ୍ର ସାବଲୀଳ ଢଙ୍ଗରେ ତଥ୍ୟ ପରିବେଷଣ କରିଛନ୍ତି ।

ଚତୁର୍ଥ ଅଧ୍ୟାୟରେ ବୈଷ୍ଣବ ଧର୍ମଧାରାର ବିକାଶ; ଶୈବ ଓ ବୈଷ୍ଣବଙ୍କ

ମଧରେ ଅସ୍ତିତ୍ୱ ଓ ପ୍ରତିଷ୍ଠାର ଶୀତଳଯୁଦ୍ଧ; ବିଷ୍ଣୁ-କୃଷ୍ଣ ଉପାସନାରେ ବୈଷ୍ଣବଧର୍ମର ବିକଶିତ ରୂପ; ଶୈବ ଓ ବୈଷ୍ଣବ ମତର ସମନ୍ୱୟରେ ହରିହର ଉପାସନା; ରାଧାକୃଷ୍ଣ ପ୍ରତିମା, ଲକ୍ଷ୍ମୀନାରାୟଣ ପ୍ରତିମା, ଲକ୍ଷ୍ମୀନୃସିଂହ ପ୍ରତିମା ଆଦି ବିଭିନ୍ନ ଧର୍ମଧାରାର ସମନ୍ୱିତ ଆଲେଖ୍ୟ ରହିଛି । ବୈଷ୍ଣବକ୍ଷେତ୍ର ପୁରୀର ମହାପ୍ରସାଦ ପରି ହରିହରକ୍ଷେତ୍ରର ମହାପ୍ରସାଦକୁ ଲୋକଗ୍ରାହ୍ୟ କରିବାକୁ ମହାପ୍ରସାଦର ମାହାତ୍ମ୍ୟ ବର୍ଣ୍ଣିତ ।

ସ୍ୱର୍ଣ୍ଣାଦିମହୋଦୟ ମହାପ୍ରସାଦର ପ୍ରଶସ୍ତିଗାନ କରିଛି । ପ୍ରଥମ ପରି ଅଧ୍ୟାୟରେ ପୁରାଣ, ଇତିହାସ, ପରମ୍ପରା ଓ ଲୋକସଂସ୍କୃତିକୁ ଯୋଡ଼ିବାର ପ୍ରୟାସ ଦେଖାଯାଏ ।

ପଞ୍ଚମ ଅଧ୍ୟାୟରେ ଉତ୍କଳୀୟ ମନ୍ଦିର ଓ ସ୍ଥାପତ୍ୟର କ୍ରମବିକାଶ ଏବଂ କଳା ଓ ଭାସ୍କର୍ଯ୍ୟର ବୈଶିଷ୍ଟ୍ୟ ବିଷୟରେ ମତ ପୋଷଣ କରାଯାଇଛି । ବୈଦିକ ଯୁଗରୁ ରଥନିର୍ମାଣ ପ୍ରଥା ଅନୁସରଣରେ ବିମାନ ଆକୃତିର ପୀଢ଼ ଦେଉଳ ନିର୍ମାଣ ଦ୍ୱାରା ବିଶ୍ୱକର୍ମାଙ୍କ ଶିଳ୍ପକଳାକୁ ଲୋକଲୋଚନକୁ ଆଣିବାର ଭୂମିକା ନିର୍ବାହ କରାଯାଇଛି । ଶିଖର ଜାତୀୟ ମନ୍ଦିର, ଭଦ୍ରଦେଉଳ, ରେଖ ଓ ପୀଢ଼ ଦେଉଳ, ଗୌରୀଘର-ଖାଖରା, କଳସ ଆଦିର ନିର୍ମାଣଶୈଳୀ କଳା ଓ ସୌନ୍ଦର୍ଯ୍ୟବୋଧରେ ପରିପୂରକ ।

ଷଷ୍ଠ ଅଧ୍ୟାୟରେ ଉତ୍କଳୀୟ ମନ୍ଦିରର ବିଶେଷତ୍ୱ ଉଲ୍ଲେଖନୀୟ । ନାଗନାଗିନୀ, ଗଜଲକ୍ଷ୍ମୀ, କାର୍ତ୍ତିକେୟ, ଗଣେଶ, ନବଗ୍ରହ, ଦିକ୍‌ପାଳ, ଦ୍ୱାରପାଳ, କୀର୍ତ୍ତିମୁଖ, ବେତାଳ, ଗନ୍ଧର୍ବ ଓ କିନ୍ନର, ଅଁଏଳା ପଥର, ଭଦ୍ରଘଟ, ଭୋ-ଚିତ୍ର, ପ୍ରାଣୀ ଓ ଉଦ୍ଭିଦ. କଦମ୍ବ, ଦ୍ୱାରକାମ, ଲତାକାମ, ଦେଉଳଚରିଣୀ, ମକର, ସିଂହ ଓ ଗଜସିଂହ, ନାରୀ ଓ ବୃକ୍ଷ, ମାୟାଦେବୀଙ୍କ ପ୍ରସବକାଳୀନ ଦୃଶ୍ୟ, ସୁନ୍ଦରୀ ତରୁଣୀ ଓ ଅଶୋକ ବୃକ୍ଷ ଇତ୍ୟାଦି ସାମଗ୍ରୀ ଶିଳ୍ପଶାସ୍ତ୍ରର ପ୍ରାୟୋଗିକ ଦିଗର ସ୍ପଷ୍ଟ ଚିତ୍ର ପ୍ରଦାନ କରେ ।

ସପ୍ତମ ଅଧ୍ୟାୟରେ ଭୁବନେଶ୍ୱରର ପ୍ରମୁଖ ମନ୍ଦିରର କାଳ ନିର୍ଣ୍ଣୟ ଇତିହାସର ଉପାଦାନ ଉପରେ ଆଧାରିତ । ଏହା ଗବେଷକଙ୍କୁ ପ୍ରେରଣା ଯୋଗାଇବ । ଲିପିତତ୍ତ୍ୱ ଓ ପୁରାତତ୍ତ୍ୱ ଉପରେ ନିର୍ଭର କରି ବ୍ରହ୍ମେଶ୍ୱର ଓ ମେଘେଶ୍ୱର ମନ୍ଦିରର କାଳ ବିଷୟ ଆଲୋଚିତ । ଲିଙ୍ଗରାଜ ମନ୍ଦିର ଓ ଲଲାଟେନ୍ଦୁ କେଶରୀଙ୍କ ସମ୍ବନ୍ଧ ବିଷୟରେ ଉଲ୍ଲେଖ କରି ଐତିହାସିକ ମହାପାତ୍ର ନିଜ ମତକୁ ସାଧ୍ୟମତେ ପରିପୁଷ୍ଟ କରିବାକୁ ପ୍ରୟାସ କରିଛନ୍ତି (କେ.ନା.ମହାପାତ୍ର, ପୃ.୧୧୯-୧୨୭) । ସପ୍ତମ ଶତାବ୍ଦୀ ଓ

ଲଲାଟେନ୍ଦୁ କେଶରୀ ସିଦ୍ଧାନ୍ତକୁ ପୁନଃ ଉତ୍‌ଥାପନ କରି ଲେଖକ ତାଙ୍କର ସୁଚିନ୍ତିତ ଯୁକ୍ତି ଉପସ୍ଥାପିତ କରିଛନ୍ତି । ଲିଙ୍ଗରାଜଙ୍କ ଭୋଗମଣ୍ଡପ, ନାଟମଣ୍ଡପ, ଭାସ୍କରେଶ୍ୱର ମନ୍ଦିର, ମାର୍କଣ୍ଡେଶ୍ୱର ମନ୍ଦିର, ମୋହିନୀ ମନ୍ଦିର, ଉତ୍ତରେଶ୍ୱର ମନ୍ଦିର, ଶିଶିରେଶ୍ୱର ମନ୍ଦିର ଓ ପରଶୁରାମେଶ୍ୱର ମନ୍ଦିରର ବିଶେଷତ୍ୱ, ମନ୍ଦିରରେ ବୌଦ୍ଧପ୍ରଭାବ, କପାଳିନୀ ମନ୍ଦିର ଇତ୍ୟାଦି ମନ୍ଦିର ଶୈଳୀକୁ ଲୋକପ୍ରିୟ ଭାବରେ ପ୍ରତିପାଦିତ କରାଯାଇଛି ।

ଅଷ୍ଟମ ଅଧ୍ୟାୟରେ ଅଷ୍ଟ ଆୟତନର ପୁଙ୍ଖାନୁପୁଙ୍ଖ ବିବରଣୀ ପ୍ରଦତ୍ତ । ସ୍ୱର୍ଣ୍ଣାଦି ମହୋଦୟ ବେଳକୁ ଅଷ୍ଟ ଆୟତନ ବିକଶିତ ରୂପରେ ପରିଚୟ ଲାଭ କରିସାରିଛି । ଭୁବନେଶ୍ୱରର ଅଷ୍ଟତୀର୍ଥ ଓ ପୁଷ୍କରିଣୀ ବର୍ଣ୍ଣନା ମଧ୍ୟରେ ବିନ୍ଦୁସାଗର, ପାପନାଶିନୀ, ବ୍ରହ୍ମକୁଣ୍ଡ, ମେଘକୁଣ୍ଡ, ଅଲାବୁକୁଣ୍ଡ, ରାମକୁଣ୍ଡ, କୋଟୀତୀର୍ଥ, ଗଙ୍ଗାଯମୁନା, କେଦାରକୁଣ୍ଡ ଓ ଗୌରୀକୁଣ୍ଡ, ମରିଚୀକୁଣ୍ଡ, କପିଳକୁଣ୍ଡ, ଦେବୀପାଦହରା ଆଦି ତୀର୍ଥ ସରୋବର ଓ କୁଣ୍ଡର ଅବସ୍ଥିତିର ବର୍ଣ୍ଣନା ତୀର୍ଥ ଓ ପର୍ଯ୍ୟଟନ ମାନଚିତ୍ର ଦୃଷ୍ଟିରୁ ଗୁରୁତ୍ୱପୂର୍ଣ୍ଣ ।

ନବମ ଅଧ୍ୟାୟରେ ସେବକ ସମ୍ପ୍ରଦାୟ ଓ ସେବା ପୂଜାର ସଂକ୍ଷିପ୍ତ ସୂଚନା ଦିଆଯାଇଛି । ଦଶମ ଅଧ୍ୟାୟରେ ଭୁବନେଶ୍ୱରର ଯାତ୍ରା ଓ ଉପଯାତ୍ରା ବର୍ଣ୍ଣନା କରି ଐତିହାସିକ ମହାପାତ୍ର ତାଙ୍କ ବିବରଣୀକୁ ପୂର୍ଣ୍ଣାଙ୍ଗ କରିବାକୁ ନିଷ୍ଠା ଦେଖାଇଛନ୍ତି । ଏକାଦଶ ଅଧ୍ୟାୟରେ ଦୁର୍ଦ୍ଦିନରେ ଭୁବନେଶ୍ୱର ବିଷୟରେ ଆଲୋକପାତ କରି ବିଭିନ୍ନ ଆକ୍ରମଣ ଓ ଧ୍ୱଂସର ଅବତାରଣା କରିଛନ୍ତି । ମାନବକୃତ ଧ୍ୱଂସ ସହ ପ୍ରକୃତିର ଧ୍ୱଂସଲୀଳା ଭୁବନେଶ୍ୱରର ରୂପ ବଦଳାଇଦେଇଛି । ଦ୍ୱାଦଶ ଅଧ୍ୟାୟରେ ବ୍ରିଟିଶ ଶାସନ କାଳରେ ଭୁବନେଶ୍ୱରର ଜୀର୍ଣ୍ଣ ସଂସ୍କାର ତଥା ବ୍ୟବସ୍ଥିତ ଇତିହାସ ଲେଖାଯିବାର ପ୍ରୟାସ, ଆଧୁନିକ ଭୁବନେଶ୍ୱରର ଇତିହାସ ବିଷୟରେ ପ୍ରଦତ୍ତ ବିବରଣୀ ଇତିହାସର ନବକଳେବର ପାଇଁ ଉପଯୋଗୀ ବୋଲି ଦର୍ଶାଯାଇଛି ।

କେଦାରନାଥ ଗବେଷଣା ପ୍ରତିଷ୍ଠାନର ସଭାପତି, ସମ୍ପାଦକ, କର୍ମକର୍ତ୍ତା ଓ ଗବେଷଣା ଉପସମିତି ଏପରି ଏକ ଅପ୍ରକାଶିତ ପୁସ୍ତକକୁ ପ୍ରକାଶ କରିବାର ଯେଉଁ ଉଦ୍ୟମ କରିଛନ୍ତି, ତାହା ପ୍ରଶଂସନୀୟ । କେଦାରନାଥ ମହାପାତ୍ରଙ୍କର ଐତିହାସିକ ଶୈଳୀ ବିଭିନ୍ନ ରଚନାରେ ଯେପରି ପାଠକୀୟ ଆଦୃତି ଲାଭ କରିଛି, ଏହି ପୁସ୍ତକ ମଧ୍ୟ ସେପରି ସମାଦର ଲାଭକରିବ ବୋଲି ବିଶ୍ୱାସ ।

**ପ୍ରଫେସର ଡକ୍ଟର ଗୋପାଳକୃଷ୍ଣ ଦାଶ**

# ସୂଚୀପତ୍ର





## ପ୍ରଥମ ଅଧ୍ୟାୟ

# ପୌରାଣିକ ବିବରଣ

**(କ) କୀର୍ତ୍ତିବାସ କଟକ :** ଭୁବନେଶ୍ୱର ଲିଙ୍ଗରାଜ ମହାପ୍ରଭୁ ପ୍ରାଚୀନ ଅଭିଲେଖମାନଙ୍କରେ କୀର୍ତ୍ତିବାସ ବୋଲି ବର୍ଣ୍ଣିତ ହୋଇଅଛନ୍ତି । ଭୁବନେଶ୍ୱରମାହାତ୍ମ୍ୟ ପ୍ରକାଶକ 'ସ୍ୱର୍ଣ୍ଣାଦ୍ରି ମହୋଦୟ'ରେ ପ୍ରଥମେ ଲିଙ୍ଗରାଜଙ୍କ ନାମ ଉଲ୍ଲେଖ ଦେଖାଯାଏ । ତାହା ପୂର୍ବରୁ ସର୍ବତ୍ର କୀର୍ତ୍ତିବାସ ନାମ ବିଶେଷଭାବରେ ବ୍ୟବହୃତ ହେଉଥିଲା । ମାଦଳାପାଞ୍ଜିରୁ ଲଲାଟେନ୍ଦୁ କେଶରୀ ଏହି ଲିଙ୍ଗରାଜ ମନ୍ଦିର ନିର୍ମାଣ କରିଥିବାର ସୂଚନା ମିଳେ । ଲଲାଟେନ୍ଦୁ କେଶରୀଙ୍କ ଲିପିରୁ ଜଣାଯାଏ-

"ଗଜାଷ୍ଟେଷୁମିତେ ଯାତେ ଶକାବ୍ଦେ କୃତ୍ତିବାସସଃ
ପ୍ରାସାଦମକରୋତ୍ ରାଜା ଲଲାଟେନ୍ଦୁଶ୍ଚ କେଶରୀ ॥"

କୀର୍ତ୍ତିବାସଙ୍କ ପୀଠ ବୋଲି ଭୁବନେଶ୍ୱର କୀର୍ତ୍ତିବାସ କଟକ ନାମରେ ଆଖ୍ୟାତ ହେଉଥିଲା । ଗଜାଷ୍ଟେଷୁର ଅର୍ଥ ଗଜ-୮, ଅଷ୍ଟ-୮, ଇଷୁ-୫=୮୮୫ ବା ସଂଖ୍ୟାନାଂ ବାମତୋ ଗତିଃ ଅର୍ଥାତ୍ ୫୮୮ ଶକାବ୍ଦ ବା ୬୬୬ ଖ୍ରୀଷ୍ଟାବ୍ଦ । ଏହି ଅଭିଲେଖରୁ ସ୍ପଷ୍ଟ ଜଣାଯାଏ ଯେ ଲଲାଟେନ୍ଦୁ କେଶରୀ ୬୬୬ଖ୍ରୀଷ୍ଟାବ୍ଦରେ କୀର୍ତ୍ତିବାସଙ୍କ ପ୍ରାସାଦ (ଲିଙ୍ଗରାଜ ମନ୍ଦିର) ନିର୍ମାଣ କରିଥିଲେ । କୀର୍ତ୍ତିବାସ ଶବ୍ଦର ଏହା ପ୍ରାଚୀନତମ ନିଦର୍ଶନ । ଏହା ପୂର୍ବରୁ ଅନ୍ୟ କୌଣସି ଲିପିରେ କୀର୍ତ୍ତିବାସ ନାମ ବ୍ୟବହୃତ ହୋଇଥିବାର ଜଣାଯାଇନାହିଁ । ଆନୁମାନିକ ଚତୁର୍ଦ୍ଦଶ ଶତାବ୍ଦୀରେ ଲିଖିତ 'ଜୀର୍ଣ୍ଣୋଦ୍ଧାରଶତକ' ଗ୍ରନ୍ଥରୁ ଏକାମ୍ର କାନନର କୃତ୍ତିବାସ (ବା କୀର୍ତ୍ତିବାସ) ନାମ ମିଳେ । ଚୋଡ଼ଗଙ୍ଗଦେବଙ୍କ କେଦାରେଶ୍ୱର ଶିଳାଲିପି (୧୦୩୪ ଖ୍ରୀଷ୍ଟାବ୍ଦ) ଓ ନରସିଂହଦେବଙ୍କ ଉତ୍ତରେଶ୍ୱର ଶିଳାଲିପି (୧୧୭୪ଖ୍ରୀ.)[୧], ପ୍ରତାପ ପୁରୁଷୋତ୍ତମଦେବଙ୍କ ୧୯ ସମ୍ବତ୍ସରରେ ଖୋଦିତ ଶିଳାଲିପି[୨] ଓ ଲିଙ୍ଗରାଜମନ୍ଦିରର ଜଗମୋହନର କଳାହାଟ ଦ୍ୱାରର ଲିପିଗୁଡ଼ିକରେ ଏହା କୀର୍ତ୍ତିବାସ କ୍ଷେତ୍ର ବା କୀର୍ତ୍ତିବାସ (କୃତ୍ତିବାସ) କଟକ ବୋଲି ବର୍ଣ୍ଣିତ ହୋଇଅଛି ।

---

୧. ଓଁ ସ୍ୱସ୍ତି ଶ୍ରୀବୀର ନରସିଂହ ଦେବସ୍ୟ ପ୍ରବର୍ଦ୍ଧମାନେ ବିଜୟରାଜ୍ୟେ ସମ୍ବତ୍ ୧୨ଶ୍ରାହି ×××× ଶ୍ରୀ କୀର୍ତ୍ତିବାସକ୍ଷେତ୍ରେ ସିଦ୍ଧେଶ୍ୱର ମଠର ବଡ଼ ନରସିଂହଦେବଙ୍କର ଆକାଶ ମାର୍ଗ ପୂର୍ବକୋ ××××

୨. ବୀରଶ୍ରୀ ଗଜପତି ଗୌଡ଼େଶ୍ୱର ନବକୋଟି କର୍ଣ୍ଣାଟକଲବରଗେଶ୍ୱର ପ୍ରତାପ ପୁରୁଷୋତ୍ତମ ଦେବଙ୍କ ବିଜୟରାଜ୍ୟର ୧୯ସମ୍ବତ୍ସରେ ×××× ବିଜ୍ଞେବେହେରା ଆଦେଶ କ୍ରମେ ଉତ୍କୀର୍ଣ୍ଣ କୃତ୍ତିବାସ କଟକେ ଅବସ୍ଥା କାଳେ ।

ଉତ୍କଳ ଇତିହାସରେ ଦୁଇଜଣ ପୁରୁଷୋତ୍ତମଦେବ ରାଜତ୍ୱ କରୁଥିଲେ । ଦ୍ୱିତୀୟ ପୁରୁଷୋତ୍ତମ ଦେବ(୧୪୬୫-୧୪୯୫) ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ତେଣୁ ଏହି ଲିପିଟି ଦ୍ୱିତୀୟ ପୁରୁଷୋତ୍ତମ ଦେବଙ୍କର ବୋଲି ମନେହୁଏ । କାରଣ ପ୍ରଥମ ପୁରୁଷୋତ୍ତମ ଦେବ ମୋଟେ ୧୩ବର୍ଷ ରାଜତ୍ୱ କରିଥିଲେ । ଲିପିରେ ୧୯ ସମସ୍ତର ଥିବାରୁ ନିଃସନ୍ଦେହରେ କୁହାଯାଇପାରେ ଯେ, ଏହା ଦ୍ୱିତୀୟ ପୁରୁଷୋତ୍ତମ ଦେବଙ୍କର ଲିପି । ତାହାହେଲେ ବର୍ତ୍ତମାନ ନିଃସନ୍ଦେହରେ କୁହାଯାଇପାରେ ଯେ, ଖ୍ରୀଷ୍ଟୀୟ ୭ମ ଶତାବ୍ଦୀରୁ ଖ୍ରୀଷ୍ଟୀୟ ଷୋଡ଼ଶ ଶତାବ୍ଦୀର ଆରମ୍ଭ ପର୍ଯ୍ୟନ୍ତ ଏହା କୀର୍ତ୍ତିବାସ କଟକ ନାମରେ ଅଭିହିତ ଥିଲା । ଗଙ୍ଗବଂଶ ରାଜତ୍ୱ ସମୟରେ ମଧ୍ୟ 'ଏକାମ୍ର କାନନ' ପରିବର୍ତ୍ତେ ଏହାକୁ କୀର୍ତ୍ତିବାସ କଟକ ବୋଲି ସମସ୍ତେ କହୁଥିଲେ । ଗଙ୍ଗବଂଶର ପ୍ରାୟ ଶତାଧିକ ଶିଳାଲିପି ଭୁବନେଶ୍ୱରରେ ବିଦ୍ୟମାନ । ପ୍ରତ୍ୟେକ ଶିଳାଲିପିରେ କୀର୍ତ୍ତିବାସ କଟକ ବୋଲି ଲେଖା ହୋଇଛି । କିନ୍ତୁ ଉଦ୍ୟୋତକେଶରୀଙ୍କ ବ୍ରହ୍ମେଶ୍ୱରଲିପି ଓ ହରବର୍ମ ଦେବଙ୍କ ଏକାଦଶ ଶତାବ୍ଦୀର ଲିପିରେ ଏହା ଏକାମ୍ରକାନନ ବୋଲି ବର୍ଣ୍ଣିତ ହୋଇଛି । ପ୍ରାଚୀନ ଗ୍ରନ୍ଥମାନଙ୍କରେ ଏଠାରେ ଏକକୋଟି ଲିଙ୍ଗର ଅବସ୍ଥିତି ବର୍ଣ୍ଣିତ ହୋଇଛି ମୁରାରିଗୁପ୍ତଙ୍କ ଲିଖିତ 'ଚୈତନ୍ୟ ଚରିତ' ପାଣ୍ଡୁଲିପିରେ ଉଲ୍ଲେଖ ଅଛି- 'ସେତ୍ରିଯତ୍ରେଶ୍ୱର ଲିଙ୍ଗକୋଟ୍ୟୈ ବିଶ୍ୱେଶ୍ୱରାଦ୍ୟାଷ୍ଟ ସୁପୁଣ୍ୟତୀର୍ଥାଃ' । ଉତ୍କଳଖଣ୍ଡରେ ମଧ୍ୟ ଏକକୋଟିଲିଙ୍ଗ ବିଷୟ ବର୍ଣ୍ଣିତ ହୋଇଛି ।)

**ଏକାମ୍ର କାନନ :** ଶ୍ରୀ ଜଗନ୍ନାଥଙ୍କ ଅବସ୍ଥାନ ଯୋଗୁଁ ପୁରୀ ପୂର୍ବକାଳରେ ଜଗନ୍ନାଥପୁରୀ ନାମରେ ଖ୍ୟାତିଲାଭ କରିଥିଲା । "ଜଗନ୍ନାଥପୁରୀପ୍ରାନ୍ତେ ଦେଶେ ଚୈବୋତ୍କଳାଭିଧେ । ଜୟଦେବଇତି ଖ୍ୟାତୋ ଗ୍ରାମଃବ୍ରାହ୍ମଣ ସଂକୁଳଃ" (ଭକ୍ତମାଳା-ଚନ୍ଦ୍ରଦତ୍ତ) । ବର୍ତ୍ତମାନ ଭୁବନେଶ୍ୱର ନାମର ମୂଳ ସମ୍ବନ୍ଧରେ ସାମାନ୍ୟ ଆଲୋଚନା କରିବା ଆବଶ୍ୟକ ।

ଋଷିମାନେ କୀର୍ତ୍ତି ଓ ବାସଙ୍କର ପରିଚୟ ପଚାରିବାରୁ ଭରଦ୍ୱାଜ କହିଲେ

"ପ୍ରବକ୍ଷ୍ୟାମି ମୁନିଶ୍ରେଷ୍ଠାଃ କୀର୍ତ୍ତିନାମ ମହାସୁରଃ ।
ଦ୍ରୁମିଳସ୍ୟ ସୁତୋ ଘୋର ଆସୀଦୃଷିବିନାଶକଃ ॥୫॥

ଦୁର୍ଦ୍ଧର୍ଷୋ ଦୁର୍ବିନୀତଶ୍ଚ ଦେବବ୍ରାହ୍ମଣକଣ୍ଟକଃ
ବାସଶ୍ଚୈବେତି ତଦ୍‌ଭ୍ରାତା ବିଶ୍ୱସ୍ୟ ନିଧନୋଦ୍ୟତଃ ॥୬॥

ଶତମେକୋତ୍ତରଂ ତସ୍ୟ ଭ୍ରାତରଃ ପରିକୀର୍ତ୍ତିତାଃ ।
ସର୍ବେ ଭୀମବଳା ଭୀମାଃ ସହ୍ୟପର୍ବତବାସିନଃ ॥୭॥

*(କପିଳସଂହିତା : ଅଷ୍ଟାଦଶୋଽଧ୍ୟାୟ)*

କୀର୍ତ୍ତି ଓ ବାସ ରାକ୍ଷସଦ୍ଵୟଙ୍କର ବର୍ଣ୍ଣନାରୁ ମନେହୁଏ ସେମାନେ ଋଷିବିନାଶକ ଦୁର୍ବିନୀତ ଓ ଦେବବ୍ରାହ୍ମଣକଣ୍ଟକ ଥିଲେ । ପିତାଙ୍କଦ୍ଵାରା ତାଡ଼ିତ ହୋଇ ସେମାନେ ଏକାମ୍ରବନକୁ ଗଲେ । ସେଠାରେ ଭଗବତୀଙ୍କର ଅସାଧାରଣ ରୂପଲାବଣ୍ୟରେ ବିମୋହିତ ହୋଇ ତାଙ୍କଠାରୁ ରତି ଭିକ୍ଷା କରିଥିଲେ । କାତ୍ୟାୟନୀ ସେମାନଙ୍କ ଅସଦଭିଳାଷ ଜାଣିପାରି କହିଲେ, "ଯେ ମୋର ପଦକୁ ସ୍କନ୍ଧରେ ବହନକରିପାରିବ, ମୁଁ ତାହାର ପ୍ରଣୟିନୀ ହେବି ।" ଏହାଶୁଣି ରାକ୍ଷସଦ୍ଵୟ ବିଶେଷ ପ୍ରୀତ ହୋଇଥିଲେ । ଦେବୀ ବାସର ସ୍କନ୍ଧରେ ନିଜର ବାମ ପାଦ ଓ କୀର୍ତ୍ତିର ସ୍କନ୍ଧରେ ଡାହାଣ ପାଦ ଥୋଇ ସେମାନଙ୍କୁ ସଂହାର କରିଥିଲେ । ସେହିଦିନୁ ଗୋପାଳୁଣୀ କୀର୍ତ୍ତିବାସ ବିମର୍ଦ୍ଦିନୀ ଓ ରାକ୍ଷସଦ୍ଵୟଙ୍କ, ବଧସ୍ଥଳୀ ଦେବୀପାଦହରା ନାମରେ ଖ୍ୟାତ । ଏ ପ୍ରସଙ୍ଗଟି ସ୍ଵର୍ଣ୍ଣାଦ୍ରି ମହୋଦୟରେ ବିସ୍ତୃତ ଭାବେ ବର୍ଣ୍ଣିତ । ସେଗୁଡ଼ିକ ଏଠାରେ ଉଦ୍ଧାର କରିବାର କୌଣସି କାରଣ ନାହିଁ । ସେଥିରୁ କେବଳ ଏତିକି ଅଧିକ ଜଣାଯାଏ ଯେ ଗୋପାଳୁଣୀ ରାକ୍ଷସଦ୍ଵୟ ବଧକରିବା ନିମିତ୍ତ ମହାଦେବଙ୍କୁ ସ୍ତୁତି କରିଥିଲେ । ମହାଦେବ ତାଙ୍କୁ ଏ ବିଷୟରେ ବିଶେଷ ସାହାଯ୍ୟ କରିଥିଲେ ।

ପୂର୍ବେ ଦ୍ରୁମିଳନାମକ ବହୁଯଜ୍ଞକାରୀ ଜଣେ ବିଖ୍ୟାତ ରାଜାଥିଲେ ସେ ବ୍ରାହ୍ମଣମାନଙ୍କୁ ଭୂରି ଦକ୍ଷିଣା ଦେଉଥିଲେ । ଦେବତାମାନେ ତାଙ୍କର କଠୋର ଧର୍ମସାଧନରେ ପ୍ରୀତହୋଇ ତାଙ୍କୁ ଗୋଟିଏ ବର ମାଗିବାକୁ କହିଲେ । ସେ ନିଜର ପୁତ୍ରଦ୍ଵୟ ଅସ୍ତ୍ର ଶସ୍ତ୍ରଦ୍ଵାରା ଅବଧ୍ୟ ହେବାପାଇଁ ବର ମାଗିଥିଲେ । ଏହି ପୁତ୍ରଦ୍ଵୟ ହେଉଛନ୍ତି କୀର୍ତ୍ତି ଓ ବାସ । ଏପରି ବର ହେତୁ ଦେବୀ ଗୋପାଳୁଣୀ ନିଜର ପଦଦ୍ଵାରା ସେମାନଙ୍କୁ ବଧ କରିଥିଲେ । ଏକାମ୍ର ପୁରାଣରେ ଦେବାସୁର ସଂଗ୍ରାମ ବିଷୟ ବିସ୍ତୃତ ଭାବରେ ବର୍ଣ୍ଣିତ ହୋଇଅଛି । ଏଥିରେ ବର୍ଣ୍ଣିତ ହୋଇଥିବା ଅସୁରମାନେ ଯଜ୍ଞବିନାଶକ ଦେବ, ବ୍ରାହ୍ମଣ ଓ ବେଦଧ୍ଵଂସକାରୀ ଥିଲେ । ଏହି ବର୍ଣ୍ଣନା ଅନୁଶୀଳନ କଲେ ଜଣାଯାଏ, ଏମାନେ ବୌଦ୍ଧଧର୍ମାବଲମ୍ବୀ ଥିଲେ ଏବଂ ବୈଦିକ ଓ ବୌଦ୍ଧ ଯୁଦ୍ଧ ଦେବାସୁର ଯୁଦ୍ଧରୂପେ ବର୍ଣ୍ଣିତ ହୋଇଛି । ସେହିପରି କୀର୍ତ୍ତି ଓ ବାସ ଦୁଇ ବୌଦ୍ଧ ଯତି ବା ପ୍ରଚାରକଦ୍ଵଣଙ୍କର ପରିବର୍ତ୍ତିତ ନାମ ବୋଲି ମନେହୁଏ । ଏମାନଙ୍କ ଧ୍ଵଂସ ବା ପରାଜୟ ପରେ ଏକାମ୍ରକାନନରେ ବ୍ରାହ୍ମଣ୍ୟଧର୍ମ ପୁନଃ ପ୍ରତିଷ୍ଠିତ ହୋଇଥିଲା ।

କୀର୍ତ୍ତିବାସ ବଧର ରହସ୍ୟ ଭେଦକରିବା ଅଳ୍ପବିଦ୍ୟ ଲେଖକ ପକ୍ଷେ ଅସମ୍ଭବ । ଭବିଷ୍ୟତରେ କୌଣସି ଐତିହାସିକ ଏହି ଗୂଢ଼ ରହସ୍ୟ ଭେଦକରି ପ୍ରକୃତ ସତ୍ୟବୃତ୍ତାନ୍ତ ଉଦ୍ଧାର କରିପାରିବେ । ପୌରାଣିକ ଆଖ୍ୟାୟିକାଗୁଡ଼ିକର ବିଶଦ ବର୍ଣ୍ଣନ କରିବା ଅନାବଶ୍ୟକ । ଖ୍ରୀଷ୍ଟୀୟ ପଞ୍ଚମ ଶତାବ୍ଦୀ ପର୍ଯ୍ୟନ୍ତ ଭୁବନେଶ୍ୱରରେ ବୌଦ୍ଧଧର୍ମ ପ୍ରଚଳନ ଥିଲା ଓ ହିନ୍ଦୁଧର୍ମ ପ୍ରଚାର ଅତ୍ୟନ୍ତ କଷ୍ଟକର ବ୍ୟାପାର ହୋଇଥିଲା । କିନ୍ତୁ ବ୍ରାହ୍ମଣ୍ୟଧର୍ମର ପ୍ରଚାରକମାନେ ସ୍ୱମତ ପ୍ରଚାର ସମୟରେ ବୌଦ୍ଧ ପୁରୋଧାମାନେ ସେମାନଙ୍କୁ ଯତ୍‌ପରୋନାସ୍ତି ବାଧା ଦେଇଥିବେ । କିନ୍ତୁ ଉତ୍କଳର ତତ୍‌କାଳୀନ ରାଜାମାନେ ବ୍ରାହ୍ମଣ୍ୟ ଧର୍ମର ପୃଷ୍ଠପୋଷଣ କରୁଥିବାରୁ ବୌଦ୍ଧଧର୍ମ ଧୀରେଧୀରେ ଅବନତି ମାର୍ଗରେ ଗତି କରିବାକୁ ଲାଗିଲା ।

ବର୍ତ୍ତମାନ ଏ ସ୍ଥାନର ନାମ ଭୁବନେଶ୍ୱର ଓ କୀର୍ତ୍ତିବାସଙ୍କର ନାମ ଲିଙ୍ଗରାଜ କିପରି ହେଲା ତା'ର ସାମାନ୍ୟ ଆଲୋଚନା କରିବା ଆବଶ୍ୟକ ।

ଯାନି ବ୍ରହ୍ମନ୍ ପଦ୍ମଯୋନେ ତ୍ୱୟେତତ୍
ଜ୍ୟୋତିର୍ଲିଙ୍ଗାନ୍ୟର୍ଚ୍ଚିତାନି ପୃଥିବ୍ୟାଂ
ତାନ୍ୟେତସ୍ୟ ତ୍ୱଂଶଭୂତାନି ବିଦ୍ଧି

"ତତ୍‌କନ୍ଦଂ ଶ୍ରୀଭୁବନେଶଂ ଚ ଲିଙ୍ଗମ୍
ଲିଙ୍ଗାନାଂ ବୈ ଜ୍ୟୋତିଷାଂ ଦ୍ୱାଦଶାନାଂ
ରାଜତ୍ୱେ ତତ୍‌ସଂସ୍ଥିତଂ ଲିଙ୍ଗରାଜମ୍"
ବିନ୍ଧ୍ୟେକାମ୍ରେ ବ୍ରହ୍ମଲିଙ୍ଗଂ
ଶିତାଶିତାରୁଣ ନାଦସ୍ୱରୂପମ୍ -

(ସ୍ୱର୍ଣ୍ଣାଦ୍ରିମହୋଦୟ- ୧.୫୦-୫୩)

ଏହି ଶ୍ଳୋକରେ ଲିଙ୍ଗରାଜଙ୍କ ନାମ ମିଳେ:-

× × ×

"ଭାରତେ ଚୋତ୍କଳେଦେଶେ ଶ୍ରୀମତ୍ୟେକାମ୍ରକେ ବନେ

× × ×

ଲିଙ୍ଗଂ ସନାତନଂ ବିଦ୍ଧି ନାମ୍ନା ତ୍ରିଭୁବନେଶ୍ୱରମ୍ ॥"

(ସ୍ୱର୍ଣ୍ଣାଦ୍ରିମହୋଦୟଃ- ୧/୫୨-୫୧)

ତ୍ରିଭୁବନେଶ୍ୱର ଲିଙ୍ଗଙ୍କର ନାମ ଓ ତାଙ୍କର ନାମାନୁସାରେ ଏହି ଗ୍ରାମ ତ୍ରିଭୁବନେଶ୍ୱର ବୋଲି କଥିତ ହେଉଥିଲା । କାଳକ୍ରମେ ତ୍ରିଭୁବନେଶ୍ୱର ଭୁବନେଶ୍ୱର ରୂପ ଧାରଣ କରିଛି ।

ପରିବର୍ତ୍ତମାନ ଜଗତରେ ସକଳପଦାର୍ଥ କାଳକ୍ରମେ ପରିବର୍ତ୍ତିତ ହୋଇଯାଉଛି । ଭବିଷ୍ୟତରେ ଏହାର ନାମ ପରିବର୍ତ୍ତିତ ହୋଇ ଆଉ କ'ଣ ହୋଇପାରେ ତାହା କିଏ କହିପାରିବ ? ଅନାଦି ଅନନ୍ତ କାଳରୁ ଏହାର ନାମ କଅଣ ଥିଲା ତାହା କହିବା ମାନବ ପକ୍ଷେ ଅସମ୍ଭବ । ଇତିହାସ ଦୁଇ ଅନ୍ଧକାରମୟ ସାଗର ମଧ୍ୟରେ ସାମାନ୍ୟ ଆଶ୍ରୟସ୍ଥଳ ମାତ୍ର । ସୃଷ୍ଟିର ଆଦ୍ୟକାଳରୁ ଇତିହାସର ଆରମ୍ଭ ପର୍ଯ୍ୟନ୍ତ ତଥ୍ୟ ଗଭୀର ଅନ୍ଧକାରରେ ଆଚ୍ଛନ୍ନ । ବିରାଟ ଭବିଷ୍ୟତ ଅନନ୍ତକାଳର ଗଭୀର ତମସାଚ୍ଛନ୍ନ ଗହ୍ୱରରେ ଆବଦ୍ଧ । ତ୍ରିକାଳଦର୍ଶୀ ମହାପୁରୁଷମାନେ କେବଳ ତାହା ଜାଣିବାପାଇଁ ସମର୍ଥ ହେବେ । ନଗଣ୍ୟ ଲେଖକ ପକ୍ଷେ ତାହା କହିବା ସମ୍ଭବ ନୁହେଁ ।

**ଗୁପ୍ତକାଶୀ :** ଭୁବନେଶ୍ୱରକୁ କାଶୀ ସଙ୍ଗେ ତୁଳନା କରିବା ପୂର୍ବରୁ କାଶୀର ସଂକ୍ଷିପ୍ତ ଇତିହାସ ସମ୍ବନ୍ଧରେ ସୂଚନା ଦେବା ଆବଶ୍ୟକ । ବୁଦ୍ଧଙ୍କ ପୂର୍ବରୁ କାଶୀ ବୈଦିକଧର୍ମର ପ୍ରଧାନ କେନ୍ଦ୍ରସ୍ଥାନ ଥିଲା । ମହାପୁରୁଷ ବୁଦ୍ଧ ଦିବ୍ୟଜ୍ଞାନ ଲାଭକରିବା ପରେ କାଶୀ ନିକଟସ୍ଥ ଋଷିପତ୍ତନରେ ଧର୍ମଚକ୍ର ପ୍ରବର୍ତ୍ତନ କରିଥିଲେ । ସେହିଦିନୁ ଇତିହାସରେ ନୂତନ ଯୁଗର ସୃଷ୍ଟି ହେଲା । ବ୍ରାହ୍ମଣ୍ୟଧର୍ମର ଶ୍ରେଷ୍ଠ ପୀଠରେ ଶତଶତ ବୌଦ୍ଧବିହାର ନିଜର ଉତ୍ତୁଙ୍ଗ ଶିର ଉତ୍ତୋଳନ କଲେ । ଆର୍ଯ୍ୟର ଯଜ୍ଞବେଦୀ ନିକଟରେ ଅସଂଖ୍ୟ ବୌଦ୍ଧସ୍ତମ୍ଭ ନିର୍ମିତ ହେଲା । ଅଶୋକଙ୍କ ସମୟରେ କାଶୀରୁ ବ୍ରାହ୍ମଣ୍ୟଧର୍ମ ଲୋପୋନ୍ମୁଖ ହୋଇଥିଲା । ଅଶୋକଙ୍କ ପରେ ପ୍ରାୟ ଦେଢଶତ ବର୍ଷ ପର୍ଯ୍ୟନ୍ତ କାଶୀ ଓ ସାରନାଥ ଉତ୍ତରଭାରତରେ ଗୋଟିଏ ପ୍ରଧାନ ବୌଦ୍ଧକେନ୍ଦ୍ରରୂପେ ଖ୍ୟାତିଲାଭ କରିଥିଲା । କୁଶାନ-ରାଜତ୍ୱ ସମୟରେ କାଶୀରୁ ବୈଦିକଧର୍ମ ଲୁପ୍ତପ୍ରାୟ ହୋଇଥିଲା । ଖ୍ରୀ.ପୂ. ଦ୍ୱିତୀୟ ଶତାବ୍ଦୀ ଶେଷଭାଗରେ ଭାରତୀୟ ଧର୍ମନୀତିରେ ଘୋର ବିପ୍ଳବ ସୃଷ୍ଟି ହୋଇଥିଲା । ବ୍ରାହ୍ମଣ୍ୟଧର୍ମ ଶତଶତ ବର୍ଷର ବିତାଡ଼ନ ଓ ଅବମାନନା ସହ୍ୟକରି ଦଶାଶ୍ୱମେଧଯାଜୀ ଭାରଶିବ ବଂଶ ରାଜନ୍ୟବୃନ୍ଦଙ୍କ ଆଶ୍ରୟ ଲାଭକରି ପୁନର୍ବାର ନିଜର ମସ୍ତକ ଉତ୍ତୋଳନ କରିଥିଲା । ବର୍ତ୍ତମାନ ଭାରଶିବ ମାନଙ୍କ କେତୋଟି ଲିପି ମିଳିଅଛି । ଏଥିରୁ ଜଣାଯାଏ ଯେ ସେମାନେ ପ୍ରଥମେ କାଶୀରେ ହିନ୍ଦୁଧର୍ମର ବିଜୟସ୍ତମ୍ଭ ପ୍ରତିଷ୍ଠା କରିଥିଲେ ।

ଗୋଟିଏ ଲିପିରେ ଅଛି "ଅଠସଭା(ଭା ?)ର-ସନ୍ନିବେଶିତ - ଶିବଲିଙ୍ଗୋଭ(ଦ୍ର ?)ବନ-ଶିବ- ସୁପରିତୁଷ୍ଟ-ସମୁତ୍ପାଦିତ ରାଜବଂଶାନାଂ ପରାକ୍ରମ ଆଧିଗତ ଭାଗୀରଥ୍ୟା ଆମଳଜାଳ - ମୂର୍ଦ୍ଧାଭିଷିକ୍ତାନାଂ ଦଶାଶ୍ୱମେଧାବଭୃଥସ୍ନାନାନାଂ ଭାରଶିବାନାxx ।"

ଗୁପ୍ତମାନଙ୍କ ପୂର୍ବରୁ ବକାତକମାନେ ଓ ତାଙ୍କ ପୂର୍ବରୁ ଭାରଶିବମାନେ ରାଜତ୍ୱ କରୁଥିଲେ । ବକାତକମାନେ ଭାରଶିବ ବଂଶ ସହିତ ବୈବାହିକ ସମ୍ବନ୍ଧ ସ୍ଥାପନ କରି ମଧ୍ୟଭାରତରେ ବିଶେଷ ପରାକ୍ରମ ଲାଭ କରିଥିଲେ । ଉଲ୍ଲେଖ ଅଛି - ଭାରଶିବନାମ ମହାରାଜ ଶ୍ରୀଭବନାଗ ଦୋହିତ୍ରସ୍ୟ ଗୌତମୀପୁତ୍ରସ୍ୟ - ପୁତ୍ରସ୍ୟ ବକାଟକାନାଂ ମହାରାଜଶ୍ରୀ ରୁଦ୍ରସେନସ୍ୟ ରୁଦ୍ରସେନ ବା ରୁଦ୍ରଦେବ ସମୁଦ୍ରଗୁପ୍ତଙ୍କର ସମସାମୟିକ ଥିଲେ । ସମୁଦ୍ରଗୁପ୍ତ ଖ୍ରୀଷ୍ଟପୂର୍ବ ୨୭ ଅବ୍ଦରୁ ୧୮ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ସମୁଦ୍ରଗୁପ୍ତଙ୍କ ପୂର୍ବରୁ ବକାତକମାନେ ପ୍ରାୟ ୬୦ବର୍ଷ ରାଜତ୍ୱ କରିଥିଲେ । ବକାତକଙ୍କ ପୂର୍ବରୁ ଭାରଶିବମାନେ ଅନ୍ତତଃ ୩୦ବର୍ଷ ରାଜତ୍ୱ କରିଥିଲେ । ଖ୍ରୀଷ୍ଟପୂର୍ବ ୧୧୭ଅବ୍ଦରେ ଭାରଶିବମାନେ ପ୍ରଥମେ ତ୍ରିଭୁବନତାରିଣୀ ଆର୍ଯ୍ୟାବର୍ତ୍ତପାବିନୀ ଗଙ୍ଗାକୂଳରେ ବ୍ରାହ୍ମଣ୍ୟଧର୍ମର ବିଜୟଧ୍ୱଜା ଉଡ଼ାଇଥିଲେ । ଭାରଶିବମାନେ ଆଧୁନିକ ବୁନ୍ଦେଲଖଣ୍ଡ ରାଜ୍ୟରେ ପ୍ରଥମେ ରାଜତ୍ୱ କରୁଥିଲେ । ଶିବଲିଙ୍ଗ ସେମାନଙ୍କର ପ୍ରଧାନ ଆରାଧ୍ୟ ଦେବତା ଥିଲେ । ସେମାନେ କାଶୀନିକଟରେ ଦଶାଶ୍ୱମେଧଯଜ୍ଞ ସଂପନ୍ନ କରିଥିଲେ । କାଶୀରେ ଅଦ୍ୟାବଧି ତାହା ଦଶାଶ୍ୱମେଧଘାଟ ନାମରେ ପରିଚିତ । ସେହି ସମୟରୁ କାଶୀରେ କ୍ରମେ କ୍ରମେ ଅସଂଖ୍ୟ ଶିବମନ୍ଦିର ନିର୍ମିତ ହୋଇଥିଲା ।

ବର୍ତ୍ତମାନ ଭୁବନେଶ୍ୱର ସହିତ କାଶୀର ତୁଳନା କରିବା ଆବଶ୍ୟକ । ଖ୍ରୀ.ପୂ: ଷଷ୍ଠ ଶତାବ୍ଦୀଠାରୁ ଖ୍ରୀ.ପୂ: ଦ୍ୱିତୀୟ ଶତାବ୍ଦୀପର୍ଯ୍ୟନ୍ତ କାଶୀରେ ଶୈବଧର୍ମ ଅବନତିର ଚରମସୀମାରେ ଉପନୀତ ହୋଇଥିଲା । ସେ ସମୟରେ ଭୁବନେଶ୍ୱର ସ୍ୱୟମ୍ଭୂ-ବନ ନାମରେ ଖ୍ୟାତ ହୋଇଥିଲା । କିନ୍ତୁ ସେ ଯୁଗରେ ଭୁବନେଶ୍ୱର ଲିଙ୍ଗକୋଟୀସମାବୃତ ହୋଇ ନଥିଲା । କାରଣ, ଭୁବନେଶ୍ୱରର ପ୍ରାଚୀନତମ ଲିଙ୍ଗ ଖ୍ରୀଷ୍ଟୀୟ ଚତୁର୍ଥ ଶତାବ୍ଦୀର ପୂର୍ବବର୍ତ୍ତୀ ନୁହନ୍ତି । କାଶୀର ମାହାତ୍ମ୍ୟକୁ ଖର୍ବ କରିବା ପାଇଁ ସେ ସମୟରେ ଭୁବନେଶ୍ୱରର ଶକ୍ତି ନ ଥିଲା । ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଶତାବ୍ଦୀଠାରୁ ଖ୍ରୀଷ୍ଟୀୟ ଏକାଦଶ ଶତାବ୍ଦୀ ପର୍ଯ୍ୟନ୍ତ କାଶୀରେ କ୍ରମେ କ୍ରମେ ଅସଂଖ୍ୟ ଶିବମନ୍ଦିର

ନିର୍ମିତ ହୋଇଥିଲା । କିନ୍ତୁ କାଶୀରୁ ବୌଦ୍ଧଧର୍ମ ଲୋପ ହୋଇ ପାରି ନ ଥିଲା । ଫାଇହାନ୍‌ଙ୍କ ସମୟରେ(୩୧୫ଖ୍ରୀଷ୍ଟାବ୍ଦ) କାଶୀର ଅଧିକାଂଶ ଲୋକ ବୌଦ୍ଧ ଥିଲେ ।

ହୁଏନ୍‌ସାନଙ୍କ ସମୟରେ କାଶୀର ଅଧିକାଂଶ ଲୋକ ହିନ୍ଦୁଥିଲେ ସୁଦ୍ଧା ବୌଦ୍ଧଧର୍ମାବଲମ୍ବୀଙ୍କ ସଂଖ୍ୟା ଅଳ୍ପ ନଥିଲା । ହର୍ଷବର୍ଦ୍ଧନଙ୍କ ସମୟରେ (୬୦୬-୬୮ ଖ୍ରୀ) କାଣ୍ୟକୁବ୍ଜ ଓ କାଶୀରେ ପୁନର୍ବାର ବୌଦ୍ଧଧର୍ମ ନିଜର ପ୍ରତିଷ୍ଠା ସ୍ଥାପନ କରିପାରିଥିଲା । ବିହାରର ପାଳରାଜା ମହୀପାଳଙ୍କ ଲିପିରୁ ଜଣାଯାଏ ଯେ ସେ କାଶୀରେ ଅସଂଖ୍ୟ ବୌଦ୍ଧ ଆଲୋକସ୍ତମ୍ଭ ଓ ବୌଦ୍ଧସ୍ତମ୍ଭ ଚିତ୍ରଘଣ୍ଟି ପ୍ରତିଷ୍ଠା କରିଥିଲେ । ସେହି ବଂଶର ବସନ୍ତପାଳ ଓ ଶ୍ରୀହରିପାଳଙ୍କ ଲିପିରୁ ଜଣାଯାଏ ଯେ, ସେମାନେ ବୌଦ୍ଧଧର୍ମର ଅଭ୍ୟୁତ୍ଥାନପାଇଁ ଅନେକ ବୌଦ୍ଧକୀର୍ତ୍ତି ନିର୍ମାଣ କରିଥିଲେ । ୧୦୨୦ ଖ୍ରୀଷ୍ଟାବ୍ଦରେ ଶୈବ ଓ ବୌଦ୍ଧଧର୍ମ ମଧ୍ୟରେ ଭୀଷଣ ଯୁଦ୍ଧ ଲାଗିଥିଲା । ସହସ୍ର ସହସ୍ର ବୌଦ୍ଧମାନଙ୍କର ପ୍ରତିରୋଧ ଯୋଗୁଁ କାଶୀରେ ଶୈବଧର୍ମ ସଂପୂର୍ଣ୍ଣରୂପେ ପ୍ରତିଷ୍ଠିତ ହୋଇ ପାରିଲାନାହିଁ । ତାହାପରେ ବୌଦ୍ଧଧର୍ମ କ୍ରମଶଃ ଲୋପହେବାକୁ ବସିଲା । କିନ୍ତୁ ଠିକ୍ ଏତିକିବେଳେ ଉତ୍ତରପଶ୍ଚିମ ସୀମାନ୍ତରେ ପ୍ରବଳ ପରାକ୍ରମୀ ମୁସଲମାନ ଗଜନୀ ରାଜ୍ୟ ସ୍ଥାପିତ ହେଲା । ୧୦୧୯-୧୦୨୦ରେ ମହମ୍ମଦଗଜନୀ କାଣ୍ୟକୁବ୍ଜ ଓ ମଥୁରା ଆକ୍ରମଣ କରିଥିଲେ । ସେ କାଶୀରେ ନିଜର ସର୍ବବିଧ୍ୱଂସିନୀ ଶକ୍ତି ପ୍ରୟୋଗ କରିନଥିଲେ ସତ୍ୟ, କିନ୍ତୁ କାଶୀ ନିକଟବର୍ତ୍ତୀ ମନ୍ଦିରମାନଙ୍କର ଶୋଚନୀୟ ଅବସ୍ଥା ଦେଖି ଭୋଳାନାଥ ଶିବଙ୍କର ଶତଶତ ଯୁଗର ମୋହନିଦ୍ରାଭଙ୍ଗ ହୋଇଗଲା । ଚିରତୁଷାରାଚ୍ଛନ୍ନ କୈଳାସବାସୀ ଦେବ ଯୋଗସାଧନା କରିବା ନିମିତ୍ତ ନିର୍ଜନସ୍ଥାନ ଅନୁସନ୍ଧାନ କରିଥିଲେ । ଉତ୍ତରଭାରତର ଶତଶତ ଲୋକ ଗଜନୀଙ୍କଦ୍ୱାରା ଅତ୍ୟାଚାରିତ ଓ ପ୍ରପୀଡ଼ିତ ହୋଇ ସ୍ୱାଧୀନ ମଗଧ, ବଙ୍ଗ ଓ ଉତ୍କଳକୁ ପଳାଇ ଆସିଥିଲେ ।

ଖ୍ରୀଷ୍ଟୀୟ ଏକାଦଶ ଶତାବ୍ଦୀବେଳକୁ ଭୁବନେଶ୍ୱରରେ ଶତଶତ ଶିବମନ୍ଦିର ନିର୍ମିତ ହୋଇଥିଲା । କେଶରୀ ରାଜତ୍ୱ ସମୟରେ ବୌଦ୍ଧଧର୍ମର ପ୍ରାଧାନ୍ୟ ଏକାବେଳକେ କ୍ଷୁଣ୍ଣ ହୋଇଥିଲା । ଭୁବନେଶ୍ୱର ସମଗ୍ର ଭାରତବର୍ଷରେ ପ୍ରଧାନ ଶିବକ୍ଷେତ୍ରବୋଲି ଖ୍ୟାତି ଲାଭ କରିଥିଲା । ସପ୍ତମ ଶତାବ୍ଦୀଠାରୁ ଦ୍ୱାଦଶ ଶତାବ୍ଦୀ ଶେଷ ପର୍ଯ୍ୟନ୍ତ ଭୁବନେଶ୍ୱର ପକ୍ଷେ ଗୌରବମୟ ଯୁଗ । ଠିକ୍ ଏତିକିବେଳେ କାଶୀକ୍ଷେତ୍ରରେ ହିନ୍ଦୁ ବିଶେଷତଃ ଶୈବମାନେ ବୌଦ୍ଧମାନଙ୍କଦ୍ୱାରା ବିଶେଷ ପ୍ରପୀଡ଼ିତ ହେଉଥିଲେ ।

ଭୁବନେଶ୍ୱର ଶୈବମାନଙ୍କ ପକ୍ଷେ କାଶୀଠାରୁ ଅଧିକ ଭୁକ୍ତିମୁକ୍ତିଶୁଭପ୍ରଦ ହୋଇପଡ଼ିଲା । ଭୁବନେଶ୍ୱରର ମାହାତ୍ମ୍ୟ କାଶୀର ମାହାତ୍ମ୍ୟକୁ ବଳିପଡ଼ିଲା । କେଶରୀ ବଂଶୀୟ ରାଜାମାନଙ୍କ ନିର୍ମିତ ଶତଶତ ଗଗନ-ଚୁମ୍ବୀ ଶିବମନ୍ଦିର ଓ ଉକ୍ତ ଯୁଗରେ ଖୋଦିତ ହୋଇଥିବା ଶତ ଶତ ନିର୍ମଳ ଶୀତଳ ସ୍ୱଚ୍ଛନ୍ଦ ତଡ଼ାଗନିକଟରେ କାଶୀର ମନ୍ଦିର ଓ ପୁଷ୍କରିଣୀମାନେ ସୌନ୍ଦର୍ଯ୍ୟ ଓ ବିଶାଳତାରେ ପରାଭବ ସ୍ୱୀକାର କରିଥିଲେ । ପବିତ୍ର ଶିବକ୍ଷେତ୍ର ପ୍ରବାହିନୀ ଶତଶତ କୁସୁମରେଣୁଗନ୍ଧ କଲ୍ଲୋଳିନୀ-ଗନ୍ଧବତୀନଦୀ ଦ୍ୱିତୀୟଗଙ୍ଗା ଆଖ୍ୟା ଧାରଣ କଲା । ଏପରି ସମୟରେ ଗ୍ରନ୍ଥରଚୟିତାମାନେ ଗର୍ବରେ ବଜ୍ରଗମ୍ଭୀର ସ୍ୱରରେ ଉତ୍କଳ ଗୌରବ ଘୋଷଣା କରୁଥିଲେ । ଉତ୍କଳର ପ୍ରତାପଶାଳୀ ନରପତିମାନେ ସମଗ୍ରଭାରତବର୍ଷର କ୍ଷେତ୍ରସକଳଙ୍କୁ ଏକତ୍ର କରିବାପାଇଁ ଯତ୍ନ କରୁଥିଲେ । ମହାନଦୀ ଉତ୍କଳର ଗଙ୍ଗା, ନୀଳାଚଳଧାମ ମର୍ତ୍ତ୍ୟର ବୈକୁଣ୍ଠ, ବିରଜା ଭାରତର ପ୍ରଧାନ କ୍ଷେତ୍ର ଓ ଭୁବନେଶ୍ୱର ବାରାଣାସୀଠାରୁ ଅଧିକ ଶୁଭଦାୟକ ବୋଲି ସ୍ଥିରକରି ଉତ୍କଳୀୟମାନେ ଆନନ୍ଦରେ ଆତ୍ମହରା ହୋଇ ସ୍ୱର୍ଗାଦପି ଗରୀୟସୀ ଜନନୀ ଜନ୍ମଭୂମିର ଗୌରବଗାନ କରିବାକୁ ଲାଗିଲେ । ଉତ୍କଳୀୟ ନରପତିମାନେ ଉତ୍କଳକୁ ସମଗ୍ରଭାରତର ପୁଣ୍ୟଭୂମି କରିବାପାଇଁ ଶତଶତ ମନ୍ଦିର-ବ୍ରାହ୍ମଣଶାସନ ପ୍ରତିଷ୍ଠା କରିଥିଲେ । ଅସଂଖ୍ୟ କୂପ ପୁଷ୍କରିଣୀ ଖୋଳାଇଥିଲେ । ଅନନ୍ତକାଳରୁ କୌଣସିସ୍ଥାନ ତୀର୍ଥ ବା ପବିତ୍ରଭୂମି ହୋଇନଥାଏ । ମନୁଷ୍ୟ ଅଦମ୍ୟ ଉତ୍ସାହ ଓ କାର୍ଯ୍ୟକୁଶଳତା ବଳରେ ଶୁଷ୍କ ଜ୍ଞାନହୀନ ପ୍ରଚଣ୍ଡ ରୌଦ୍ର ସନ୍ତପ୍ତ ମରୁଭୂମିରେ ନନ୍ଦନକାନନର ସୃଷ୍ଟିକରେ । ବ୍ୟାଘ୍ର ସିଂହାଦି ହିଂସ୍ରଜନ୍ତୁ ସେବିତ ତମସାଚ୍ଛନ୍ନ, ଅନନ୍ତକାଳରୁ ସୌରରଶ୍ମି ନ ପଡ଼ିଥିବା ଘୋର ଅରଣ୍ୟାନୀରେ ବିରାଟ ସୌଧ ଶୋଭିତ-ବୀଥି, ଗୋପୁର, ତଡ଼ାଗ, ପ୍ରାକାର, ଚତ୍ୱର ନିର୍ମିତ ହୋଇ ତାହା ବହୁଜନାକୀର୍ଣ୍ଣ ସମୃଦ୍ଧିଶାଳୀ ନଗରୀରେ ପରିଣତ ହୁଏ । ପୁଣି ସେହି ମାନବର ସମାଗମ ଅଭାବରୁ ଜଗତଶ୍ରେଷ୍ଠ ନଗରୀମଧ କାଳକ୍ରମେ ଅତଳ ଅନନ୍ତ ସାଗର ବା ବାଲୁକାମଧରେ ବା ପ୍ରଳୟଙ୍କରୀ ନଦୀଗର୍ଭରେ ବା ଆଗ୍ନେୟଗିରିର ଲାଭା ସ୍ରୋତମଧରେ କାଳର ସର୍ବବିଧ୍ୱଂସିନୀ ଶକ୍ତିବଳରେ ଧ୍ୱସ୍ତବିଧ୍ୱସ୍ତ ହୋଇ ଲୋପ ପାଇଯାଏ । ସେହିପରି ଯେଉଁ ଉତ୍କଳ ପ୍ରଦେଶ ୧୦୦୦ ବା ୧୫୦୦ ବର୍ଷ ପୂର୍ବେ ଦୁର୍ଭେଦ୍ୟ ଅରଣ୍ୟାନୀ ସମାବୃତ ଥିଲା, ତାହା ୧୦୦୦ବର୍ଷ ମଧରେ ନନ୍ଦନକାନନ ପରି ହସି ଉଠିଲା ।

× × ×

"ନ ଚୋତ୍କଳସମୋ ଦେଶୋ ନ ଦେବୀ ବିରଜାସମା ।

× × ×

ନଚୈକାମ୍ରକଂ ସମଂ କ୍ଷେତ୍ରଂ ତ୍ରିଷୁ ଲୋକେଷୁ ବିଦ୍ୟତେ ।

*(ସ୍ୱର୍ଣ୍ଣାଦ୍ରିମହୋଦୟଃ, ୧.୧୯-୨୦)*

ଆର୍ଯ୍ୟଋଷି ଗାଇଉଠିଲେ-

× × ×

"ଏଷ ବିଶ୍ୱେଶ୍ୱରେଦେବ ଏଷୈବ ମଣିକର୍ଣ୍ଣିକା,

× × ×

କଳାବନ୍ତର୍ହିତା କାଶୀ ମୁକ୍ତିରେବ ନ ସଂଶୟଃ ।

*(ସ୍ୱର୍ଣ୍ଣାଦ୍ରି ମହୋଦୟଃ, ୨.୨୬/୨୭)*

ଏହା ପୁରାଣକାରଙ୍କର କପୋଳକଳ୍ପିତ ନୁହେଁ । ବାସ୍ତବିକ ଭୁବନେଶ୍ୱର ସେ ସମୟରେ ଦ୍ୱିତୀୟ କାଶୀରୂପେ ଖ୍ୟାତିଲାଭ କରିଥିଲା । ବର୍ତ୍ତମାନ ପୁରାଣମାନଙ୍କରୁ ଶିବଙ୍କର ଏକାମ୍ର ଆଗମନର କାରଣ ନିର୍ଣ୍ଣୟ କରିବା । ପୁରାଣମାନଙ୍କୁ ନବୀନ ପାଶ୍ଚାତ୍ୟଶିକ୍ଷା ଗର୍ବିତ-ଶିକ୍ଷିତମାନେ କାଳ୍ପନିକ ବୋଲି ଆକ୍ଷେପ କରନ୍ତି । କିନ୍ତୁ ପୁରାଣଗୁଡ଼ିକ ପ୍ରକୃତ ସତ୍ୟାଶ୍ରିତ । ସ୍ୱର୍ଣ୍ଣଖଣିରୁ ସ୍ୱର୍ଣ୍ଣ ଆହରଣ କରିବା ଯେପରି କଷ୍ଟସାଧ, ପୁରାଣମାନଙ୍କର ଗୂଢ଼ତମରହସ୍ୟ ଭେଦକରି ତଥ୍ୟ ଉଦ୍ଧାର କରିବା ତତୋଽଧିକ କଷ୍ଟକର । ପୂର୍ବରୁ କୁହାଯାଇଛି କାଶୀକ୍ଷେତ୍ରରେ ବୌଦ୍ଧ(ନାସ୍ତିକ)ମାନଙ୍କ ସହିତ ସର୍ବଦା ବାଦ ବିବାଦ ଯୋଗୁ କାଶୀକ୍ଷେତ୍ରରେ ସମ୍ପୂର୍ଣ୍ଣରୂପେ ଶୈବଧର୍ମ ପ୍ରତିଷ୍ଠିତ ହୋଇପାରିନଥିଲା । ପୁରାଣକାରଗଣ ତାହାକୁ ଅନ୍ୟ ଆକାରରେ ପ୍ରକାଶ କରିଛନ୍ତି । ସେମାନେ ଶୈବଧର୍ମକୁ ଶିବରୂପେ କଳ୍ପନା କରିଛନ୍ତି । ଶୈବଧର୍ମର ଅବନତିର କାରଣଗୁଡ଼ିକ ଶିବଙ୍କ ମୁଖରୁ କଥା ପ୍ରସଙ୍ଗରେ ବାହାର କରିଛନ୍ତି । ଶିବ କାଶୀ କ୍ଷେତ୍ରରେ ବିଶେଷ ଅସନ୍ତୁଷ୍ଟ ହୋଇ କାଶୀ ତ୍ୟାଗ କରିବାପାଇଁ ଦୃଢ଼ସଂକଳ୍ପ ହେଲେ । ପରିଶେଷରେ ଏକାମ୍ରକାନନରେ ଆଶ୍ରୟ ନେଲେ ଅର୍ଥାତ୍ କାଶୀ ଅପେକ୍ଷା ସେକାଳରେ ଭୁବନେଶ୍ୱର ସମ୍ପୂର୍ଣ୍ଣ ଶୈବକ୍ଷେତ୍ର ରୂପେ ଆଦୃତ ହେଉଥିଲା ଓ ସେଠାରେ ବୌଦ୍ଧ ଆକ୍ରମଣର ଭୟ ନଥିଲା । ତେଣୁ ଶିବ ସେହି ନିର୍ଜନ ଏକାମ୍ରକାନନରେ ପରମାନନ୍ଦରେ କାଳଯାପନ କଲେ । ବର୍ତ୍ତମାନ ପାଠକମାନଙ୍କର କୌତୂହଳ ନିବୃତ୍ତି କରିବାପାଇଁ ପୁରାଣମାନଙ୍କରୁ କେତେକାଂଶ ଉଦ୍ଧାର କରାଯାଇପାରେ ।

"ବାରାଣସୀଂ ପରିତ୍ୟଜ୍ୟ ଜନାକୀର୍ଣ୍ଣାଂ ମହେଶ୍ୱରଃ ।
ପ୍ରାର୍ଥୟିତ୍ୱା ହରିଂ ପୁଣ୍ୟମେକାମ୍ରବନମାସ୍ଥିତଃ ॥୬॥"

*(କପିଳ ସଂହିତା, ୧ ୧-୬)*

କାହିଁକି ଶିବ ବାରାଣସୀ ପରିତ୍ୟାଗ କରିଥିଲେ ତାହାର କାରଣ ଉକ୍ତ ପୁରାଣରେ ପ୍ରଦତ୍ତ ।

**ଶିବ ଉବାଚ**

"ଅସ୍ୟାଂ ପୁର୍ଯ୍ୟାଂ ନ ତିଷ୍ଠାମସ୍ତ୍ୱଧୁନାସୌ ବିନଶ୍ୟତି ।
ବଭୂବ ଚ ଜନାକୀର୍ଣ୍ଣା ତପୋବିଘ୍ନକରୀ ମୁନେ

ଯତ୍ସ୍ଥାନଂ ଚ ଜନାକୀର୍ଣ୍ଣଂ ତତ୍ର ସ୍ଥାତୁଂ ନ ଯୁଜ୍ୟତେ ।
ଉପଦ୍ରବୋ ଭବେତ୍ତତ୍ର ନାସ୍ତିକୈର୍ଜ୍ଞାନଦୁର୍ବଳୈଃ
ନାସ୍ତିକା ଯତ୍ର ତିଷ୍ଠନ୍ତି ତତ୍ର ଧର୍ମୋ ନ ବିଦ୍ୟତେ ।
ଅଧର୍ମାଚ୍ଚ ଭବେଲ୍ଲୁପ୍ତୋ ହବିର୍ଭାଗୋ ମୁନୀଶ୍ୱର
x x x x
ଅଧୁନାତ୍ର ମୁନିଶ୍ରେଷ୍ଠ ସ୍ଥାତୁଂ ନୋସହତେ ମନଃ ।
ରହସ୍ୟଂ ପରମଂ ସ୍ଥାନଂ କୁତ୍ରାସ୍ତେ ମାଂ ବଦାଶୁ ଚ ॥"

*(କପିଳ ସଂହିତା, ୧ ୧/୯-୧ ୧, ୧୩)*

ଏହି ଚାରୋଟି ଶ୍ଳୋକରୁ ସ୍ପଷ୍ଟ ଜଣାଯାଏ -"କାଶୀନଗରୀରେ ବୌଦ୍ଧମାନଙ୍କ ପ୍ରଭାବ ଫଳରେ ଧୀରେ ଧୀରେ ଏହା ବିଶେଷ ଜନାକୀର୍ଣ୍ଣ ହେବା ସଙ୍ଗେ ସଙ୍ଗେ ବିଭିନ୍ନ ଧର୍ମସଂପ୍ରଦାୟର ଲୋକ ଏଠାରେ ବାସ କରୁଥିବାରୁ ତପସ୍ୟାରେ ବିଘ୍ନ ଘଟିବ । ଜ୍ଞାନଦୁର୍ବଳ ନାସ୍ତିକମାନେ (ବୌଦ୍ଧମାନେ) ଏଠାରେ ବିଶେଷ ଉପଦ୍ରବ କରିବେ । ତେଣୁ ନାସ୍ତିକପୁରୀରେ ବାସକରିବା ଆଦୌ ଉଚିତ ନୁହେଁ ।" ଅଧର୍ମ ପ୍ରବଳ ହେବାରୁ ଯଜ୍ଞ ଅନୁଷ୍ଠିତ ହୋଇପାରୁନଥିଲା । ତେଣୁ ଦେବତାମାନେ ହବିର୍ଭାଗ ପାଇ ପାରୁନଥିଲେ । ଖ୍ରୀଷ୍ଟୀୟ ୭ମ ଶତାବ୍ଦୀ ବା ତାହାର କିଛିଟ୍ ପୂର୍ବରୁ- ୧୧ଶ ଶତାବ୍ଦୀ ପର୍ଯ୍ୟନ୍ତ କାଶୀରେ ବୌଦ୍ଧଧର୍ମ ଓ ହିନ୍ଦୁଧର୍ମ ମଧ୍ୟରେ ତୁମୁଳ ସଂଗ୍ରାମ ଚାଲିଥିଲା । କିନ୍ତୁ ଏକାଦଶ ଶତାବ୍ଦୀ ବେଳକୁ ଭୁବନେଶ୍ୱର ନିକଟରୁ ବୌଦ୍ଧଧର୍ମ ଲୁପ୍ତପ୍ରାୟ ହୋଇଥିଲା । ତେଣୁ ଶିବଙ୍କ ପକ୍ଷେ ଭୁବନେଶ୍ୱରର ପ୍ରଶଂସାକରିବା ସମୀଚୀନ । ବର୍ତ୍ତମାନ ପାଠକମାନେ ଆଶ୍ଚର୍ଯ୍ୟହେବେ ଯେ, ପୁରାଣମାନଙ୍କ ସହିତ ଇତିହାସର କିପରି ଅଦ୍ଭୁତ ସାମଞ୍ଜସ୍ୟ ବିଦ୍ୟମାନ । କେବଳ ବୌଦ୍ଧଧର୍ମର ଉଚ୍ଛେଦସାଧନ ଓ ଶୈବଧର୍ମର ଏକାଧିପତ୍ୟଯୋଗୁ ଭୁବନେଶ୍ୱର ଦ୍ୱାଦଶ

ଶତାବ୍ଦୀବେଳକୁ ଗୁପ୍ତକାଶୀ ବା ଦ୍ୱିତୀୟ କାଶୀବୋଲି ସର୍ବତ୍ର ବିଶ୍ରୁତ ହୋଇଥିଲା । 'କପିଳ ସଂହିତା' ତ୍ରୟୋଦଶ ଶତାବ୍ଦୀର ଗ୍ରନ୍ଥ । ତେଣୁ ଗ୍ରନ୍ଥକାରଙ୍କ ପକ୍ଷେ ଏପରି ବର୍ଣ୍ଣନା ଦେବା ସମ୍ପୂର୍ଣ୍ଣ ଯୁକ୍ତିଯୁକ୍ତ ।

ଶିବପୁରାଣ ଓ ଉତ୍କଳଖଣ୍ଡରେ ଏକାମ୍ରକାନନକୁ ଶିବାଗମନ ସମ୍ବନ୍ଧରେ ଏହିପରି ଗୋଟିଏ ଗୋଟିଏ କାହାଣୀ ଦିଆହୋଇଛି । କିନ୍ତୁ ସେଗୁଡ଼ିକ ଲେଖିବା ଅନାବଶ୍ୟକ, କାରଣ ଏଗୁଡ଼ିକ କପିଳସଂହିତାପ୍ରଦତ୍ତ ବର୍ଣ୍ଣନାର ରୂପାନ୍ତର ମାତ୍ର ।

ପରବର୍ତ୍ତୀକାଳରେ ରଚିତ 'ଏକାମ୍ରପୁରାଣ' ଓ 'ସ୍ୱର୍ଣ୍ଣାଦ୍ରିମହୋଦୟ' ପ୍ରଭୃତି ଗ୍ରନ୍ଥରେ ଶିବଙ୍କର ଏକାମ୍ରକାନନକୁ ଆଗମନର କୌଣସି କାରଣ ଦିଆହୋଇନାହିଁ । 'ଏକାମ୍ର ପୁରାଣ'ରେ ବର୍ଣ୍ଣିତ ଦେବାସୁରଯୁଦ୍ଧ ସଂବାଦରୁ ଏତିକି ମାତ୍ର ଜଣାଯାଏ ଯେ ଭୁବନେଶ୍ୱରରେ ବୌଦ୍ଧଧର୍ମ ଲୋପପଥରେ ଗତିକରୁଥିଲା ।

'ନ ନାସ୍ତିକା ଭୟତ୍ରସ୍ତାଃ କିଲ୍‌ବିଷା ନ ପରଦ୍ରୁହଃ' (ଏକାମ୍ରପୁରାଣ ୨୫/୪୯

କାଶୀଖଣ୍ଡରେ ପ୍ରଦତ୍ତ ବର୍ଣ୍ଣନା ସହିତ କପିଳସଂହିତା ବର୍ଣ୍ଣନାରେ ଅନେକ ସାମଞ୍ଜସ୍ୟ ଅଛି । ଭୁବନେଶ୍ୱରକୁ ଗୁପ୍ତକାଶୀ କହିବାର ମଧ ଆହୁରି ଗୋଟିଏ କାରଣ ଅଛି । ଭୁବନେଶ୍ୱର ଶିବମନ୍ଦିରଗୁଡ଼ିକ କାଶୀପୀଠର ମନ୍ଦିରମାନଙ୍କର ଅନୁକରଣରେ ନିର୍ମିତ ହୋଇଥିଲା । କାଶୀକ୍ଷେତ୍ରର ଲିଙ୍ଗମାନଙ୍କର ନାମାନୁସାରେ ଭୁବନେଶ୍ୱରର ଅଧିକାଂଶ ଲିଙ୍ଗଙ୍କର ନାମକରଣ ହୋଇଥିଲା । କାଶୀର ପ୍ରଧାନ ଶିବଲିଙ୍ଗଙ୍କର ନାମ - ବିଶ୍ୱେଶ୍ୱର, ଅବିମୁକ୍ତେଶ୍ୱର, ସିଦ୍ଧେଶ୍ୱର, ବ୍ରହ୍ମେଶ୍ୱର, ଦିବୋଦାସେଶ୍ୱରଃ, ଗୋକର୍ଣ୍ଣେଶ୍ୱର, ମୁକ୍ତେଶ୍ୱର, ଗୌରୀଶଙ୍କର, (ଭବାନୀଶଙ୍କର) କପିଳେଶ୍ୱର, କେଦାରେଶ୍ୱର, କୃତ୍ତିବାସେଶ୍ୱର, ବୈଦ୍ୟନାଥ, ସୋମେଶ୍ୱର, ନକ୍ଷତ୍ରେଶ୍ୱର, ଦୁର୍ବାରେଶ୍ୱର, ନର୍ମଦେଶ୍ୱର, ମଣିକର୍ଣ୍ଣିକେଶ୍ୱର, ଓଁକାରେଶ୍ୱର ମାର୍କଣ୍ଡେଶ୍ୱର ଏବଂ ଦକ୍ଷେଶ୍ୱର ଭୁବନେଶ୍ୱରରେ ପ୍ରଥମ ତେରଗୋଟି ଶିବଙ୍କର ମନ୍ଦିର ଦେଖାଯାଏ । ଉତ୍କଳୀୟ ରାଜାମାନେ କାଶୀର ଗୌରବ ଖର୍ବ କରିବାପାଇଁ କାଶୀଲିଙ୍ଗ ମାନଙ୍କର ନାମାନୁସାରେ ଅନେକ ବିଶାଳ ଅପୂର୍ବ କାରୁକାର୍ଯ୍ୟ ଶୋଭିତ ଶିବମନ୍ଦିର ନିର୍ମାଣ କରିଥିଲେ । କାଶୀରେ ଦେବସଭାନାମକ ଗୋଟିଏ ସ୍ଥାନରେ କ୍ଷୁଦ୍ର କ୍ଷୁଦ୍ରଲିଙ୍ଗମାନଙ୍କର ସମାବେଶ ହୋଇଅଛି । ଭୁବନେଶ୍ୱର ନିକଟବର୍ତ୍ତୀ ଖଣ୍ଡଗିରିରେ ଠିକ୍ ସେହିପରି ଗୋଟିଏ ସ୍ଥାନରେ ଅନେକଗୁଡ଼ିଏ କ୍ଷୁଦ୍ର ଶିବମନ୍ଦିର ନିର୍ମିତ ହୋଇଛି । ତାହାକୁ ଲୋକମାନେ ଦେବସଭା ବୋଲି କହନ୍ତି । କାଶୀର

ଆୟତନ ପଞ୍ଚକ୍ରୋଶ । ଭୁବନେଶ୍ୱର, ପଞ୍ଚକ୍ରୋଶ ଆୟତନ । ଗଙ୍ଗାକୂଳରେ କାଶୀନଗରୀରେ ଅନେକ ଘାଟଅଛି । ସେଥିମଧ୍ୟରେ ମଣିକର୍ଣ୍ଣିକା ସର୍ବପ୍ରଧାନ ଓ ପ୍ରାଚୀନତମ । ଭୁବନେଶ୍ୱରର ବିନ୍ଦୁସାଗର ନିକଟରେ ମଣିକର୍ଣ୍ଣିକା ନାମକ ଘାଟ ନିର୍ମିତ ହୋଇଅଛି । କାଶୀ ମଣିକର୍ଣ୍ଣିକା ଘାଟ ନିକଟରେ ଅନେକ ଶିବଲିଙ୍ଗ ବର୍ଷଯାକ ଜଳରେ ନିମଗ୍ନ ଥାଆନ୍ତି । ଏଠାରେ ସେହିପରି ବ୍ରହ୍ମାଙ୍କ ନିକଟରେ ତିନିଚାରୋଟି ଶିବଲିଙ୍ଗ ମନ୍ଦିର ସର୍ବଦା ଜଳମଗ୍ନ ହୋଇଥାଏ । କାଶୀର କପିଳତୀର୍ଥ ଓ ଦକ୍ଷିଣାମୂର୍ତ୍ତିଙ୍କ ପରି ଭୁବନେଶ୍ୱରର କପିଳକୁଣ୍ଡ ଓ ଦକ୍ଷିଣାମୂର୍ତ୍ତି ମଧ୍ୟ ବିଦ୍ୟମାନ । ଏହିପରି କାଶୀର ଅସଂଖ୍ୟଲିଙ୍ଗ, ତୀର୍ଥ ଓ ମଠ ସହିତ ଭୁବନେଶ୍ୱରର ଲିଙ୍ଗ, ତୀର୍ଥ ଓ ମଠମାନଙ୍କର ତୁଳନାତ୍ମକ ବିବରଣ ଦେବାପାଇଁ ଏଠାରେ ସ୍ଥାନର ଅଭାବ ।

କାଶୀର ଲାଟ ଭୈରବଲିଙ୍ଗ ପୂର୍ବେ ଗୋଟିଏ ଲାଟ ବା ସ୍ତମ୍ଭ ଥିଲା । ଏହାର ଉଚ୍ଚତା ଥିଲା ପ୍ରାୟ ୪୦ଫୁଟ । କୌଣସି ହିନ୍ଦୁ ରାଜାଙ୍କଦ୍ୱାରା ଏହା ବୌଦ୍ଧପୀଠ ସାରନାଥରୁ ଅଣାଯାଇ କାଶୀରେ ଲିଙ୍ଗରୂପେ ପ୍ରତିଷ୍ଠିତ ହୋଇଥିଲା । ଭୁବନେଶ୍ୱରର ଭାସ୍କରେଶ୍ୱର ଶିବଲିଙ୍ଗ ଯେ, ଗୋଟିଏ ଅଶୋକସ୍ତମ୍ଭର ଭଗ୍ନାବଶେଷ ଏଥିରେ ସନ୍ଦେହ କରିବାର କୌଣସି କାରଣ ନାହିଁ । ଏଠାରେ ତିନୋଟି ବୌଦ୍ଧଲିଙ୍ଗ ମଧ୍ୟ ମିଳିଥିଲା । ହିନ୍ଦୁ ନରପତିମାନେ କାଶୀରେ ଥିବା ଅସଂଖ୍ୟ ବୌଦ୍ଧକୀର୍ତ୍ତି ନଷ୍ଟକରି ସେମାନଙ୍କର ଭଗ୍ନାବଶେଷ ଉପରେ ହିନ୍ଦୁମନ୍ଦିରମାନ ନିର୍ମାଣ କରିଥିଲେ । ଭୁବନେଶ୍ୱରରେ ମଧ୍ୟ ସେହିପରି ହୋଇଥିବାର ପ୍ରମାଣ ପରବର୍ତ୍ତୀ ଅଧ୍ୟାୟରେ ପ୍ରଦତ୍ତ ହେବ । ଗଙ୍ଗା ନଦୀ କାଶୀତଳ ବାହିନୀ, ଆର୍ଯ୍ୟାବର୍ତ୍ତପାବିନୀ, ହିମାଳୟନିସ୍ୟନ୍ଦିନୀ ଜଗତବନ୍ଦିତା ରୂପେ ପରିକଳ୍ପିତା ଥିଲା । ଉତ୍କଳୀୟମାନଙ୍କଦ୍ୱାରା ଏକାମ୍ରକାନନ ଉପାନ୍ତ ପ୍ରବାହିନୀ, ସୁମଧୁର ଗନ୍ଧବାହିନୀ, କ୍ଷୁଦ୍ର ପାର୍ବତୀୟନଦୀ, କୁଳୁକୁଳୁ ନିନାଦିନୀ ଗନ୍ଧବତୀନଦୀ ଗଙ୍ଗାନାମରେ ଅଭିହିତା । 'କପିଳସଂହିତା'ର ସପ୍ତଦଶ ଅଧ୍ୟାୟର ବର୍ଣ୍ଣନାରୁ ଜଣାଯାଏ ଯେ ଗଙ୍ଗା ଭୁବନେଶ୍ୱରରେ ଗନ୍ଧବତୀ ନାମରେ ପ୍ରବାହିତ ହୋଇଥିଲେ । "ଏକ ସମୟରେ ହିମାଳୟ ଏକାମ୍ରକ୍ଷେତ୍ରକୁ ଆସିଥିଲେ । ସେଠାରେ ଶିବାର୍ଚ୍ଚନ କରି ଅପାର ଆନନ୍ଦ ଅନୁଭବ କରିଥିଲେ ଓ ଶିବଲିଙ୍ଗର ତୁଷ୍ଟିବିଧାନ କରିବା ନିମିତ୍ତ ପ୍ରବାହିତ ହେବାପାଇଁ ଗଙ୍ଗାକୁ ଆଦେଶ ଦେଲେ ।"

କ୍ଷେତ୍ରେଽସ୍ମିନ୍ଧୁନା ଗଙ୍ଗେ କୀର୍ତ୍ତିଃ ପରମଶାଶ୍ୱତୀ ।
ମମ ସ୍ଥାସ୍ୟତି ପାପଘ୍ନେ ତ୍ୱମତ୍ର ସ୍ଥିତିମାଚର ॥*(କପିଳ ସଂହିତା, ୧୭.୯)*

ଗଙ୍ଗା ତାଙ୍କର ପ୍ରାର୍ଥନା ରକ୍ଷାକରିଥିଲେ । ପୂର୍ବରୁ ଗଙ୍ଗାଙ୍କର ନଅଟି ରୂପଥିଲା

ବର୍ତ୍ତମାନ ସେ ଦଶମରୂପ ଧାରଣ କଲେ । ଗଙ୍ଗା ହିମାଳୟଙ୍କୁ ଏକାମ୍ରକାନନରେ ତାଙ୍କର କି ନାମ ହେବ ପଚାରିବାରୁ ହିମାଳୟ କହିଲେ- ତୁମ୍ଭେ ଏଠାରେ 'ଗନ୍ଧବତୀ' ନାମରେ ପ୍ରବାହିତ ହେବ । କାରଣ-

"କାନନୋଦ୍‌ଭବପୁଷ୍ପାଣାଂ କେତକୀନାଂ ଲତାନ୍ତରେ ।
କେଶରାଣାଂଚ ପଦ୍ମାନାଂ ଚମ୍ପକାନାଂ ବିଶେଷତଃ ।
ଫଳାନାଂ ବାୟୁସଂସର୍ଗାଦ୍ ଗନ୍ଧଲାଭାନ୍ମହୀତଳେ ।
ନାମ୍ନା ଗନ୍ଧବତୀ ଗଙ୍ଗେ ଭବୈକାମ୍ରବନେ ଶୁଭେ ।

*(କପିଳ ସଂହିତା, ୧୭/୧୯-୨୦)*

ଏହି ନଦୀକୂଳରେ ଅସଂଖ୍ୟ ପୁଷ୍ପଉଦ୍ୟାନ ଥିଲା । ଉଦ୍ୟାନଜାତ ପୁଷ୍ପମାନଙ୍କର ବିଶେଷତଃ ଚମ୍ପକ, ପଦ୍ମକେଶର, କେତକୀ ରେଣୁପାତଦ୍ୱାରା ଓ ପରିମଳମୟ ଅନିଳ ସଂସର୍ଗ ଦ୍ୱାରା ହିଲ୍ଲୋଳିତ ଓ ସୁଗନ୍ଧଯୁକ୍ତ ହୋଇଥିବାରୁ ଏହା ଗନ୍ଧବତୀ ନାମରେ ଖ୍ୟାତି ଲାଭ କରିଥିଲା । କାହିଁ ତ୍ରିଭୁବନତାରିଣୀ, ଶଙ୍କରମୌଳି, ତରଳତରଙ୍ଗିଣୀ କଲ୍ଲୋଳିନୀ କୂଳେଶ୍ୱରୀ ସହସ୍ରଯୋଜନବ୍ୟାପିନୀଗଙ୍ଗା, କାହିଁ କ୍ଷୁଦ୍ରଗନ୍ଧବତୀନଦୀ । ଏମାନଙ୍କ ମଧ୍ୟରେ ଆକାଶ ପାତାଳ ପ୍ରଭେଦ । କିନ୍ତୁ ଏକାମ୍ରକାନନ ନିକଟରେ କୌଣସି ବିଶାଳ ନଦୀ ନ ଥିବାରୁ ବାଧହୋଇ ପ୍ରାଚୀନ ଗ୍ରନ୍ଥକାରମାନେ ଗନ୍ଧବତୀକୁ ଗଙ୍ଗାର ଅବତାର ବୋଲି ଗ୍ରହଣ କରିଥିଲେ ।

ସୃଷ୍ଟିର ଆଦ୍ୟକାଳରୁ କୌଣସି ନଦୀର ମାହାତ୍ମ୍ୟ ନଥାଏ । କବିମାନଙ୍କର କଳ୍ପନା କ୍ଷୁଦ୍ରକୁ ମହତ୍, ଅପବିତ୍ରକୁ ପବିତ୍ରରୂପେ ଚିତ୍ରିତ କରିଥାଏ । ଉଜ୍ଜୟିନୀ ନିକଟବର୍ତ୍ତୀ ସିପ୍ରାନଦୀ କ୍ଷୁଦ୍ରହେଲେ ମଧ ମହାକବି କାଳିଦାସଙ୍କର କବିତାଶ୍ରୟ ଲାଭ କରି ଜଗତବିଖ୍ୟାତ ହୋଇଛି । ପ୍ରାଚୀନକାଳରେ ଲିଙ୍ଗକୋଟି ସମାବୃତ ଭୁବନେଶ୍ୱରକ୍ଷେତ୍ରର ନିକଟବର୍ତ୍ତୀ ହୋଇଥିବାରୁ କବିମାନେ ତାକୁ ଗଙ୍ଗାବୋଲି କଳ୍ପନା କରିଥିବା ସ୍ୱତଃସିଦ୍ଧ । ଏହିପରି ନାମକରଣରୁ ଭୁବନେଶ୍ୱର ପୂର୍ବେ ଗୁପ୍ତକାଶୀ ବୋଲି ଖ୍ୟାତି ଲାଭ କରିଥିଲା । ବର୍ତ୍ତମାନ ଭୁବନେଶ୍ୱରର ସେ ଗୌରବ ନାହିଁ ଶତଶତ ମନ୍ଦିର ଭୂଗର୍ଭରେ ଲୁକ୍କାୟିତ, ଅଧିକାଂଶ ଭଗ୍ନଦଶାପନ୍ନ । ଆହୁରି କେତେକ ମନ୍ଦିର ଭବିଷ୍ୟତରେ ଚିରକାଳ ନଷ୍ଟ ହୋଇଯିବ । ଭୁବନେଶ୍ୱରର ଶତଶତ ପୁଷ୍କରିଣୀ ବର୍ତ୍ତମାନ ମୃତ୍ତିକାଛାଦିତ ଓ ଅଧିକାଂଶ ପଙ୍କିଳଜଳପୂର୍ଣ୍ଣ । ଭୁବନେଶ୍ୱରର ପୂର୍ବ ଗୌରବ ଅତୀତର ଅନ୍ଧକାରରେ ନିହିତ । ଭୁବନେଶ୍ୱର ବର୍ତ୍ତମାନ ଶ୍ମଶାନର ବିଭୀଷିକାମୟ ରୂପ ଧାରଣକରିଛି । ଗୁପ୍ତ ବାରଣସୀ ବୋଲି ଗର୍ବ କରିବା ପାଇଁ

ତାହାର ଆଶାନୁରୂପ ଧନ, ଜନ, ଶିକ୍ଷା, ସମୃଦ୍ଧି ନାହିଁ । କେବଳ ପ୍ରାଚୀନ ଉତ୍ତୁଙ୍ଗ ଦେବାଳୟମାନ ସେହି ବିରାଟ ନଗରୀର ମୂକସାକ୍ଷୀରୂପେ ବିଦ୍ୟମାନ । ପାଠକମାନେ ଭୁବନେଶ୍ୱରର ପ୍ରାଚୀନ ଅବସ୍ଥା ସହିତ ଆଧୁନିକ ଅବସ୍ଥାର ତୁଳନାକଲେ ଦୁଃଖରେ କେବଳ ଅଶ୍ରୁବିମୋଚନ କରିବେ ।

## (ଖ) ଐତିହାସିକ ବିବରଣ

ଗୋଟିଏ ସ୍ଥାନ ନାନାକାରଣରୁ ଉନ୍ନତିର ଚରମସୀମାରେ ଉପନୀତ ହେଲେ ସାଧାରଣତଃ ତାହାର ମାହାତ୍ମ୍ୟ ଲୋକମୁଖ ଓ ଗ୍ରନ୍ଥାଦିଦ୍ୱାରା ପ୍ରଚାରିତ ହୋଇଥାଏ । ଗ୍ରନ୍ଥସନ୍ନିବିଷ୍ଟ ମାହାତ୍ମ୍ୟ ଅପେକ୍ଷା ଲୋକପ୍ରଚଳିତ କିମ୍ବଦନ୍ତୀ ବହୁଯୁଗ ପର୍ଯ୍ୟନ୍ତ ବଂଶ ପରଂପରାକ୍ରମେ ଚଳି ଆସୁଥାଏ । କାଳଚକ୍ର ଆବର୍ତ୍ତନରେ ସ୍ଥାନଟି ଧ୍ୱଂସ ବା ପରିବର୍ତ୍ତିତ ହୋଇଗଲେ ମଧ କିମ୍ବଦନ୍ତୀ ଓ ଗ୍ରନ୍ଥସକଳ ତାହାର କୀର୍ତ୍ତି ସଂଭାର ଘୋଷଣା କରୁଥାନ୍ତି । ଅଧଃପତିତ ଦେଶର ଲୋକେ ନିଜଦେଶର ପ୍ରାଚୀନ ଗୌରବମୟ କାହାଣୀସବୁ ଶୁଣି ମନରେ ଅପାର ଗର୍ବ ଓ ଅସୀମ ଆନନ୍ଦ ଉପଭୋଗ କରିଥାନ୍ତି । ଅମରାବତୀବିନିନ୍ଦୀ ଭୁବନେଶ୍ୱରର ମାହାତ୍ମ୍ୟ ଶୁଣି ପାଠକମାନେ ବର୍ତ୍ତମାନ ନିଜ ଶ୍ରୁତିକୁ ବିଶ୍ୱାସ କରି ନ ପାରନ୍ତି । କିନ୍ତୁ ସମୟଥିଲା, ଯେତେବେଳେ ଭୁବନେଶ୍ୱର ଧନଜନ ଗୋପଲକ୍ଷ୍ମୀରେ ପରିପୂର୍ଣ୍ଣଥିଲା । ଅସଂଖ୍ୟ ମନ୍ଦିର ଓ ହର୍ମ୍ୟ, ମଠ, ଗୁମ୍ଫା, ସ୍ତୂପ, ବିହାର, ସୈନ୍ୟନିବାସ ଏହାର ଶୋଭାବର୍ଦ୍ଧନ କରୁଥିଲେ । ଆଜି ସେଗୁଡ଼ିକ ସ୍ୱପ୍ନ ବା କଳ୍ପନାର ପଦାର୍ଥ । ଭୁବନେଶ୍ୱରର ମାହାତ୍ମ୍ୟ ବ୍ରହ୍ମପୁରାଣ, ଲିଙ୍ଗପୁରାଣ, ଶିବପୁରାଣ ତଥା ପ୍ରାଚୀନ ଗ୍ରନ୍ଥମାନଙ୍କରେ ବିସ୍ତୃତ ଭାବରେ ବର୍ଣ୍ଣିତ ହୋଇଅଛି । ସେଗୁଡ଼ିକ ଲେଖିବା ପାଇଁ ସ୍ଥାନର ଅଭାବ । ତେଣୁ ସଂକ୍ଷେପରେ କେତେକ ବିଷୟ ବର୍ଣ୍ଣିତ ହେଲା । ଏଠାରେ ପୂର୍ବେ ଏକୋନକୋଟି ମନ୍ଦିର ବିଦ୍ୟମାନ ଥିଲା । ଉଲ୍ଲେଖ ଅଛି -

"× × × ×
ଉତ୍‌ଫୁଲ୍ଲନୟନାଃ ସର୍ବେ ମହେନ୍ଦ୍ରାଦିଦିବୌକସଃ ॥୨॥
ବିଚରନ୍ତି ମହାକ୍ଷେତ୍ରେ ଏକୋନକୋଟିରୂପଧୃକ୍
× × × × ॥୩॥
× × × ×
ଆମ୍ରଚ୍ଛାୟାତଳେ ଚାଥ ଶଙ୍କରପ୍ରୀତିଦେଽମ୍ବିକେ
× × × × ॥୫॥"

(ଏକାମ୍ର ପୁରାଣ, ୨୪)

ଏକାମ୍ରପୁରାଣର ରଚୟିତା ଭୁବନେଶ୍ୱରନିବାସୀ । ତେଣୁ ତାଙ୍କ ବର୍ଣ୍ଣନା ବିଶ୍ୱାସଯୋଗ୍ୟ । ବିଶ୍ୱକର୍ମା ଏଠାରେ ମନ୍ଦିର ନିର୍ମାଣ କରିଥିଲେ ।

"× × × ×
ବିଶ୍ୱକର୍ମା ମହାପ୍ରାଜ୍ଞ ଇନ୍ଦ୍ରେଶ୍ୱର ପ୍ରକଳ୍ପୟେତ୍ ॥୮॥
ପ୍ରତିଷ୍ଠାବିଧିନେନ୍ଦ୍ରୋଽପି ନିବୃତିଂ ସହ ଦକ୍ଷିଣାଂ ।
ଦେବୈଶ୍ଚ ଋଷିସଂଘୈଶ୍ଚ ମହୋତ୍ସବମକାରୟତ୍ ॥୯॥
× × × ×
ଚକ୍ରିରେ ଚୈବ ସଦନାନୁଚ୍ଚନୀଚାନ୍ ସୁମଧ୍ୟମାନ୍ ॥୧୦॥
ବର୍ଣ୍ଣୋଦ୍ୟାନ୍ ବିବିଧାନ୍ ରମ୍ୟାନ୍ ବନମାଳୋପଶୋଭିତାନ୍
× × × × ॥୧୧॥
× × × ×
ପ୍ରାକାରବିମଳୋଦଗ୍ରାଂସ୍ତୁଙ୍ଗତୋରଣମାଳିନଃ ।
ହର୍ମ୍ୟାକାରଗୃହାକାରାନ୍ ବିମାନବରବୀଥିପାନ୍ ॥୧୪॥

(ଏକାମ୍ର ପୁରାଣ. ୨୪)

ସ୍ୱର୍ଣ୍ଣକୂଟର ସୌନ୍ଦର୍ଯ୍ୟ ଅନୁପମ । ପ୍ରକୃତିର ମନୋରମ ଶୋଭା, ବୃକ୍ଷରାଦି, ପଶୁପକ୍ଷୀଙ୍କର ନିର୍ଭୟ ଗତି ଏହି ତୀର୍ଥକୁ ଆକର୍ଷଣୀୟ କରୁଥିଲା । ପ୍ରାସାଦ, ଉଦ୍ୟାନ, କୂପାଦି ଶୂଳପାଣିଙ୍କ କ୍ଷେତ୍ରକୁ ମଣ୍ଡିତ କରୁଥିଲା । ତପସ୍ୱୀ, ମୁନି, ସିଦ୍ଧ, ସଶିଷ୍ୟ ଅଗ୍ନିହୋତ୍ରୀ, ମୁମୁକ୍ଷୁ ପ୍ରଭୃତି ଏହି କ୍ଷେତ୍ରରେ ବାସ କରୁଥିଲେ ।

"× × × ×
ପ୍ରାସାଦବିମଳୈଃ ଶୁଭ୍ରୈର୍ଭ୍ରାଜମାନୋ ନରୋତ୍ତମ ।୨୫।

କୈଳାସ ଇବ ସୁବ୍ୟକ୍ତଂ ସ୍ୱର୍ଣ୍ଣକୂଟୋ ବିରାଜତେ ।
ବୀଣାବେଣୁମୃଦଙ୍ଗୈଶ୍ଚ ପଟହୈଃ ପଟୁନାଦିତୈଃ ।୨୬।

× × × ×
ବାସୋପସ୍କରସଂଶ୍ଳିଷ୍ଟୈର୍ବିତାନବ୍ୟଜନସ୍ରଜଃ ।
ପୁଷ୍ପପ୍ରକରମତ୍ୟର୍ଥଂ ବିଦ୍ୟୋତିତମିବାମ୍ବର ।୨୯।

ନାତ୍ୟୁଚ୍ଛିତଂ ନାତିନିମ୍ନଂ ସ୍ଥଳୀପ୍ରାୟ ମନୋରମମ୍
ସମନ୍ତାତ୍ କ୍ରୋଶପର୍ଯ୍ୟନ୍ତଂ ସୁପ୍ରିୟଂ ଶୂଳପାଣିନଃ ।୩୦।

× × × ×

ବାପୀନାଂ ଶତଶଶ୍ଚକ୍ରେ ଦିବ୍ୟକୂପାନ୍ ପୃଥକ୍ ପୃଥକ୍ ।୩୬।

× × × ×

ଉଦ୍ୟାନଗୋ ପୁରୈର୍ଦ୍ଧନ୍ୟୈର୍ହେମାଟ୍ଟାଳକମଣ୍ଡିତୈଃ ।୪୪।

ଦୃଶ୍ୟମାନୈରନେକୈଶ୍ଚ ଦାମ୍ପତୈର୍ଗଗନେଚରୈଃ ।
ମୁନିବୈଖାନସୈଃ ସିଦ୍ଧୈସ୍ତୂୟମାନୈସ୍ତପୋଧନୈଃ ।୪୫।

ସଶିଷ୍ୟୈଃ ଶୁଶ୍ରୂଷାଯୁକ୍ତୈରଗ୍ନିହୋତ୍ରପରାୟଣୈଃ ।
ମୁମୁକ୍ଷୁଭିର୍ମୁକ୍ତସଙ୍ଗୈଃ ଫଳମୂଳାମ୍ବୁଭୋଜନୈଃ ।୪୬।

ପକ୍ଷମାସନିରାହାରୈଃ ସିଦ୍ଧଯୋଗେଶ୍ୱରୈର୍ଦ୍ୱିଜୈଃ ।
× × × × ।୪୭।"

(ଏକାମ୍ର ପୁରାଣ -୨୪)

## ହିନ୍ଦୁ ଯୁଗରେ ଭୁବନେଶ୍ୱର

**ଶଙ୍କରାଚାର୍ଯ୍ୟଙ୍କ ଆଗମନ** : ଶଙ୍କରାଚାର୍ଯ୍ୟ ଭୁବନେଶ୍ୱର ଆଗମନ କରିଥିଲେ । ଶଙ୍କର ଅଦ୍ୱିତୀୟ ମହାପୁରୁଷ । ତାଙ୍କର ସମାଗମଯୋଗୁ ଭୁବନେଶ୍ୱର ଭାରତର ଲୋକମାନଙ୍କଦ୍ୱାରା ଆଦୃତ ଓ ସମ୍ମାନିତ ହୋଇଥିଲା । ଭୁବନେଶ୍ୱର ଭାରତର ଗୋଟିଏ ପ୍ରଧାନ ଶୈବପୀଠ ହେବାରୁ ଦେଶର ନାନା ଅଞ୍ଚଳର ଧନାଢ୍ୟ ଓ ଭକ୍ତମାନେ ଏଠାରେ ଗୋଟିଏ ଗୋଟିଏ ଶିବମନ୍ଦିର ନିର୍ମାଣ କରିବା ଦ୍ୱାରା ବହୁ ପୁଣ୍ୟାର୍ଜନ ହୁଏ ବୋଲି ମନେ କରିଥିଲେ । ଏହାଦ୍ୱାରା ଶିବମନ୍ଦିର ସଂଖ୍ୟା କ୍ରମଶଃ ବୃଦ୍ଧିପ୍ରାପ୍ତ ହେବାକୁ ଲାଗିଲା । ଶଙ୍କରାଚାର୍ଯ୍ୟ ଶୈବମାନଙ୍କୁ ଦଶଭାଗରେ ବିଭକ୍ତ କରିଥିଲେ 'ଭାରତୀ' ସମ୍ପ୍ରଦାୟ ଏହା ମଧ୍ୟରୁ ଅନ୍ୟତମ । ଭୁବନେଶ୍ୱରରେ ଭାରତୀମାନଙ୍କର ଗୋଟିଏ ମଠ ଅଦ୍ୟାବଧି ଦେଖାଯାଏ । ଶଙ୍କରାଚାର୍ଯ୍ୟଙ୍କ ପରେ ଏହା ନିର୍ମିତ ହୋଇଥିଲା । ଏହା ଭୁବନେଶ୍ୱରର ପ୍ରାଚୀନତମ ହିନ୍ଦୁମଠ ଓ ପ୍ରାୟ ୧୧୦୦ବର୍ଷର କୀର୍ତ୍ତି । ଲୋକେ ଏହାକୁ ବଡ଼ ମଠ ବୋଲି କହନ୍ତି । ଏହା ଉତ୍କଳର ସର୍ବପ୍ରଧାନ ଶୈବମଠ ।

କେଶରୀବଂଶର ରାଜତ୍ୱ ଆରମ୍ଭ ପୂର୍ବରୁ ଏହା ଉତ୍କଳର ଗୋଟିଏ ପ୍ରଧାନ ବୌଦ୍ଧ କ୍ଷେତ୍ରଥିଲା । କେଶରୀବଂଶର ପ୍ରଥମରାଜା ଯଯାତିକେଶରୀ ଭୁବନେଶ୍ୱରରେ

ବୌଦ୍ଧଧର୍ମର ମାହାତ୍ମ୍ୟ ହ୍ରାସ କରିବା ପାଇଁ ତାଙ୍କ ରାଜତ୍ୱର ଶେଷ ସମୟକୁ ଏଠାରେ ନିଜର ରାଜଧାନୀ ସ୍ଥାପନ କରିଥିଲେ । ରାମେଶ୍ୱର ନିକଟରେ ତାଙ୍କ ଗଡ଼ର ଭଗ୍ନାବଶେଷ ଦେଖାଯାଏ । ରାମେଶ୍ୱର ମନ୍ଦିର ତାଙ୍କର କୀର୍ତ୍ତି ବୋଲି ମନେହୁଏ । କାରଣ ବୌଦ ରାଜଧାନୀ ସୀମାରେ ରାମେଶ୍ୱର ନାମକ ଗୋଟିଏ ମନ୍ଦିର ଅଛି । ଭୁବନେଶ୍ୱର ରାମେଶ୍ୱର ମନ୍ଦିର ତାହାର ଅବିକଳ ପ୍ରତିକୃତି । ଯଯାତି ପ୍ରଥମେ ଦଶ ସହସ୍ର ବ୍ରାହ୍ମଣ ଆଣିଥିବା କିମ୍ବଦନ୍ତୀ ସତ୍ୟ ବୋଲି ପ୍ରମାଣିତ ହୋଇଛି । ସେ ରାଜତ୍ୱର ଶେଷଭାଗକୁ ଅର୍ଥାତ୍ ୬ଷ୍ଠ ଶତାବ୍ଦୀର ପ୍ରଥମ ଭାଗରେ ଭୁବନେଶ୍ୱର ମନ୍ଦିରର ମୂଳପତ୍ତନ ପକାଇଥିଲେ । ଯଯାତିଙ୍କ ସମୟରେ ଭୁବନେଶ୍ୱର ନିକଟରେ ଅନେକ ବ୍ରାହ୍ମଣ ଭୂମିଦାନ ପାଇ ବାସକରିବାକୁ ଲାଗିଲେ । ଲଲାଟେନ୍ଦୁ କେଶରୀ ଭୁବନେଶ୍ୱର ମନ୍ଦିର ନିର୍ମାଣ କାର୍ଯ୍ୟ ୬୬୬ ଖ୍ରୀଷ୍ଟାବ୍ଦରେ ଶେଷ କରିଥିଲେ । ଖଣ୍ଡଗିରିଠାରୁ ଲିଙ୍ଗରାଜଙ୍କ ପର୍ଯ୍ୟନ୍ତ ବିସ୍ତୃତ ରାସ୍ତା, ଚାରନାରାୟଣୀଠାରୁ ମନ୍ଦିର ପର୍ଯ୍ୟନ୍ତ ବିସ୍ତୃତ ଚାର ଓ ଲିଙ୍ଗରାଜ ମନ୍ଦିରର ଦକ୍ଷିଣ ଦିଗରେ ଥିବା ରାଜପ୍ରାସାଦ ତାଙ୍କ ସମୟର କୀର୍ତ୍ତି । ଲଲାଟେନ୍ଦୁ ବା ଉଦ୍ୟୋତକେଶରୀଙ୍କ ମାତା କୋଳାବତୀ ବ୍ରହ୍ମେଶ୍ୱର ମନ୍ଦିର ୭ମ ଶତାବ୍ଦୀର ପ୍ରଥମ ଭାଗରେ ନିର୍ମାଣ କରିଥିଲେ । ତାଙ୍କ ସମୟରେ ଭୁବନେଶ୍ୱର ସମଗ୍ର ଉତ୍କଳରାଜ୍ୟର ରାଜଧାନୀ ଥିଲା । ଲଲାଟେନ୍ଦୁ ଦକ୍ଷିଣରେ ପୁଲକେଶୀ ଦ୍ୱିତୀୟ ଓ ଉତ୍ତରରେ ହର୍ଷବର୍ଦ୍ଧନଙ୍କର ବାରମ୍ବାର ଆକ୍ରମଣକୁ ପ୍ରତିରୋଧ କରିଥିଲେ ।

ତାଙ୍କ ସମୟରେ ଭୁବନେଶ୍ୱର ଭାରତର ଗୋଟିଏ ପ୍ରଧାନ ନଗରରୂପେ ପରିଣତ ହୋଇଥିଲା । ଶିଶୁପାଳ ଦୁର୍ଗ ତାଙ୍କ ସମୟର କୀର୍ତ୍ତି ବୋଲି କିମ୍ବଦନ୍ତୀରୁ ଜଣାଯାଏ । ଭୁବନେଶ୍ୱରର ଚତୁର୍ଦ୍ଦିଗରେ ବ୍ରାହ୍ମଣଶାସନମାନ ପ୍ରତିଷ୍ଠିତ ହୋଇଥିଲା । ମନ୍ଦିର ନିର୍ମାଣ ସମୟରେ ଏଠାରେ ହଜାର ହଜାର ଶିଳ୍ପୀ ବାସ କରୁଥିଲେ । ଭୁବନେଶ୍ୱର ନିକଟରେ ଲୁହାର ଶାଳମାନ ଖୋଲା ହୋଇଥିଲା । ଖଣ୍ଡଗିରି, ଉଦୟଗିରି, ନୂଆପଲ୍ଲୀ, ଝାଡ଼ପଡ଼ା ଖଣିମାନଙ୍କରୁ ପ୍ରତ୍ୟହ ଶତଶତ ଛେଦକାର (Stone-cutter) ନିଯୁକ୍ତ ହୋଇ ମନ୍ଦିରନିର୍ମାଣ ପାଇଁ ପଥର ଯୋଗାଉଥିଲେ । ଅସଂଖ୍ୟ ଶ୍ରମିକ ପ୍ରତ୍ୟେକ ମନ୍ଦିରନିର୍ମାଣ କାର୍ଯ୍ୟରେ ବ୍ୟସ୍ତଥିଲେ । ଖଣ୍ଡଗିରିଠାରୁ ଧଉଳିଗିରି ପର୍ଯ୍ୟନ୍ତ ବିସ୍ତୃତ ଭୁବନେଶ୍ୱର କ୍ଷେତ୍ରରେ ଅନେକ ହୋମ ଓ ଯଜ୍ଞ ସଂପନ୍ନ ହେଉଥିଲା । ଯଜ୍ଞକୁଣ୍ଡମାନଙ୍କରୁ ପୂତ ଧୂମରାଶି ଉତ୍ଥିତ ହୋଇ ଗଗନମଣ୍ଡଳକୁ ଆଚ୍ଛାଦିତ କରୁଥିଲା । ଅନେକ ଚତ୍ୱର ଉଦ୍ୟାନ ନିର୍ମିତ ହୋଇ

ଭୁବନେଶ୍ୱରର ଶୋଭାବର୍ଦ୍ଧନ କରୁଥିଲା ।

ମାନବ ଓ ପଶୁମାନଙ୍କର ଉପକାର ନିମିତ୍ତ ଅନେକ କୂପ ଓ ତଡ଼ାଗ ଖୋଦିତ ହୋଇଥିଲା । ପଣ୍ଡିତମାନଙ୍କର ଜ୍ଞାନଚର୍ଚ୍ଚା ନିମିତ୍ତ ସ୍ଥାନେ ସ୍ଥାନେ ବିଦ୍ୟାଳୟ ଓ ଚତୁଷ୍ପାଠୀମାନ ନିର୍ମିତ ହୋଇଥିଲା । ଭୁବନେଶ୍ୱର ଦ୍ୱିତୀୟ ଅମରାବତୀ ପରି ଶୋଭା ପାଉଥିଲା । ରାଜଧାନୀ ଯୋଗୁ ଏଠାରେ ନାନାପ୍ରକାର ବଣିକ ବାସ କରୁଥିଲେ । ରାଜଧାନୀକୁ ଓ ରାଜ୍ୟକୁ ଶତ୍ରୁଭୟରୁ ଓ ବିପ୍ଳବରୁ ରକ୍ଷାକରିବାପାଇଁ ଶିଶୁପାଳ ଦୁର୍ଗରେ ଅସଂଖ୍ୟ ସୈନ୍ୟବାସ କରୁଥିଲେ । ଅଶୋକଙ୍କ ରାଜତ୍ୱରେ ତୋଷଳୀ ଓ ଖାରବେଳଙ୍କ ରାଜତ୍ୱରେ କଳିଙ୍ଗନଗର, ଯଯାତିଙ୍କ ରାଜତ୍ୱ ସମୟରେ ଭୁବନେଶ୍ୱର ଉତ୍କଳର ଗୋଟିଏ ପ୍ରଧାନ ନଗର ରୂପେ ପରିଣତ ହୋଇଥିଲା । ସେହି ସମୟରୁ ଭୁବନେଶ୍ୱରର ଯଶ ମୃଦୁମନ୍ଦ ସମୀର ଦ୍ୱାରା ଅପହୃତ ପୁଷ୍ପସୌରଭ ପରି ଲୋକମୁଖରେ ପ୍ରଚଳିତ ହୋଇ ସମଗ୍ର ଭାରତ ବର୍ଷରେ ଖ୍ୟାତିଲାଭ କରିଥିଲା । ଲଲାଟେନ୍ଦୁ କେଶରୀଙ୍କ ସମୟଠାରୁ ଭୁବନେଶ୍ୱର କ୍ରମଶଃ ଉନ୍ନତି ପଥରେ ଧାବିତ ହେଲା । ଲଲାଟେନ୍ଦୁଙ୍କ ମୃତ୍ୟୁ ପରେ କେଶରୀ(ସୋମ) ବଂଶୀୟ ରାଜଧାନୀ ନଥିଲେ ମଧ୍ୟ ରାଜ୍ୟର ଗୋଟିଏ ପ୍ରଧାନ ନଗର ଥିଲା । ଏହି ସମୟରେ ଏଠାରେ ଅସଂଖ୍ୟ ଶିବମନ୍ଦିର, ପୁଷ୍କରିଣୀ ଓ ବ୍ରାହ୍ମଣଶାସନ ପ୍ରତିଷ୍ଠିତ ହୋଇଥିଲା । ରାଘବେନ୍ଦ୍ର କବିଶେଖର ବିରଚିତ ବଙ୍ଗରାଜ ହରିବର୍ମଦେବଙ୍କ ଗୋଟିଏ ଲିପି(୧୦୩୦ ଖ୍ରୀଷ୍ଟାବ୍ଦ)ରେ ଏକାମ୍ରକାନନରେ ୧୦୮ ମନ୍ଦିର ପ୍ରତିଷ୍ଠା ବିଷୟ ଲିଖିତ ଅଛି । ତାହାହେଲେ ଏକାଦଶ ଶତାବ୍ଦୀର ପ୍ରଥମ ଭାଗରେ ଭୁବନେଶ୍ୱର ସମଗ୍ର ଭାରତବର୍ଷରେ ଖ୍ୟାତିଲାଭ କରିଥିଲା । ଭାସ୍କରେଶ୍ୱର, ରାଜାରାଣୀ, ସିଦ୍ଧେଶ୍ୱର, ମୁକ୍ତେଶ୍ୱର, କେଦାରେଶ୍ୱର, ଯମେଶ୍ୱର, ଗୌରୀ, ପାର୍ବତୀ ପ୍ରଭୃତି ପ୍ରସିଦ୍ଧ ମନ୍ଦିର ଓ ଅଷ୍ଟତୀର୍ଥ ଏହି ଯୁଗର କୀର୍ତ୍ତି । ଯାଜପୁର ବ୍ରାହ୍ମଣମାନେ ପ୍ରଥମେ ବିଶେଷ ପ୍ରତିଷ୍ଠା ଲାଭ କରିଥିଲେ । କିନ୍ତୁ ସେମାନେ ତାନ୍ତ୍ରିକମତାବଲମ୍ବୀ ହେବାରୁ ସେମାନଙ୍କର ପ୍ରାଧାନ୍ୟ କ୍ରମଶଃ ହ୍ରାସପାଇଥିଲା । ଲଲାଟେନ୍ଦୁଙ୍କ ସମୟଠାରୁ ଚୋଡ଼ଗଙ୍ଗଦେବଙ୍କ ରାଜତ୍ୱ ପର୍ଯ୍ୟନ୍ତ ଭୁବନେଶ୍ୱର ଅଞ୍ଚଳର ବ୍ରାହ୍ମଣମାନେ ସମଗ୍ର ଉତ୍କଳରେ ଆଦୃତ ହେଉଥିଲେ । ଭୁବନେଶ୍ୱର ପୂର୍ବାଞ୍ଚଳରେ ପ୍ରାୟ ଶତାଧିକ ବ୍ରାହ୍ମଣଶାସନ ପ୍ରତିଷ୍ଠିତ ହୋଇଥିଲା । ଗଙ୍ଗବଂଶ ଓ ସୂର୍ଯ୍ୟବଂଶରାଜତ୍ୱ ସମୟରେ ଉକ୍ତ ଅଞ୍ଚଳର ବ୍ରାହ୍ମଣମାନେ ଦୟା ଓ ଭାର୍ଗବୀ ନଦୀକୂଳରେ ଅସଂଖ୍ୟ ବ୍ରାହ୍ମଣଶାସନରେ ପ୍ରତିଷ୍ଠିତ ହୋଇଥିଲେ । ଚୋଡ଼ଗଙ୍ଗଦେବଙ୍କ ୫/୬ଟି ଲିପି ଏଠାରୁ ଆବିଷ୍କୃତ ହୋଇଅଛି ।

କେଦାରେଶ୍ୱରରେ ଚୋଡ଼ଗଙ୍ଗଦେବଙ୍କ ସମୟ (୧୦୩୪+୭୮=)

୧୧୧୨ ଖ୍ରୀଷ୍ଟାବ୍ଦର ଗୋଟିଏ ଲିପି ଆବିଷ୍କୃତ ହୋଇଅଛି । ସେଥିରେ ଗ୍ରାମ ଓ ଶାସନଦାନର ଉଲ୍ଲେଖ ଅଛି । ଅନଙ୍ଗଭୀମଦେବଙ୍କର କେତୋଟି ଲିପି ଲିଙ୍ଗରାଜ ମନ୍ଦିରରେ ଅଦ୍ୟାପି ବିଦ୍ୟମାନ । ନରସିଂହଦେବ ଭୁବନେଶ୍ୱରର ସିଦ୍ଧେଶ୍ୱରମଠକୁ କେତେକ ଭୂମିଦାନ କରିଥିଲେ । ତାଙ୍କ ସମୟରେ ସିଦ୍ଧେଶ୍ୱର ମଠ ଦାକ୍ଷିଣାତ୍ୟ ସୀମାରେ ଥିବା ଚେରଚୋଡ଼ ଓ ପାଣ୍ଡ୍ୟରାଜ୍ୟରେ ମଧ୍ୟ ଖ୍ୟାତି ଲାଭ କରିଥିଲା । ଅନଙ୍ଗଭୀମଦେବଙ୍କ କନ୍ୟା ଚନ୍ଦ୍ରିକାଦେବୀ ବିନ୍ଦୁସାଗର ପୂର୍ବତଟରେ ୧୨୭୮ ଖ୍ରୀ.ରେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ ନିମନ୍ତେ ସୁରମାଦେବୀ ରମଣୀୟ ମନ୍ଦିର ନିର୍ମାଣ କରିଥିଲେ । ଏହା ଆଧୁନିକ ଅନନ୍ତ ବାସୁଦେବ ମନ୍ଦିର । ସ୍ୱପ୍ନେଶ୍ୱର ଓ ୧୧୯୫ଖ୍ରୀ. ବେଳକୁ ଭୁବନେଶ୍ୱରର ପୂର୍ବାଞ୍ଚଳରେ ଅନେକ କୀର୍ତ୍ତି ସ୍ଥାପନ କରିଥିଲେ । ତାଙ୍କଯୋଗୁ ଭୁବନେଶ୍ୱରର ମାହାତ୍ମ୍ୟ ଯଥେଷ୍ଟ ବୃଦ୍ଧିପାଇଥିଲା । ସେମାନଙ୍କର ନାମ ଭୁବନେଶ୍ୱର ଇତିହାସରେ ଅମରାକ୍ଷରରେ ଲିପିବଦ୍ଧ ହୋଇ ରହିବ । ସମ୍ଭବତଃ ଭୁବନେଶ୍ୱର ଅଞ୍ଚଳର ଶାସନଭାର ସ୍ୱପ୍ନେଶ୍ୱରଙ୍କ ଉପରେ ନ୍ୟସ୍ତ ଥିଲା । ସେ ଅନେକ ଗ୍ରାମ ଶାସନ ଦାନ କରିଥିଲେ । ତାଙ୍କ ଦାନ ଜଳଦ୍ୱାରା ପୃଥିବୀ ଜଳମାତୃକାହୋଇ ଶସ୍ୟସମ୍ପଭିଶାଳିନୀ ହେଲା । ସେ ବହୁ ଅର୍ଥ ବ୍ୟୟ କରି ସେ ମେଘେଶ୍ୱର ମନ୍ଦିର ଓ ତାହାର ଚତୁର୍ଦ୍ଦିଗସ୍ଥ ପ୍ରାଚୀର ନିର୍ମାଣ କରିଥିଲେ । ମେଘେଶ୍ୱରଙ୍କ ପଶ୍ଚିମଦିଗରେ ବିଶାଳ ଉଦ୍ୟାନ ନିର୍ମାଣ ଓ ଉତ୍ତରରେ ଗୋଟିଏ ପୁଷ୍କରିଣୀ ଖୋଦନ କରିଥିଲେ । ଏହି ମନ୍ଦିର ନିକଟରେ ଶିଳ୍ପପରାକାଷ୍ଠା ପ୍ରଦର୍ଶକ ଲୋକମାନଙ୍କର ଗ୍ରୀଷ୍ମସନ୍ତାପ ନିବାରକ ଏକବିରାଟ ମଣ୍ଡପ ନିର୍ମାଣ କରିଥିଲେ । ଏହାର ଅସ୍ତିତ୍ୱ ବର୍ତ୍ତମାନ ଦେଖାଯାଏ ନାହିଁ । ଏତଦ୍‌ବ୍ୟତୀତ ପ୍ରତିପଥରେ ଜଳ ସତ୍ରାଗାରସମୂହ, ପ୍ରତିଗ୍ରାମରେ ପୁଷ୍କରିଣୀନିଚୟ, ପ୍ରତିଦେବମନ୍ଦିରରେ ନିର୍ମଳ ଦୀପାବଳୀ ସ୍ଥାନେ ସ୍ଥାନେ ବେଦାଭ୍ୟାସ ନିମିତ୍ତ ବିଦ୍ୟାଳୟପଂକ୍ତି, ପ୍ରତିଦିଗରେ ବ୍ରାହ୍ମଣଶାସନ, ଯାଗଚିହ୍ନମାନ ଓ ଜଳପ୍ଲାବନରୁ ଦେଶରକ୍ଷା ନିମିତ୍ତ ଚତୁର୍ଦ୍ଦିଗରେ ସେତୁନିବହ ତାଙ୍କଦ୍ୱାରା ନିର୍ମିତ ହୋଇଥିଲା । ଏ ସମସ୍ତ କୀର୍ତ୍ତି କାଳର କରାଳ କବଳରେ ପଡ଼ି ଧ୍ୱଂସପ୍ରାପ୍ତ ହୋଇଅଛି । କିନ୍ତୁ ଗଙ୍ଗୁଆ ଉପରେ ଥିବା ୨୩ଟି ସେତୁ ଅଦ୍ୟାପି ବିଦ୍ୟମାନ ଥାଇ ତାଙ୍କର ଯଶଃ ଘୋଷଣା କରୁଅଛି । ସେ ବ୍ରହ୍ମେଶ୍ୱର ମନ୍ଦିର ନିକଟରେ ବିଷ୍ଣୁ ଆଚାର୍ଯ୍ୟଙ୍କୁ ଗୋଟିଏ ଶାସନଦାନ କରିଥିଲେ ।

ଚୋଡ଼ଗଙ୍ଗଦେବଙ୍କ ଶ୍ୟାମଳା ନାମକ ଜଣେ ସ୍ତ୍ରୀ ଥିଲେ । ସେ ଭୁବନେଶ୍ୱରରେ ଶ୍ୟାମଳାଗଙ୍ଗା ନାମକ ଗୋଟିଏ ବିରାଟ ପୁଷ୍କରିଣୀ ଖୋଳାଇଥିଲେ । ଏହା ଲେଖକଙ୍କ ଘର ଅଞ୍ଚଳରେ ଅବସ୍ଥିତ ଥିଲା । ଏହା ବର୍ତ୍ତମାନ

ଲୁପ୍ତ । ଚୋଡ଼ଗଙ୍ଗ ଦେବଙ୍କର କୌଶଲ୍ୟା ନାମକ ଜଣେ ସ୍ତ୍ରୀ ଥିଲେ । ଉତ୍କଳର ବୃହତ୍ତମ ପୁଷ୍କରିଣୀ 'କୌଶଲ୍ୟାଗଙ୍ଗ' ତାଙ୍କରି କୀର୍ତ୍ତି । ଏହାର ଅନତି ଦୂରରେ ଦୟାନଦୀର ଦକ୍ଷିଣ ଦିଗରେ ଆଉ କେତୋଟି ଶାସନ ପ୍ରତିଷ୍ଠିତ ହୋଇଥିଲା । ତାଙ୍କରି ସମୟରେ ଭୁବନେଶ୍ୱରର ଦକ୍ଷିଣ ସୀମା ଧଉଳିର ବହିରଙ୍ଗେଶ୍ୱର ମନ୍ଦିରକୁ ସ୍ପର୍ଶ କରିଥିଲା । ତାଙ୍କର ଲକ୍ଷ୍ମୀ ନାମ୍ନୀ ଆଉ ଜଣେ ସ୍ତ୍ରୀ ଥିଲେ । 'ଲକ୍ଷ୍ମୀସାଗର' ତାଙ୍କର କୀର୍ତ୍ତିବୋଲି ମନେ ହୁଏ । କାରଣ ପ୍ରତ୍ୟେକ ସ୍ତ୍ରୀ ତୀର୍ଥସ୍ଥାନମାନଙ୍କରେ କୀର୍ତ୍ତିସ୍ଥାପନ ଓ ଦୀପଦାନ କରୁଥିଲେ । ତାଙ୍କର ୧୯ଜଣ ସ୍ତ୍ରୀ ଥିଲେ । ଅନ୍ୟ ସ୍ତ୍ରୀମାନଙ୍କ କୀର୍ତ୍ତି ଏ ପର୍ଯ୍ୟନ୍ତ ଆବିଷ୍କୃତ ହୋଇନାହିଁ ।

ଅନଙ୍ଗଭୀମଙ୍କ ରାଜତ୍ୱ କାଳରେ ଭୁବନେଶ୍ୱରର ଅସାଧାରଣ ଉନ୍ନତି ହୋଇଥିଲା । ଅନଙ୍ଗଭୀମଦେବ ମନ୍ଦିର ଓ ମଠମାନଙ୍କର ପରିଚାଳନ ପାଇଁ ବିଶେଷ ଦୃଷ୍ଟି ଦେଉଥିଲେ ।

୧୩ଶ ଶତାବ୍ଦୀରେ ଏଠାରେ ଭୋଗମଣ୍ଡପ ଓ ନାଟମନ୍ଦିର ନିର୍ମିତ ହୋଇଥିଲା । ଗଙ୍ଗବଂଶୀୟ ପୁରୁଷୋତ୍ତମ ଦେବ କାଞ୍ଚୀବିଜୟକରି ଏଠାରେ ଚନ୍ଦ୍ରଶେଖର ମୂର୍ତ୍ତି ସ୍ଥାପନ କରିଥିଲେ । ସୂର୍ଯ୍ୟବଂଶର ପ୍ରଥମରାଜା କପିଳେନ୍ଦ୍ରଦେବଙ୍କ ଅଭିଷେକ ଏଠାରେ ହୋଇଥିବା ଗୋଟିଏ ଶିଳାଳିପିରୁ ଜଣାଯାଏ । ତାଙ୍କ ସମୟରେ ଲିଙ୍ଗରାଜ ମହାପ୍ରଭୁଙ୍କ ସେବାପୂଜା ନିମିତ୍ତ ଅନେକ ଜମିବାଡ଼ି ଖଞ୍ଜା ହୋଇଥିଲା । ପୁରୁଷୋତ୍ତମ ଓ ପ୍ରତାପରୁଦ୍ରଙ୍କ ସମୟରେ ଏଠାରେ ଅନେକ ବୈଷ୍ଣବକୀର୍ତ୍ତି ସ୍ଥାପିତ ହୋଇଥିଲା ଓ ଭୁବନେଶ୍ୱରରେ ଶୈବ ଓ ବୈଷ୍ଣବଧର୍ମର ସମନ୍ୱୟ ସ୍ଥାପିତ ହୋଇଥିଲା । କପିଳେନ୍ଦ୍ରଦେବଙ୍କ ରାଜତ୍ୱପରେ ଏହାର ବିଶେଷ କୌଣସି ଉନ୍ନତି ହୋଇନାହିଁ । ପରନ୍ତୁ ପୁରୁଷୋତ୍ତମଦେବ ଓ ପ୍ରତାପରୁଦ୍ରଦେବଙ୍କର ବୈଷ୍ଣବଧର୍ମ ପ୍ରତି ବିଶେଷ ଭକ୍ତି ଓ ମମତା ଥିବାରୁ ଭୁବନେଶ୍ୱର ଅପେକ୍ଷା ପୁରୀ ସେମାନଙ୍କର ଆଦର ସ୍ଥଳୀ ଥିଲା ।

କପିଳେନ୍ଦ୍ରଦେବଙ୍କ ରାଜତ୍ୱ ସମୟରେ ଭୁବନେଶ୍ୱର ଉନ୍ନତି ଓ ସମୃଦ୍ଧିର ଚରମସୀମାରେ ଉପନୀତ ହୋଇଥିଲା । କିମ୍ବଦନ୍ତୀ ଅନୁସାରେ ପ୍ରାଚୀନ ଭୁବନେଶ୍ୱରରେ ୧ଲକ୍ଷ ୩୨ହଜାର ଘର ଥିଲା । ଏହା କାଳ୍ପନିକ ବୋଲି କହିବା ସହଜ ନୁହେଁ । କାରଣ- ସେ ସମୟରେ ଭୁବନେଶ୍ୱର ପଞ୍ଚକ୍ରୋଶ ଥିଲା । ଖଣ୍ଡଗିରିଠାରୁ ଟଙ୍କପାଣିର କୁଣ୍ଡଳେଶ୍ୱର ଓ ଧଉଳୀର ବହିରଙ୍ଗେଶ୍ୱରଠାରୁ ବାରାହୀଦେବୀ ପର୍ଯ୍ୟନ୍ତ ଏହାର ସୀମାଥିଲା । କେବଳ ଗନ୍ଧବତୀ ନଦୀକୂଳରେ ୭ଟି ଶାସନ ଥିଲା । ଏହା ବ୍ୟତୀତ ଦୟାନଦୀ କୂଳରେ ଧଉଳୀର ଉତ୍ତରପାର୍ଶ୍ୱ

ଖଣ୍ଡଗିରି ନିମ୍ନଦେଶ ପୋଖରୀପୁଟ ଲକ୍ଷ୍ମୀସାଗର ନିକଟରେ ଅନେକ ଶାସନ ବିଦ୍ୟମାନ ଥିଲା । ଅଦ୍ୟାପି ଉକ୍ତ ପଞ୍ଚକ୍ରୋଶରେ ୪୫ଖଣ୍ଡ ଗ୍ରାମ ଦେଖାଯାଏ । ଆହୁରି ଅନେକ ଗ୍ରାମ ଧ୍ୱଂସ ହୋଇଯାଇଛି । କେବଳ ଶିଶୁପାଳ ଦୁର୍ଗ ମଧ୍ୟରେ ୩୪ଖଣ୍ଡି ଗ୍ରାମ ବିଦ୍ୟମାନ ଥିବାର ଜଣାଯାଏ । ଏହାବ୍ୟତୀତ ନୂଆପଲ୍ଲୀ, କପିଳ ପ୍ରସାଦ, ବଡ଼ଗଡ଼, ଧଉଳୀ ଦୁର୍ଗମାନଙ୍କରେ ଅନେକ ଲୋକବସତି ଥିଲା । ଏ ପର୍ଯ୍ୟନ୍ତ ଶିଳାଲିପି, ତାମ୍ରଶାସନ ଓ କିମ୍ବଦନ୍ତୀରୁ ପ୍ରାଚୀନ ଭୁବନେଶ୍ୱରର ଇତିହାସ ସଂଗୃହୀତ ହୋଇଅଛି । ପୁରାଣମାନଙ୍କରେ ଭୁବନେଶ୍ୱରର ବିସ୍ତୃତ ବର୍ଣ୍ଣନା ଦିଆଯାଇଛି ।

ବ୍ରହ୍ମପୁରାଣର ଉତ୍କଳଦେଶ ସମ୍ବନ୍ଧୀୟ ବିଷୟଗୁଡ଼ିକ ଚୋଡ଼ଗଙ୍ଗଙ୍କ ପୂର୍ବବର୍ତ୍ତୀ । ତେଣୁ ବ୍ରହ୍ମପୁରାଣ ରଚନା ସମୟକୁ (ଅର୍ଥାତ୍ ଦ୍ୱାଦଶ ଶତାବ୍ଦୀରେ) ଭୁବନେଶ୍ୱରର ଚିତ୍ର ଏଥିରେ ପ୍ରଦତ୍ତ ହୋଇଥିବା ମନେହୁଏ ।



## ଦ୍ୱିତୀୟ ଅଧ୍ୟାୟ

# ବୌଦ୍ଧଧର୍ମର ବିକାଶ

ଦେବପ୍ରିୟ ପ୍ରିୟଦର୍ଶୀ ମୌର୍ଯ୍ୟସମ୍ରାଟ୍ ଅଶୋକଙ୍କ ସମୟରେ ଉତ୍କଳରେ ପ୍ରଥମେ ବୌଦ୍ଧଧର୍ମ ପ୍ରଚାରିତ ହୋଇଥିଲା । ତାଙ୍କ ସମୟରେ ତୋଷଳୀ ବା ଧଉଳୀ ସମଗ୍ର କଳିଙ୍ଗ ସାମ୍ରାଜ୍ୟର ରାଜଧାନୀ ଥିଲା । ଭୁବନେଶ୍ୱର ବିସ୍ତୃତ ପ୍ରାନ୍ତର ନିକଟରେ କଳିଙ୍ଗ ଯୁଦ୍ଧ ହୋଇଥିଲା । ଧଉଳୀର ଅଶୋକାନୁଶାସନ, କଳିଙ୍ଗାନୁଶାସନ, ଅଶ୍ୱତ୍ଥମାହାତୀ ଓ ଆହୁରି ଅନେକ ଅଶୋକ କୀର୍ତ୍ତି ବିଦ୍ୟମାନ । କପିଳେଶ୍ୱରରୁ ଅଶୋକଙ୍କ ରୁମେବ ଲିପିର ନକଲ ମିଳିଅଛି । ତୋଷଳୀର ନିକଟବର୍ତ୍ତୀ ଭୁବନେଶ୍ୱରରେ ଅଶୋକ ଅନେକ ବୌଦ୍ଧକୀର୍ତ୍ତି ସ୍ଥାପନ କରିଥିବେ । କିନ୍ତୁ ସେଗୁଡ଼ିକ ଆଜି ପର୍ଯ୍ୟନ୍ତ ଆବିଷ୍କୃତ ହୋଇନାହିଁ ।

**ଭୁବନେଶ୍ୱରରେ ବୌଦ୍ଧ ପ୍ରଭାବ :** କେଶରୀବଂଶୀୟ ପ୍ରଥମରାଜା ଯଯାତିକେଶରୀଙ୍କ ପୂର୍ବରୁ ଉତ୍କଳରେ କରବଂଶ ଓ ଶିଳାବଂଶ ରାଜାମାନେ ରାଜତ୍ୱ କରୁଥିଲେ । କରବଂଶୀୟ ରାଜାମାନେ ବୌଦ୍ଧଧର୍ମର ପ୍ରଧାନ ପୃଷ୍ଠପୋଷକ ଥିଲେ ଓ ଉତ୍ତରରେ ରାଠିଠାରୁ ଦକ୍ଷିଣରେ କଳିଙ୍ଗର ବଂଶଧାରା ନଦୀ ପର୍ଯ୍ୟନ୍ତ ସେମାନଙ୍କର ରାଜ୍ୟ ବିସ୍ତୃତ ହୋଇଥିଲା । ଭୁବନେଶ୍ୱର ନିକଟର୍ତ୍ତୀସ୍ଥାନରୁ ବୌଦ୍ଧ କରବଂଶର ଦୁଇଟି ଲିପି ଅଦ୍ୟାପି ଆବିଷ୍କୃତ ହୋଇଅଛି । ଧଉଳୀର ଗୋଟିଏ ଗୁମ୍ଫାରେ ଶାନ୍ତିକରଙ୍କର ୯୩ ଅଙ୍କରେ ଖୋଦିତ ଗୋଟିଏ ଲିପି ଦେଖାଯାଏ । ଉଦୟଗିରିର ଗଣେଶଗୁମ୍ଫାରେ ମଧ ଏହାଙ୍କର ଆଉ ଗୋଟିଏ ଲିପି ମିଳେ । ପ୍ରତ୍ୟେକ ଲିପିରେ ତୋଷଳର ନାମ ଦେଖାଯାଏ । ଦୁଇଟିଯାକ ଲିପିରେ ଦାନର ବିଷୟ ବର୍ଣ୍ଣିତ ହୋଇଛି । ଗଣେଶ ଗୁମ୍ଫା ଲିପିରୁ ଜଣାଯାଏ ଯେ ନନ୍ନାତଙ୍କ ପୁତ୍ର ଭିମାତ ଶାନ୍ତିକରଙ୍କଠାରୁ ଦାନ ଗ୍ରହଣ କରିଥିଲେ । ପ୍ରଦତ୍ତ ସ୍ଥାନଗୁଡ଼ିକ ଭୁବନେଶ୍ୱର ନିକଟବର୍ତ୍ତୀ, କିନ୍ତୁ ଆଜି ପର୍ଯ୍ୟନ୍ତ ଭୁବନେଶ୍ୱର ଅଞ୍ଚଳରୁ କୌଣସି ପ୍ରସିଦ୍ଧ ବୌଦ୍ଧକୀର୍ତ୍ତି ଆବିଷ୍କୃତ ହୋଇନାହିଁ । ଗୋଟିଏ ସ୍ଥାନର ଦୁଇଦିଗରେ ଦୁଇଟି ବୌଦ୍ଧତୀର୍ଥ ଥିବାରୁ ଜଣାଯାଏ ଯେ, ଏହା ବୌଦ୍ଧଧର୍ମର ପ୍ରଧାନ କେନ୍ଦ୍ରସ୍ଥାନ ଥିଲା । ଉକ୍ତବଂଶର ଦଣ୍ଡୀମହାଦେବୀଙ୍କ କୁମାରଙ୍ଗ ଲିପିରେ ୧୮୦ଅଙ୍କ ବ୍ୟବହୃତ ହୋଇଅଛି । ଏହି ଅଙ୍କ ସମ୍ବନ୍ଧରେ କୌଣସି ଠିକ୍ ବିବରଣ ଜଣାଯାଇନାହିଁ । ଏହା ଗଙ୍ଗାବ୍ଦ ବା ସାଲ ହୋଇନପାରେ । କାରଣ ଗଙ୍ଗାବ୍ଦ ୭୦୨

ଖ୍ରୀଷ୍ଟାବ୍ଦରେ ଓ ସାଲ ୫୯୩ ଖ୍ରୀଷ୍ଟାବ୍ଦରେ ପ୍ରଚଳିତ ହୋଇଥିଲା । ସେତେବେଳକୁ ଉତ୍କଳରେ କେଶରୀବଂଶୀୟ ରାଜାମାନଙ୍କର ରାଜତ୍ୱ ଅକ୍ଷୁଣ୍ଣ ଥିଲା । କରବଂଶୀୟ ରାଜାମାନେ ବିକ୍ରମଶାଳୀ ଓ ସ୍ୱାଧୀନ ଥିଲେ । କେଶରୀବଂଶୀୟ ପ୍ରଥମରାଜା ଜନ୍ମେଜୟ ସେମାନଙ୍କର ସ୍ୱାଧୀନତା ହରଣ କରିଥିଲେ । ତେଣୁ କେଶରୀ ବଂଶୀୟ ରାଜାମାନଙ୍କ ସମୟରେ ସେମାନେ ସ୍ୱାଧୀନ ଭାବରେ ଭୂମିଦାନ କରିଥିବା ଆଦୌ ସମ୍ଭବପର ନୁହେଁ । ତେଣୁ ଏହା ଶକାବ୍ଦ ବା ଅନ୍ୟ କୌଣସି ଅବ୍ଦ ବା ସମ୍ୱତ୍ ।

ଏହି ଅବ୍ଦ ଯାହାହେଉ, ଏହା ସୁନିଶ୍ଚିତ ଯେ ଖ୍ରୀଷ୍ଟୀୟ ୬ଷ୍ଠ ଶତାବ୍ଦୀର ପୂର୍ବରୁ ସେମାନେ ସ୍ୱାଧୀନ ଭାବରେ ରାଜତ୍ୱ କରୁଥିଲେ । ସେମାନଙ୍କ ସମୟରେ ଭୁବନେଶ୍ୱର ଗୋଟିଏ ପ୍ରଧାନ ବୌଦ୍ଧକ୍ଷେତ୍ର ଥିଲା । କରବଂଶର ରାଜାମାନଙ୍କ ସମୟରେ ଖଣ୍ଡଗିରି ଓ ଉଦୟଗିରିରେ ଅସଂଖ୍ୟ ବୌଦ୍ଧଶ୍ରମଣ ଓ ଆଚାର୍ଯ୍ୟ ରାଜପୋଷକତା ଲାଭ କରି ବାସ କରୁଥିଲେ । (ଏ ବିଷୟ-ଖଣ୍ଡଗିରି ଓ ଧଉଳୀର ଇତିହାସରେ ବିଶଦ ଭାବରେ ବର୍ଣ୍ଣିତ ହୋଇଅଛି ।) ଭୁବନେଶ୍ୱରର ବୌଦ୍ଧ ଲୋକମାନଙ୍କ ମଧ୍ୟରେ ସେମାନେ ପ୍ରଚାର କାର୍ଯ୍ୟ କରୁଥିଲେ ।

ଶିଳାବଂଶ ରାଜାମାନେ କରବଂଶ ରାଜାମାନଙ୍କ ପରି ବିଶେଷ କ୍ଷମତାଶାଳୀ ନଥିଲେ । ସେମାନେ ଅନେକ କାଳପର୍ଯ୍ୟନ୍ତ କରବଂଶୀୟ ରାଜାମାନଙ୍କର ସମସାମୟିକ ଥିଲେ ଓ ସେମାନଙ୍କର ପରାଧୀନତା ସାମୟିକ ସ୍ୱୀକାର କରିଥିବା ଜଣାଯାଏ । କିନ୍ତୁ ୩୦୦ ଗୁପ୍ତାବ୍ଦରେ ରାଜତ୍ୱ କରୁଥିବା ମଧ୍ୟମରାଜ ଧର୍ମରାଜ ପୁରୀ ଅଂଚଳର ଅଧିକାଂଶ ରାଜ୍ୟଶାସନ କରୁଥିଲେ । ସେମାନେ ଶୈବଧର୍ମାବଲମ୍ୱୀ ଥିଲେ । ସେମାନଙ୍କ ସମୟରେ ଭୁବନେଶ୍ୱରରେ ଶୈବଧର୍ମର କୌଣସି କୀର୍ତ୍ତି ହୋଇଥିବାର ଅଦ୍ୟାପି ଜଣାଯାଇନାହିଁ । ତଥାପି ପର୍ଶୁରାମେଶ୍ୱର ଦ୍ୱିତୀୟ ମନ୍ଦିର ଏହି ସମୟର କୀର୍ତ୍ତି ବୋଲି ମନେହୁଏ । କେଶରୀବଂଶର ପ୍ରତିଷ୍ଠା ପର୍ଯ୍ୟନ୍ତ ଭୁବନେଶ୍ୱର ପ୍ରଧାନ ବୌଦ୍ଧକ୍ଷେତ୍ର ଥିଲା । ଏଠାରେ ବ୍ରାହ୍ମଣ୍ୟଧର୍ମର ସାମୟିକ ପ୍ରଭାବ ପଡ଼ିଥିଲେ ମଧ୍ୟ ଭୁବନେଶ୍ୱରରୁ କେତେକ ବୌଦ୍ଧକୀର୍ତ୍ତି ଆବିଷ୍କୃତ ହୋଇଅଛି । ରାମେଶ୍ୱର କୁଣ୍ଡର ଉତ୍ତର ଦିଗରେ ପଡ଼ିଥିବା ବିରାଟ ଚିତ୍ର ଘଣ୍ଟିଶିଳା ବା (Bell - Capital) ଗୋଟିଏ ବୌଦ୍ଧସ୍ତମ୍ଭ ଦେହରେ ରକ୍ଷିତ ହୋଇଥିଲା ବୋଲି ଐତିହାସିକ ମାନଙ୍କର ମତ । ଏହାର ଉଚ୍ଚତା ୪ ଫୁଟ ୫ ଇଞ୍ଚ ଓ ପରିଧି ୧୯ ଫୁଟ । ଏହା ଉପର ଭାଗରେ ସମତଳ କେବଳ ଧାରାରେ ଟିକିଏ ଉଚ୍ଚା ଓ

ଥାଳୀ ପରି ଦେଖାଯାଏ । ଏହାକୁ ଦେଖିଲେ ସ୍ପଷ୍ଟ ଜଣାଯାଏ ଯେ ଏହା ଉପରେ କୌଣସି ମୂର୍ତ୍ତି ସ୍ଥାପିତ ହୋଇଥିଲା । ଅଁଳା ଅଂଶ ତଳେ ପଥରଚକ ଚାରିପାଖରେ ଲତା, ପୁଷ୍ପ ଓ ଜୀବମୂର୍ତ୍ତି ଖୋଦିତ ହୋଇଅଛି । ଏହାର ତଳପାଖରେ ଖୋପ ଅଛି । ଏହି ଖୋପ ଦ୍ୱାରା ଏହା ସ୍ତମ୍ଭର ଅଗ୍ରଭାଗରେ ରକ୍ଷିତ ହୋଇଥିଲା । ସ୍ତମ୍ଭଟି ସମ୍ଭବତଃ ଗୋଲାକାର (Hemispherical) ଥିଲା । ଏହା ତଳ ଓ ଉପରିଭାଗର ପରିଧି ୩ ଫୁଟ ୮/୧୦ ଇଞ୍ଚ । ଏହାକୁ ଦେଖି ସ୍ତମ୍ଭର ଲମ୍ବ ଅନୁମାନ କରାଯାଇପାରେ । ଅଶୋକଙ୍କର ବୋଖରାରୁ ପ୍ରାପ୍ତ ସର୍ବୋଚ୍ଚ ଚିତ୍ରଘଣ୍ଟିଶିଳାର ଉଚ୍ଚତା ୨ ଫୁଟ ୧୦ ଇଞ୍ଚ । କିନ୍ତୁ ପୀଠ ଓ ସ୍ତମ୍ଭ ୩୮ ଫୁଟ । ଏହି ଅନୁପାତରେ ଏହାର ଉଚ୍ଚତା ୪୪ ଫୁଟ ହେବ । ସାଧାରଣତଃ ବୌଦ୍ଧ ଯୁଗରେ ଏହି ଦୁଇପ୍ରକାର ସ୍ତମ୍ଭ ନିର୍ମାଣ ହେଉଥିଲା । ଯେକୌଣସି ପ୍ରକାର ଗଣନା କଲେ ମଧ ଏହାର ପୀଠ ଓ ସ୍ତମ୍ଭ ୪୦ ଫୁଟରୁ ଅଧିକ ଥିଲା ।

ରାମେଶ୍ୱର ଚିତ୍ରଘଣ୍ଟିଶିଳା ଅଶୋକଙ୍କ ବୋଖରା ଚିତ୍ରଘଣ୍ଟିଶିଳାର ଅବିକଳ ପ୍ରତିକୃତି । ଏହାର ଉପର ଭାଗର ଥାଳୀପରି ଖୋପରେ ଅଶୋକଙ୍କ ସ୍ତମ୍ଭରେ ଥିବା ସିଂହ, ବୃଷଭ ବା ହାତୀ ମୂର୍ତ୍ତି ରକ୍ଷିତ ହୋଇଥିଲା । ଏହାର ଉପରିସ୍ଥ ମୂର୍ତ୍ତି ସ୍ତମ୍ଭଭାଗ ଓ ପୀଠାଂଶ ବର୍ତ୍ତମାନ ମିଳୁନାହିଁ । ଏହି ବିରାଟ ସ୍ତମ୍ଭ ଭୁବନେଶ୍ୱରର କେଉଁ ଅଂଶରେ ସ୍ଥାପିତ ହୋଇଥିଲା ତାହା କହିବା ବର୍ତ୍ତମାନ ସମ୍ଭବ ନୁହେଁ । କିନ୍ତୁ ତୋଷଳୀ ବା ଧଉଳୀ ପଥରେ ଭୁବନେଶ୍ୱରର କୌଣସି ଅଂଶରେ ଏହା ସ୍ଥାପିତ ହୋଇଥିଲା । ପରବର୍ତ୍ତୀ କାଳରେ ବେଦ-ବୁଦ୍ଧ ଯୁଦ୍ଧ ସମୟରେ ସ୍ତମ୍ଭଟି କୌଣସି ହିନ୍ଦୁ ନରପତିଙ୍କଦ୍ୱାରା ଧ୍ୱସ୍ତ ହୋଇଅଛି । ଭାସ୍କରେଶ୍ୱରର ବିରାଟ ଲିଙ୍ଗକୁ ଏହି ସ୍ତମ୍ଭର ଭଗ୍ନାବଶେଷ ବୋଲି ଅନୁମାନ କରାଯାଏ । ଅନ୍ୟ କେତେକ ଏହି ମତ ଗ୍ରହଣ କରନ୍ତି ନାହିଁ । କାରଣ, ଲିଙ୍ଗ ଖଡ଼ିଆ କଳା ଓ ଚିକ୍କଣ କିନ୍ତୁ ଏହା ବାଲିଆ କଳା ଓ ବଗଡ଼ା ପୁନଶ୍ଚ ଭାସ୍କରେଶ୍ୱର ଲିଙ୍ଗର ମୂଳାଂଶ ଅଶୋକ ସ୍ତମ୍ଭ ପରି ମସୃଣ ନୁହେଁ । ଲିଙ୍ଗର ପରିଧି ମଧରେ ଏହାର ତଳ ଖୋପର ପରିଧି ସହିତ ଗାଣିତିକ ହିସାବରେ ମେଳଖାଉ ନାହିଁ ।) × × × ×

ଅନ୍ୟ ଜଣେ (ପ୍ରସିଦ୍ଧ ଶିଳ୍ପଶାସ୍ତ୍ରଜ୍ଞ) ଏହା ଅଶୋକଙ୍କ ସମୟର ନୁହେଁ ବୋଲି କହନ୍ତି । କାରଣ ତାଙ୍କ ମତରେ ଅଶୋକକାଳୀନ ଚିତ୍ରଘଣ୍ଟିଶିଳାର ଚକିପଥର ଦେହରେ ଲତା କାମ ଦେଖାଯାଏ ନାହିଁ । ଏହା ଶୁଙ୍ଗକାଳୀନ ଚିତ୍ରଘଣ୍ଟିଶିଳା ସହିତ

ଅନେକ ସାମଞ୍ଜସ୍ୟ ଅଛି । ତେଣୁ ତାଙ୍କ ମତରେ ଏହା ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଶତାବ୍ଦୀର । ଭାସ୍କରେଶ୍ୱରର ବିରାଟ ଲିଙ୍ଗକୁ ଏହି ସ୍ତମ୍ଭର ଭଗ୍ନାବଶେଷ ବୋଲି ଅନୁମାନ କରାଯାଏ । ଅନ୍ୟ କେତେକ ଏହି ମତ ଗ୍ରହଣ କରନ୍ତିନାହିଁ ।

ଏହା ବିଷୟରେ ଦୁଇପ୍ରକାର ମତ ଶୁଣାଯାଏ । ରାଜେନ୍ଦ୍ରଲାଲ ମିତ୍ରଙ୍କ ମତବାଦୀମାନେ ଏହା ଅଶୋକସ୍ତମ୍ଭ ବୋଲି ନାନାପ୍ରକାର ଯୁକ୍ତି କରନ୍ତି । ଅପରପକ୍ଷ ଏହା ପରବର୍ତ୍ତୀକାଳର ଭାସ୍କରେଶ୍ୱର ନିକଟବର୍ତ୍ତୀ ସ୍ଥାନରୁ ଆବିଷ୍କୃତ ରେଲିଙ୍ଗମାନଙ୍କର ଅଂଶବୋଲି ନିର୍ଦ୍ଦେଶ କରନ୍ତି । କିନ୍ତୁ ଏହା ଗୋଟିଏ ବୌଦ୍ଧସ୍ତମ୍ଭର ଭଗ୍ନାବଶେଷ ବୋଲି ସର୍ବବାଦୀସମ୍ମତ ।

ରାମେଶ୍ୱର ନିକଟରେ ଥିବା କୁଣ୍ଡର ନାମ ରାମକୁଣ୍ଡ ନ ହୋଇ ଅଶୋକ କୁଣ୍ଡ ହୋଇଛି । ପ୍ରାଚୀନ କପିଳସଂହିତାରେ ଏହାର ନାମ ଅଶୋକଝର । (ଅଶୋକଝରବିଖ୍ୟାତଂ ତୀର୍ଥଂ ପାପପ୍ରଣାଶନଂ) ଏଠାରେ ଅନୁଷ୍ଠିତ ରଥଯାତ୍ରା ଅଶୋକାଷ୍ଟମୀ ଦିନ ଅନୁଷ୍ଠିତ ହୁଏ । ରାମେଶ୍ୱରର ସମସ୍ତ କୀର୍ତ୍ତିରେ ଅଶୋକଙ୍କର ନାମ ସଂଯୁକ୍ତ (ଏହା ଅଶୋକ କଳିକା ନୁହେଁ । ଏହାର ଏପରି ନାମ ହୋଇନଥିଲା; ଏହା ହିନ୍ଦୁର କଳ୍ପନା) । ମଗଧରାଜ ଅଶୋକଙ୍କର ପବିତ୍ର ନାମ ଯୋଗୁ ଏହି ଝରର ନାମ ଅଶୋକଝର ଓ ରଥଯାତ୍ରାର ନାମ ଅଶୋକାଷ୍ଟମୀ । (ଅଶୋକାନୁଶାସନ ମାନଙ୍କରୁ ଜଣାଯାଏ ଯେ ଅଶୋକଙ୍କ ସମୟରେ ରଥଯାତ୍ରା ଓ ବିମାନଯାତ୍ରା ବିଶେଷ ଭାବରେ ପ୍ରଚଳିତ ହୋଇଥିଲା, ତେଣୁ ଭୁବନେଶ୍ୱରର ରଥଯାତ୍ରା ସେହି ସମୟରୁ ପ୍ରଚଳିତ ଥିବା ଅସମ୍ଭବ ନୁହେଁ ।) କେବଳ ଲତାକାମ ଥିବାରୁ ଏହା ଅଶୋକ ସମୟର ନୁହେଁ ବୋଲି କହିବା ସମୀଚୀନ ନୁହେଁ । ଏହି ସମସ୍ତ କାରଣରୁ ଏହା ଅଶୋକକୀର୍ତ୍ତି ବୋଲି ନିଶ୍ଚିତ ରୂପେ ନିର୍ଣ୍ଣୀତ ହୋଇପାରେ ।

**ଭାସ୍କରେଶ୍ୱର ଶିବଲିଙ୍ଗ**

ପ୍ରଥମେ ରାଜେନ୍ଦ୍ରଲାଲ ମିତ୍ର ଏହାକୁ ଗୋଟିଏ ଅଶୋକ ଲାଟର ଭଗ୍ନାବଶେଷ ବୋଲି ନିର୍ଦ୍ଦେଶ କରିଥିଲେ । ଏହାର ଉଚ୍ଚତା (ପୂର୍ବପୃଷ୍ଠ) ଭୂମିଠାରୁ ପ୍ରାୟ ୧୦ଫୁଟ ଓ ପରିଧି ପ୍ରାୟ ୧୨ ଫୁଟ । ଏହାର ଉପରଭାଗ ଦେଖିଲେ ଏହା ଗୋଟିଏ ସ୍ତମ୍ଭର ଭଗ୍ନାବଶେଷ ବୋଲି ନିଃସନ୍ଦେହରେ କୁହାଯାଇପାରେ । ଏହା ପୂର୍ବେ ଗୋଟିଏ ସ୍ତମ୍ଭ ଥିଲା ଓ ପରବର୍ତ୍ତୀ କାଳରେ କୌଣସି ହିନ୍ଦୁ ନରପତିଙ୍କ ଦ୍ୱାରା

ଏହା ଉପରେ ମନ୍ଦିର ନିର୍ମିତ ହୋଇ ଏହା ଲିଙ୍ଗ ରୂପରେ ପୂଜିତ ହେଲା । ତେଣୁ ଏହା ଗୋଟିଏ ବୌଦ୍ଧ ସ୍ତମ୍ଭ । ଭାରତର ସବୁ ପ୍ରଦେଶରେ ହିନ୍ଦୁଧର୍ମର ପୁନରୁତ୍ଥାନ ଯୁଗରେ ଅଧିକାଂଶ ବୌଦ୍ଧକୀର୍ତ୍ତି ହିନ୍ଦୁମାନଙ୍କ ଦ୍ୱାରା ପୂଜିତ ହୋଇଥିଲା । କାଶୀର ଲାଟଭୈରବ ଗୋଟିଏ ଅଶୋକ ଲାଟର ଭଗ୍ନାବଶେଷ । କିନ୍ତୁ ପରବର୍ତ୍ତୀ କାଳରେ ଏହା ଲିଙ୍ଗ ଆକାର ଧାରଣ କରିଥିଲା । ଏହା ତୋଷଳୀ-ଧଉଳୀଠାରୁ ପ୍ରାୟ ୩ ମାଇଲ ଦୂରରେ । ଅଶୋକ କଳିଙ୍ଗ ଯୁଦ୍ଧରେ ଜୟଲାଭ କରି ଏହି ଅଞ୍ଚଳରେ ଅନେକ କୀର୍ତ୍ତି ନିର୍ମାଣ କରିଥିଲେ । ଅଶୋକାନୁଶାସନ, କଳିଙ୍ଗାନୁଶାସନରୁ ମେଳୀ-ଲେଖର ନକଲ ସବୁ ଦେଖିଲେ ଏ ବିଷୟରେ କାହାରି ମତଦ୍ୱୈଧ ରହିବନାହିଁ । ଚୈନିକ ପରିବ୍ରାଜକ ତାମ୍ରଲିପ୍ତିଠାରୁ କୋଙ୍ଗଦପଥରେ କେତେକ ବୌଦ୍ଧସ୍ତୂପ ଓ ସ୍ତମ୍ଭ ଦେଖିଥିଲେ । ପାଟଳୀପୁତ୍ରଠାରୁ ଲୁମ୍ବିନୀ ଉଦ୍ୟାନ ଓ ସାରନାଥ ପର୍ଯ୍ୟନ୍ତ ଦୁଇଟି ରାଜପଥ ଥିଲା । ସେମାନଙ୍କ ନିକଟରେ ଅଦ୍ୟାପି ଅନେକ ଅଶୋକସ୍ତମ୍ଭ ଦେଖାଯାଏ । ସେହିପରି ତାମ୍ରଲିପ୍ତିଠାରୁ ତୋଷଳୀ ପଥରେ କେତୋଟି ଅଶୋକସ୍ତମ୍ଭ ପ୍ରୋଥିତ ହୋଇଥିବା ସଂପୂର୍ଣ୍ଣ ସମ୍ଭବପର । ଭାସ୍କରେଶ୍ୱର ଶିବଲିଙ୍ଗ ସେଥିମଧ୍ୟରୁ ଗୋଟିଏ । ଏହା ପରବର୍ତ୍ତୀ କାଳରେ ଶିବଲିଙ୍ଗ ରୂପେ ପୂଜିତ ହୋଇଥିଲା । କେବଳ ଏହାର ନିମ୍ନାଂଶର ଅମସୃଣତା ବୋଲି ଦେଖି ଏହା ଅଶୋକସ୍ତମ୍ଭ ନୁହେଁ ବୋଲି କହିବା ଯୁକ୍ତିଯୁକ୍ତ ନୁହେଁ । ଏହା କାରିଗରର ଦୋଷ ହୋଇପାରେ ।

ସମ୍ଭବତଃ ରାମେଶ୍ୱର ଚିତ୍ରଘଣ୍ଟିଶିଳା (Bell Capital)ଏହାର ସଂପର୍କ ଥିଲା କାରଣ ଏହାର ତଳ ପାଖର ଖାପର ବ୍ୟାସ ୩ ଫୁଟ ୩ $\frac{୮}{୧୦}$ ଇଞ୍ଚ = ୩ ଫୁଟ ୩- $\frac{୪}{୫}$ = ୩ $\frac{୧୯}{୫×୧୨}$ ଫୁଟ = ୩ $\frac{୧୯}{୬୦}$ ଫୁଟ = $\frac{୧୯୯}{୬୦}$ ଫୁଟ ବ୍ୟାସ ।ତାହାହେଲେ ପରିଧି $\frac{୧୯୯}{୩୦}$ × $\frac{୧୧}{୭}$ = $\frac{୨୧୮୯}{୨୧୦}$ = ୧୦ $\frac{୯}{୧୦}$ ଫୁଟ ପ୍ରାୟ । ତାହାହେଲେ ସ୍ତମ୍ଭର ଅଗ୍ରଭାଗର ପରିଧି ୧୦ $\frac{୯}{୧୦}$ ଫୁଟ । ଭାସ୍କରେଶ୍ୱର ଲିଙ୍ଗର ପରିଧି ୧୨ ଫୁଟ । ସାଧାରଣତଃ ସ୍ତମ୍ଭଗୁଡ଼ିକ କ୍ରମଶଃ ସରୁ ହୋଇଥାଏ । ଏପରି ଅବସ୍ଥାରେ ୪୦ ଫୁଟ ଅଧିକ ଉଚ୍ଚ ଗୋଟିଏ ସ୍ତମ୍ଭର ଅଗ୍ରଭାଗ $\frac{୧}{୬୦}$ ଫୁଟ କମ୍‌ହେବା ସଂପୂର୍ଣ୍ଣ ସମ୍ଭବପର । ତେଣୁ ଗାଣିତିକ ହିସାବରେ ଏଠାରେ ମେଳ ଖାଉଛି । ଖଡ଼ିଆକଳା ପଥର ସାଧାରଣତଃ ବାଲିଆକଳାଠାରୁ ଟାଣ । ସ୍ତମ୍ଭ ଉପରେ ବିଶେଷ ଆଘାତ ଲାଗିପାରେ କିନ୍ତୁ ଚିତ୍ରଘଣ୍ଟି ଶିଳା ଅତି ଉଚ୍ଚରେ ଥାଏ । ତେଣୁ ଏହାକୁ ବଗଡ଼ାକଳା କଲେ କୌଣସି କ୍ଷତି ନାହିଁ । ତେଣୁ ସ୍ତମ୍ଭକୁ ଖଡ଼ିଆକଳାରେ କରି ଏହାକୁ ବଗଡ଼ା

କଳାରେ କଲେ କାମର ସୌନ୍ଦର୍ଯ୍ୟ ହାନି ହୁଏ ନାହିଁ । ତେଣୁ ଭାସ୍କରେଶ୍ୱର ଶିବଲିଙ୍ଗ ସହିତ ଏହା ସଂଯୁକ୍ତ ଥିଲା ବୋଲି ମନେହୁଏ ।

ଯେଉଁ ଭୁବନେଶ୍ୱର ଏକ ସମୟରେ ସମଗ୍ର ଭାରତବର୍ଷରେ ବୌଦ୍ଧଧର୍ମର ଗୋଟିଏ ପବିତ୍ରପୀଠ ଥିଲା, ଯାହାର ଚତୁର୍ଦ୍ଦିଗସ୍ଥ ଶତଶତ ଗୁମ୍ଫାମାନଙ୍କରେ ଦେବପ୍ରିୟ ପ୍ରିୟଦର୍ଶୀ ଅଶୋକଙ୍କ ସମୟରୁ ଗଙ୍ଗବଂଶ ରାଜତ୍ୱ ପର୍ଯ୍ୟନ୍ତ ଅସଂଖ୍ୟ ବୌଦ୍ଧ, ଶ୍ରମଣ, ଆଚାର୍ଯ୍ୟ ବାସ କରୁଥିଲେ, ଯାହାର ଦର୍ଶନ ନିମିତ୍ତ ଭାରତବର୍ଷର ନାନାଅଞ୍ଚଳରୁ ବୌଦ୍ଧଯାତ୍ରୀମାନେ ଆଗମନ କରୁଥିଲେ, କାଳଚକ୍ରର ଭୀଷଣ ଆବର୍ତ୍ତରେ ପଡ଼ି ସେଠାରୁ ବୌଦ୍ଧଧର୍ମର ଅସ୍ତିତ୍ୱ ସମୂଳେ ନଷ୍ଟ ହୋଇଗଲା । ଭାରତ ଇତିହାସରେ ଏହାହିଁ ଗୋଟିଏ ଆଶ୍ଚର୍ଯ୍ୟ ଘଟଣା । ଏଠାରୁ ବୌଦ୍ଧଧର୍ମ ଲୁପ୍ତ ହୋଇଥିଲେ ମଧ୍ୟ ଏହା ହିନ୍ଦୁଧର୍ମକୁ ବିଶେଷ ଭାବରେ ପ୍ରଭାବିତ କରିଥିଲା । ଆମ୍ଭେମାନେ ତାହାର ବହୁଳ ଦର୍ଶନ ଲୋକାଚାର ଓ ମହାପ୍ରସାଦ ପ୍ରଚଳନ ଇତ୍ୟାଦିରେ ଦେଖିବାକୁ ପାଉ । ଭୁବନେଶ୍ୱରର କେତେକାଂଶରେ ଅଦ୍ୟାପି ଅନେକ ବୌଦ୍ଧକୀର୍ତ୍ତି ଅନାବିଷ୍କୃତ ଅବସ୍ଥାରେ ପଡ଼ିରହିଛି ।

**ବୌଦ୍ଧ ରେଲିଙ୍ଗ :** ୧୯୨୬ ସାଲରେ ଲଖ୍ନୌର ଅଧ୍ୟାପକ ରାଧାକୁମୁଦ ମୁଖାର୍ଜି ପ୍ରଥମେ ଭାସ୍କରେଶ୍ୱର ଶିବଲିଙ୍ଗର ଉତ୍ତରରୁ ଗୋଟିଏ ରେଲିଙ୍ଗ ଆବିଷ୍କାର କରିଥିଲେ । ଏହା ରେଲିଙ୍ଗବାଡ଼ର ଗୋଟିଏ କୋଣଖୁଣ୍ଟି ଥିଲା(Corner-post) । ଖୁଣ୍ଟିର ଲଗାଲଗି ଦୁଇ ପାଖରେ କାକୁଡ଼ିମଞ୍ଜି ପରି ଦୁଇଟି ଖୋପ ଥିଲା ଓ ଅନ୍ୟ ଦୁଇପାଖରେ ଦୁଇଟି ପଗଡ଼ିଧାରୀ ଲୋକ ପୂଜା କଲାପରି ଦିଶୁଥିଲେ । ସେହି ବର୍ଷର ଜୁନ୍‌ମାସରେ ସେହିସ୍ଥାନର ୪୦ ହାତ ଦୂରରୁ ପୂର୍ବୋକ୍ତ କୋଣଖୁଣ୍ଟିର ନିମ୍ନାଂଶ ମିଳିଥିଲା । ଧୀରେନ୍ଦ୍ରନାଥ ବସାକ ଆଉ ଖଣ୍ଡିଏ ରେଲିଙ୍ଗ ପାଇଥିଲେ । ତାହାର ଦୁଇ ବିପରୀତ ପାଖରେ ଖୋପ ଥିଲା ଓ ଅନ୍ୟ ଦୁଇ ପାଖରେ ପ୍ରାର୍ଥନାରତ ଦୁଇଟିମୂର୍ତ୍ତି ଖୋଦିତ ହୋଇଥିଲା । ଭାରତରୁ ଆବିଷ୍କୃତ ସର୍ବପ୍ରାଚୀନ ରେଲିଙ୍ଗ୍ ତୃତୀୟ ଶତାବ୍ଦୀର । କଟକ ଜିଲ୍ଲାର ଲଳିତଗିରି ପାହାଡ଼ ନିକଟରୁ ଆନୁମାନିକ ଦଶମ ଶତାବ୍ଦୀର ରେଲିଙ୍ଗ୍ ମିଳିଛି । ଏଥିରୁ ଜଣାଯାଏ ଯେ, ଦଶମ ଶତାବ୍ଦୀ ପର୍ଯ୍ୟନ୍ତ ଉତ୍କଳରେ ବୌଦ୍ଧ ରେଲିଙ୍ଗ ନିର୍ମାଣ ପ୍ରଥା ପ୍ରଚଳିତ ଥିଲା । ଭୁବନେଶ୍ୱର ଖୁଣ୍ଟିରେ ଥିବା ଚିତ୍ରଗୁଡ଼ିକ ସର୍ବପ୍ରାଚୀନ । ଖୁଣ୍ଟରେ ଥିବା ମୂର୍ତ୍ତିଗୁଡ଼ିକ ମୁଣ୍ଡରେ ପଗଡ଼ି ଅଛି । ପଗଡ଼ିର ଗଣ୍ଠି ବରହୁତ୍ ବ୍ୟବହୃତ ପଗଡ଼ି ଗଣ୍ଠିପରି । ହାତରେ ହସ୍ତତ୍ରାଣ

(Glove), ପାଦରେ ବୁଟ୍ ଯୋତା ଓ ଦେହରେ ଛୋଟ ବସ୍ତ୍ର । ଏହି ମୂର୍ତ୍ତିଗୁଡ଼ିକର ରାଣୀହଂସପୁରର ଦ୍ୱାରପାଳମୂର୍ତ୍ତି ସହିତ ବିଶେଷ ସାମଞ୍ଜସ୍ୟ ଅଛି । ଅଞ୍ଜଳିବଦ୍ଧ ହସ୍ତଦ୍ୱୟ ଛାତି ପାଖକୁ ନ ରହି ଟିକିଏ ଛାଡ଼ି ରହିଛି । ଏହା ବରହୁତ (ଖ୍ରୀପୂ : ଦ୍ୱିତୀୟ ଶତାବ୍ଦୀ) ପରବର୍ତ୍ତୀ କୀର୍ତ୍ତି ବୋଲି ମନେହୁଏ ।

ଭାସ୍କରେଶ୍ୱର ଶିବଲିଙ୍ଗ ନିକଟରେ ଗୋଟିଏ ମାଟିଗଦା ଅଛି । ସେଠାରେ ଏ ସମସ୍ତ ପଦାର୍ଥ ମିଳିଥିଲା । ଭାସ୍କରେଶ୍ୱର ଗୋଟିଏ ପ୍ରାଚୀନ ବୌଦ୍ଧସ୍ତମ୍ଭର ଭଗ୍ନାବଶେଷ, କିନ୍ତୁ ଏହା ଅଶୋକସ୍ତମ୍ଭ ନୁହେଁ । କାରଣ, ଅଶୋକଙ୍କ ପ୍ରତ୍ୟେକ ସ୍ତମ୍ଭ ଦର୍ପଣ ପରି ଚିକ୍କଣ । କିନ୍ତୁ ଲିଙ୍ଗର ନିମ୍ନାଂଶ ମସୃଣ ନୁହେଁ । କିନ୍ତୁ ଅଶୋକଙ୍କ ଅନୁକରଣରେ କୌଣସି ବୌଦ୍ଧରାଜା ଏପରି ଏହି ବିରାଟ ସ୍ତମ୍ଭ ନିର୍ମାଣ କରିଥିଲେ । ଏହାର ଚତୁର୍ଦ୍ଦିଗ ରେଲିଙ୍ଗବାଡ଼ ଦିଆଯାଇଥିଲା । ସେଥିରୁ କେବଳ ଦୁଇଟି ଖୁଣ୍ଟି ମିଳିଅଛି । ଆହୁରି ଅନେକ ଖୁଣ୍ଟି ଏଠାରେ ପୋତି ହୋଇ ରହିଅଛି ବା କାଳକ୍ରମେ ନଷ୍ଟ ଓ ଅପହୃତ ହୋଇଅଛି । ସ୍ତମ୍ଭ ଓ ଲିଙ୍ଗଗୁଡ଼ିକ ଗୋଟିଏ ସ୍ଥାନରେ ଆଜିପର୍ଯ୍ୟନ୍ତ ଥିବାରୁ ନିଃସନ୍ଦେହରେ କୁହାଯାଇପାରେ ଯେ ସ୍ତମ୍ଭଟି ସେହି ପ୍ରାଚୀନଯୁଗରୁ ସେଠାରେ ଅଛି । ପରବର୍ତ୍ତୀ କାଳରେ ଏହା ଶିବଲିଙ୍ଗ ରୂପେ ପୂଜିତ ହେଲା ଓ ଲିଙ୍ଗବାଡ଼ ଭାଙ୍ଗିଗଲା । ସମ୍ଭବତଃ ଏହି ବାଡ଼ର କେତେକ ପଥର ମନ୍ଦିର ନିର୍ମାଣ କାର୍ଯ୍ୟରେ ବ୍ୟୟିତ ହୋଇଥିଲା । ଏହା ଖ୍ରୀଷ୍ଟପୂର୍ବ ୨ୟ ଶତାବ୍ଦୀର ଓ ଭୁବନେଶ୍ୱରର ଗୋଟିଏ ପ୍ରାଚୀନତମ ବୌଦ୍ଧ ନିଦର୍ଶନ । ଏହା ଉଦୟଗିରି କୀର୍ତ୍ତିର ସମସାମୟିକ ହୋଇପାରେ । (*Bihar and Orissa Research Journal - March-June 1929 and Some ancient remains from Bhubaneswar by Nirmal Kumar Basu*)

ଏହା ଅଶୋକସ୍ତମ୍ଭ ହେଉ ବା ଖ୍ରୀଷ୍ଟପୂର୍ବ ୨ୟ ଶତାବ୍ଦୀର ସ୍ତମ୍ଭ ହେଉ ଏହା ସୁନିଶ୍ଚିତ ଯେ ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଶତାବ୍ଦୀ ସୁଦ୍ଧା ଭୁବନେଶ୍ୱରର ଏହି ଅଞ୍ଚଳରେ ଅନେକ ବୌଦ୍ଧ ବାସ କରୁଥିଲେ ଓ ଏହା ଗୋଟିଏ ବୌଦ୍ଧକେନ୍ଦ୍ର ଥିଲା । ଭାସ୍କରେଶ୍ୱର ଲିଙ୍ଗର କିଛି ଦୂରରେ କେତୋଟି ଛୋଟ ଛୋଟ ଗୁମ୍ଫା ଅଛି । ତାହାକୁ ଲୋକେ ପାଣ୍ଡବଗୁମ୍ଫା କହନ୍ତି । ଏଗୁଡ଼ିକ ବୌଦ୍ଧଗୁମ୍ଫା; କାରଣ ଧଉଳୀର ବୌଦ୍ଧଗୁମ୍ଫାମାନ ପରବର୍ତ୍ତୀ କାଳରେ ପଞ୍ଚପାଣ୍ଡବଗୁମ୍ଫା ନାମରେ ଅଭିହିତ ହୋଇଥିଲା । ଏହି ଗୁମ୍ଫା ନିକଟରେ ଅନେକ ଖାଲ ଦେଖାଯାଏ । ଏହା ଜଳପଥ ପରି ଜଣାଯାଏ । ପୂର୍ବେ ଏହା ନିକଟରେ ଧଉଳୀଠାରୁ ଗୋଟିଏ ପଥ ନରାଜ ପର୍ଯ୍ୟନ୍ତ ଯାଇଥିଲା । ଯଦି

ରାମେଶ୍ୱର ଚିତ୍ରଘଣ୍ଟି ଶିଳାର ଏହି ସ୍ତମ୍ଭ ସହିତ କୌଣସି ସଂପର୍କ ନଥିବାର କୁହାଯାଏ, ତାହାହେଲେ ଏହା ଆଉ ଗୋଟିଏ ସ୍ତମ୍ଭ ଉପରେ ପ୍ରତିଷ୍ଠିତ ହୋଇଥିବା ସୁନିଶ୍ଚିତ । ସମ୍ଭବତଃ ରାମେଶ୍ୱର ନିକଟରେ ମଧ ଆହୁରି ଗୋଟିଏ ସ୍ତମ୍ଭ ଥିଲା । ରାମେଶ୍ୱର ନିକଟବର୍ତ୍ତୀ ସ୍ଥାନରେ ବୌଦ୍ଧମାନେ ବାସ କରୁଥିଲେ । ଭୁବନେଶ୍ୱରର ପ୍ରାଚୀନତମ ଶିବମନ୍ଦିର ସେଠାରେ ନିର୍ମିତ ହୋଇଥିଲା । ବୌଦ୍ଧଧର୍ମବିରୋଧୀ ଯଯାତିକେଶରୀ ଏଠାରେ ରାଜପ୍ରାସାଦ ନିର୍ମାଣ କରି ବାସ କରୁଥିଲେ ।

ରାମେଶ୍ୱରଠାରୁ ଅଲାବୁକେଶ୍ୱର, କେଦାରେଶ୍ୱର, ବାସୁଦେବ, ପୂର୍ବେଶ୍ୱର ଓ ଖରାଖିଆ ବୈଦ୍ୟନାଥଙ୍କ ମନ୍ଦିରକୁ ବିନ୍ଦୁ କରି ଗୋଟିଏ ରେଖା ଟାଣିଲେ ସେହି ରେଖାର ଉତ୍ତର ପୂର୍ବ ଦକ୍ଷିଣକୁ ଅନେକ ବୌଦ୍ଧକୀର୍ତ୍ତି ଥିବାର ଜଣାଯାଏ । ଏହାର ପଶ୍ଚିମ ଟାଙ୍ଗି ଓ ଏଠାରେ କୌଣସି ବୌଦ୍ଧକୀର୍ତ୍ତି ଥିବାର ଅନୁମାନ ହୁଏନାହିଁ । ଏହାର ପୂର୍ବରେ ଅନେକ କୁଦ ଅଛି । ସେଥି ମଧରୁ ପର୍ବତିଆକୁଦ, କାହାଲିଆ ଢିପ ଓ ଆଉ କେତେକ ହୁଡ଼ାର ନାମ ଉଲ୍ଲେଖଯୋଗ୍ୟ । ପର୍ବତିଆ କୁଦ ଗୋଟିଏ ସ୍ତୂପ ବୋଲି ମନେହୁଏ । ବଙ୍ଗଳାରେ ପାହାଡ଼କୁଦ ନାମକ ସ୍ଥାନ ତଳୁ ଗୋଟିଏ ସ୍ତୂପର ଭଗ୍ନାବଶେଷ ବାହାରିଥିଲା । ଏହାର ନିମ୍ନଦେଶ ଖୋଳାହେଲେ ଏହାର ଇତିହାସ ଜଣାଯାଆନ୍ତା ।

ଉପାଧିଆ, ଟିକରବାଡ଼ି, କଞ୍ଚ ମହାଭୋଇ ପ୍ରଭୃତିରୁ ଅନେକ ବୌଦ୍ଧକୀର୍ତ୍ତି ମିଳେ । ପରବର୍ତ୍ତୀ କାଳରେ ହିନ୍ଦୁରାଜାମାନେ ଏହି ପୂର୍ବାଂଶରେ ଅନେକ ବ୍ରାହ୍ମଣଶାସନ ବସାଇଥିଲେ । କପିଳେଶ୍ୱର ଗୋଟିଏ ପ୍ରଧାନ ବୌଦ୍ଧ ଗ୍ରାମଥିଲା ଓ ଏହି ଗ୍ରାମ ମଧ ଦେଇ ପୂର୍ବେ ଧଉଳୀଠାରୁ ଖଣ୍ଡଗିରି ପର୍ଯ୍ୟନ୍ତ ଗୋଟିଏ ରାସ୍ତା ଯାଇଥିଲା । ଏହି ରାସ୍ତାର ନିକଟବର୍ତ୍ତୀ ଡୁମୁଡୁମା, ଯାଗମରା, ପୋଖରୀପୁଟ ପ୍ରଭୃତି ଗ୍ରାମରେ ବୌଦ୍ଧମାନେ ବାସ କରୁଥିଲେ । ଏହା ପ୍ରଧାନ ବୌଦ୍ଧ ସମାଗମ ପଥ ଥିଲା । କପିଳେଶ୍ୱର ମଲ୍ଲିଆମାନେ ଭୁବନେଶ୍ୱରର ବୌଦ୍ଧ ଅଧିବାସୀ । ପରବର୍ତ୍ତୀ କାଳରେ ସେମାନେ ବ୍ରାହ୍ମଣ୍ୟଧର୍ମର ଅନ୍ତର୍ଭୁକ୍ତ ହୋଇଥିଲେ ।

**ରଥଯାତ୍ରା ସହିତ ଯୋଗୀମଠର ସମ୍ପର୍କ**

ଯୋଗୀମାନେ ବୌଦ୍ଧଧର୍ମାବଲମ୍ବୀ । ଭୁବନେଶ୍ୱରର ପାପନାଶିନୀ କୁଣ୍ଡ ନିକଟରେ ଥିବା ଯୋଗୀମଠ, ବୌଦ୍ଧ ଯୋଗୀମାନଙ୍କର ଗୋଟିଏ ପ୍ରଧାନ ପୀଠ ।

ମଲ୍ଲିଆମାନେ ସେହି ଯୋଗୀ ସଂପ୍ରଦାୟର ଗୋଟିଏ ଶାଖା ଭୁବନେଶ୍ୱରର ପୂର୍ବାଞ୍ଚଳରେ ସେମାନେ ବହୁଳ ଭାବରେ ବାସ କରନ୍ତି । ସେମାନେ ବୌଦ୍ଧ ହେଲେ ମଧ୍ୟ ରାଜା ସେମାନଙ୍କର ହିନ୍ଦୁଧର୍ମ ପ୍ରତି ଆସ୍ଥା ଓ ବିଶ୍ୱାସ ଦେଖି କପିଳେଶ୍ୱରଙ୍କର ସେବାପୂଜାରେ ନିଯୁକ୍ତ କରିଥିଲେ । ଯୋଗୀମାନଙ୍କ ପରି ଭିକ୍ଷା ସେମାନଙ୍କର ପ୍ରଧାନ ଅବଲମ୍ବନ । ଭୁବନେଶ୍ୱରରେ ଆଉ ବୌଦ୍ଧ ନାହାନ୍ତି କିମ୍ବା ଏହା ବୌଦ୍ଧ କେନ୍ଦ୍ର ନୁହେଁ । ତଥାପି ସଂକ୍ରାନ୍ତି, ଗ୍ରହଣ, ପରାଗ ଓ ଅନ୍ୟାନ୍ୟ ଶୁଭଦିନମାନଙ୍କରେ ଯୋଗୀମାନେ ଭୁବନେଶ୍ୱରକୁ ଭିକ୍ଷା କରିବାକୁ ଆସନ୍ତି । ଭୁବନେଶ୍ୱରର ଅସଂଖ୍ୟ ଉପାସକ ବୌଦ୍ଧମାନେ (ଗୃହୀ) ସେକାଳରେ ବୌଦ୍ଧଶ୍ରମଣ (ଯୋଗୀ)ମାନଙ୍କୁ ଭିକ୍ଷା ଦେଉଥିଲେ ।

ଆଜିକାଲି ମଧ୍ୟ ଏ ଅଞ୍ଚଳର ହିନ୍ଦୁମାନେ ହିନ୍ଦୁଧର୍ମ ଅନ୍ତର୍ଭୁକ୍ତ ଯୋଗୀମାନଙ୍କୁ ଭିକ୍ଷା ଦେବାକୁ ଧର୍ମର କାର୍ଯ୍ୟ ବୋଲି ମନେ କରନ୍ତି । ହିନ୍ଦୁଧର୍ମ ଦେହରେ ବୌଦ୍ଧଧର୍ମ କ୍ଷୀରନୀର ମିଶିଲା ପରି ନିଜର ଅସ୍ତିତ୍ୱ ମିଶାଇ ଦେଇଛି । ଯୋଗୀମାନେ ଆଜି ହିନ୍ଦୁ ହୋଇଗଲେଣି । ତଥାପି ସେମାନଙ୍କର ଭିକ୍ଷାଟନ ପ୍ରଥା ବୌଦ୍ଧଧର୍ମର କ୍ଷୀଣସ୍ମୃତି ଆମ୍ଭମାନଙ୍କ ମନରେ ଜାଗରିତ କରିଥାଏ । ହିନ୍ଦୁଧର୍ମର ପ୍ରଭାବ, କୌଶଳ ଓ ଚକ୍ରାନ୍ତ ମଧ୍ୟରେ ପଡ଼ି ବୌଦ୍ଧଧର୍ମ ଲୁପ୍ତ ହୋଇଯାଇଛି । କିନ୍ତୁ ଶତଶତ ବର୍ଷପରେ ମଧ୍ୟ ବୌଦ୍ଧଧର୍ମର ସ୍ମାରକସ୍ୱରୂପ ଏହି କେତେକ ବୌଦ୍ଧାବଶେଷ ଅଦ୍ୟାବଧି ଭୁବନେଶ୍ୱରରେ ରହିଅଛି ।

ଯଯାତିକେଶରୀ ଷଷ୍ଠ ଶତାବ୍ଦୀର ଶେଷ ଭାଗରେ ରାଜତ୍ୱ କରୁଥିଲେ । ସେ ପ୍ରଥମେ ଯାଜପୁରକୁ ନିଜର ରାଜଧାନୀ କରିଥିଲେ । ସେ ଉତ୍କଳରେ ବ୍ରାହ୍ମଣ୍ୟଧର୍ମର ବିଜୟଧ୍ୱଜା ଉଡ଼ାଇଥିଲେ । ତାଙ୍କ ସମୟକୁ ଖଣ୍ଡଗିରିଠାରୁ ଧଉଳୀପର୍ଯ୍ୟନ୍ତ ବିସ୍ତୃତ କ୍ଷେତ୍ର ଉତ୍କଳରେ ସର୍ବପ୍ରଧାନ ବୌଦ୍ଧପୀଠ ଥିଲା । ସେ ସମୟକୁ ଅବଶ୍ୟ ପର୍ଶୁରାମେଶ୍ୱର ଜାତୀୟ ମନ୍ଦିରମାନ ଏଠାରେ ନିର୍ମିତ ହୋଇଥିଲା । ଅସଂଖ୍ୟ ବୌଦ୍ଧକୀର୍ତ୍ତିମାନଙ୍କ ମଧ୍ୟରେ ଏମାନଙ୍କର ସଂଖ୍ୟା ନଗଣ୍ୟ । ବୌଦ୍ଧଧର୍ମର ମାହାତ୍ମ୍ୟ ଖର୍ବ କରିବା ପାଇଁ ଭୁବନେଶ୍ୱରକୁ ବ୍ରାହ୍ମଣଧର୍ମର ପ୍ରଧାନ ପୀଠ କରିବା ଆବଶ୍ୟକ ମନେକରି ଯଯାତି ତାଙ୍କ ରାଜତ୍ୱର ଶେଷକାଳକୁ ଭୁବନେଶ୍ୱର ଲିଙ୍ଗରାଜ ମନ୍ଦିରର ମୂଳଭିତ୍ତି ସ୍ଥାପନ କରିଥିଲେ ଓ ଏ ଅଞ୍ଚଳରେ ଅନେକ ବ୍ରାହ୍ମଣଙ୍କୁ ଭୂମିଦାନ କରିଥିଲେ । ସେହିଦିନୁ ଭୁବନେଶ୍ୱର ଉତ୍କଳର ଗୋଟିଏ ପ୍ରଧାନ ଶୈବକ୍ଷେତ୍ର ହେଲା । ଯଯାତିଙ୍କ ସମୟରୁ ଏକଜଟା କାମାର୍ଣ୍ଣବ ଦେବଙ୍କ ପର୍ଯ୍ୟନ୍ତ ପ୍ରାୟ ୬୦୦ ବର୍ଷ କାଳ ବ୍ରାହ୍ମଣ୍ୟଧର୍ମର

ଭୀଷଣ ଆକ୍ରମଣ ସହ୍ୟ କରି ପରିଶେଷରେ ବୌଦ୍ଧଧର୍ମ ଏ କ୍ଷେତ୍ରରୁ ଲୋପପାଇ ହିନ୍ଦୁଧର୍ମ ସହିତ ମିଶି ଯାଇଥିଲା । ଯଯାତିଙ୍କ ପରେ ଲଲାଟେନ୍ଦୁ ଜଣେ ପ୍ରଧାନ ବୌଦ୍ଧ ବିରୋଧୀ ରାଜା ଥିଲେ । ତାଙ୍କ ସମୟରେ ବେଦ ବୌଦ୍ଧ ଯୁଦ୍ଧ ହୋଇଥିଲା । ଅଦ୍ୟାପି ଏ ସ୍ଥାନର ଲୋକମାନଙ୍କ ମଧ୍ୟରେ ବେଦ-ବୁଦ୍ଧ ଯୁଦ୍ଧ ସମ୍ବନ୍ଧରେ ଅନେକ କିଂବଦନ୍ତୀ ପ୍ରଚଳିତ ଅଛି । ସେ ସମୟରେ ବୌଦ୍ଧଶ୍ରମଣମାନେ ଖଣ୍ଡଗିରି ଓ ଉଦୟଗିରି ଗୁମ୍ଫାମାନଙ୍କରେ ବାସ କରୁଥିଲେ । ଲଲାଟେନ୍ଦୁକେଶରୀ ବୌଦ୍ଧମାନଙ୍କର କ୍ଷମତା ହ୍ରାସ କରିବା ପାଇଁ ଖଣ୍ଡଗିରି ନିକଟବର୍ତ୍ତୀ ଯାଗମରା ଗ୍ରାମରେ ଗୋଟିଏ ବିରାଟ ଯଜ୍ଞ ଆରମ୍ଭ କରିଥିଲେ । ନାନା ଅଞ୍ଚଳରୁ ବୈଦିକ ବ୍ରାହ୍ମଣମାନେ ନିମନ୍ତ୍ରିତ ହୋଇଥିଲେ । କିନ୍ତୁ ବୌଦ୍ଧମାନେ ଦଳଦଳ ହୋଇ ଖଣ୍ଡଗିରି ଓ ଉଦୟଗିରିର ଗୁମ୍ଫାମାନଙ୍କରୁ ଓହ୍ଲାଇ ଯଜ୍ଞସ୍ଥାନରେ ଉପସ୍ଥିତ ହୋଇଥିଲେ । ଉଭୟ ଦଳ ମଧ୍ୟରେ ଭୀଷଣ ତର୍କଯୁଦ୍ଧ ଆରମ୍ଭ ହେଲା । ବୌଦ୍ଧମାନେ ଯଜ୍ଞକାର୍ଯ୍ୟରେ ନାନା ପ୍ରକାର ବିଘ୍ନ ଉତ୍ପାଦନ କରିବାରୁ ଯଜ୍ଞ ହୋଇପାରିଲା ନାହିଁ । ସେଠାରେ ଯାଗ ମାରା ହେବାରୁ ସେ ଗ୍ରାମର ନାମ ଯାଗମରା ହେଲା । ଏ ଘଟଣାର କେତେକ ଦିନପରେ ଲଲାଟେନ୍ଦୁ କେଶରୀ ଅନ୍ୟ ଏକ ଯଜ୍ଞ କରିବା ପାଇଁ ବିପୁଳ ଆୟୋଜନ କରିଥିଲେ ।

ଏଥର ବୌଦ୍ଧମାନେ ଆଉ କୌଣସି ବିଘ୍ନ ଉତ୍ପାଦନ କରିପାରିଲେ ନାହିଁ । ସେ ସ୍ଥାନରେ ଯାଗ ସରିଥିବାରୁ ତାହାର ନାମ ଯାଗମରା ହେଲା । ଖଣ୍ଡଗିରି ପାଦଦେଶରେ ଏ ଦୁଇଟି ଗ୍ରାମ ଅଦ୍ୟାପି ବିଦ୍ୟମାନ ଅଛି । ସେଠାରେ ଯଜ୍ଞକୁଣ୍ଡ ଓ ଯଜ୍ଞର ଅନ୍ୟ ସମସ୍ତ ଚିହ୍ନ ସ୍ପଷ୍ଟ ବିଦ୍ୟମାନ ଅଛି । ବୌଦ୍ଧଧର୍ମର ପ୍ରଧାନ ପୀଠ ଖଣ୍ଡଗିରି ନିକଟରେ ବିରାଟ ଯଜ୍ଞସଂପନ୍ନ ହେବାଦ୍ୱାରା ବୌଦ୍ଧମାନେ ବିଶେଷ ପ୍ରମାଦ ଗଣିଲେ । ଅହିଂସା ପରମୋ ଧର୍ମଃ । ଯେଉଁମାନଙ୍କର ପ୍ରଧାନ ଧର୍ମମତ ଯଜ୍ଞାର୍ଥେ ଜୀବ-ବଧ ଦୃଶ୍ୟ ସେମାନଙ୍କର ଆଦୌ ସହ୍ୟ ହେଲା ନାହିଁ । ବ୍ରାହ୍ମଣ ଓ ଶ୍ରମଣ ଯୁଦ୍ଧରେ ବ୍ରାହ୍ମଣମାନେ ଜୟଶ୍ରୀମଣ୍ଡିତ ହୋଇ ବୌଦ୍ଧମାନଙ୍କ ଉପରେ ଅତ୍ୟାଚାର ଆରମ୍ଭ କରିଥିଲେ ଓ ସେ ସମୟରେ ଭୁବନେଶ୍ୱରର ଅନେକ ବୌଦ୍ଧକୀର୍ତ୍ତି ନଷ୍ଟ ହୋଇଥିବାର ମନେହୁଏ । କିମ୍ବଦନ୍ତୀ ଅନୁସାରେ ବୌଦ୍ଧପ୍ରାଧାନ୍ୟ ସମୟରେ ବୌଦ୍ଧମାନେ ଅନେକ ହିନ୍ଦୁକୀର୍ତ୍ତି ନଷ୍ଟ କରିଥିଲେ । ତାହାର ପ୍ରତିଶୋଧ ନେବା ନିମିତ୍ତ ବ୍ରାହ୍ମଣମାନେ କେତେକ ବୌଦ୍ଧକୀର୍ତ୍ତି ନଷ୍ଟ କରି ସେଠାରେ ହିନ୍ଦୁକୀର୍ତ୍ତି ସ୍ଥାପନ କରିଥିଲେ । ସମଗ୍ର ଭାରତବର୍ଷରେ ବୌଦ୍ଧମାନେ, ଏହିପରି ହିନ୍ଦୁମାନଙ୍କ ଦ୍ୱାରା ପରାଭୂତ ହୋଇ ଏହି ଧର୍ମ ମଧ୍ୟରେ ନିଜର ଅସ୍ତିତ୍ୱ ଲୋପ କରିଥିଲେ ।

ଏକାମ୍ରପୁରାଣରେ ଦେବଦାନବ ଯୁଦ୍ଧ ଓ କୀର୍ତ୍ତିବାସ ବଧ କାହାଣୀ ବୌଦ୍ଧଧର୍ମର ପରାଭବର ଚିତ୍ରଭଳି ଜଣାଯାଏ । ଲଲାଟେନ୍ଦୁ କେଶରୀଙ୍କ ସମୟରୁ ବୌଦ୍ଧଧର୍ମ କ୍ରମଶଃ ମ୍ଳାନ ହୋଇଗଲା ।

ଲଲାଟେନ୍ଦୁ କେଶରୀଙ୍କ ସମୟରେ ୬୩୯ ଖ୍ରୀଷ୍ଟାବ୍ଦରେ ଚୈନିକ ପରିବ୍ରାଜକ ହୁଏନ୍‌ସାଂ କୋଙ୍ଗଦମଣ୍ଡଳ (ପୁରୀ ଓ ଗଞ୍ଜାମର କେତେକାଂଶ)ରେ ହିନ୍ଦୁଧର୍ମ ପ୍ରଧାନ ଥିବାର ଲେଖିଛନ୍ତି । ୬୬୬ ଖ୍ରୀଷ୍ଟାବ୍ଦରେ ଲିଙ୍ଗରାଜଙ୍କ ମନ୍ଦିର ନିର୍ମାଣ କାର୍ଯ୍ୟ ଶେଷ ହୋଇଥିଲା । ତାହାପରେ ଭୁବନେଶ୍ୱରରେ ଆହୁରି ଶତ ଶତ ମନ୍ଦିର ନିଜର ଉନ୍ନତ ମସ୍ତକ ଉତ୍ତୋଳନ କରିଥିଲେ । ଲଲାଟେନ୍ଦୁ କେଶରୀଙ୍କ ପରେ ବୌଦ୍ଧଧର୍ମର ପରମଶତ୍ରୁ ଶଙ୍କରାଚାର୍ଯ୍ୟ ଉତ୍କଳରେ ନିଜର ପୀଠ ସ୍ଥାପନ କରିଥିଲେ । ତାଙ୍କ ସମୟରେ ବୌଦ୍ଧମାନେ ସର୍ବତ୍ର ପରାସ୍ତ ହୋଇଥିଲେ । କିମ୍ବଦନ୍ତୀ ଅନୁସାରେ ଶଙ୍କରାଚାର୍ଯ୍ୟ ଭୁବନେଶ୍ୱରକୁ ଆସି ବୌଦ୍ଧମାନଙ୍କ ସହିତ ବହୁଦିନ କାଳ ଯୁକ୍ତିତର୍କକରି ପରିଶେଷରେ ସେମାନଙ୍କୁ ପରାସ୍ତ କରିଥିଲେ ଓ ବୌଦ୍ଧମାନେ ବ୍ରାହ୍ମଣମାନଙ୍କର ପ୍ରାଧାନ୍ୟ ସ୍ୱୀକାର କରିବାକୁ ବାଧ୍ୟ ହେଲେ । ଅନେକ ବୌଦ୍ଧ ହିନ୍ଦୁଧର୍ମ ଗ୍ରହଣ କରି ସମଗ୍ର ଉତ୍କଳରେ ଶିବମନ୍ଦିର ସେବାପୂଜାରେ ନିଯୁକ୍ତ ହୋଇଥିଲେ । ବୌଦ୍ଧ ଓ ବ୍ରାହ୍ମଣମାନଙ୍କର ମଧ୍ୟରେ ସମନ୍ୱୟ ସ୍ଥାପିତ ହେଲା । ବୌଦ୍ଧମାନଙ୍କୁ ସନ୍ତୁଷ୍ଟ କରିବା ପାଇଁ ପୁରୀ ଓ ଭୁବନେଶ୍ୱରରେ ମହାପ୍ରସାଦ ପ୍ରଚଳିତ ହୋଇଥିଲା । ଏହି କିମ୍ବଦନ୍ତୀର ସତ୍ୟତା ବର୍ତ୍ତମାନ ଜଣାଯାଇନାହିଁ । କିନ୍ତୁ ଭୁବନେଶ୍ୱରର ପ୍ରବୀଣ ବୟୋବୃଦ୍ଧ ପଣ୍ଡିତମାନଙ୍କର ଏହାହିଁ ମତ ।

ଭୁବନେଶ୍ୱର ପୁରୀର ଅତି ନିକଟବର୍ତ୍ତୀ, ପୁରୀ ପଥରେ ବିଦ୍ୟମାନ । ପୁନଶ୍ଚ ସେ ସମୟରେ ପୁରୀ ଅପେକ୍ଷା ଭୁବନେଶ୍ୱର ବୌଦ୍ଧଧର୍ମ ଓ ଶୈବଧର୍ମର କେନ୍ଦ୍ରରୂପେ ସମଗ୍ର ଭାରତବର୍ଷରେ ପ୍ରସିଦ୍ଧି ଲାଭ କରିଥିଲା । ପୁରୀକୁ ଶଙ୍କରାଚାର୍ଯ୍ୟଙ୍କ ଆଗମନ ସର୍ବବାଦୀସମ୍ମତ ବୌଦ୍ଧଧର୍ମର ପ୍ରାଧାନ୍ୟ ଲୋପ ହିଁ ତାଙ୍କ ଦିଗ୍‌ବିଜୟର ପ୍ରଧାନ ଉଦ୍ଦେଶ୍ୟ ଥିଲା । ତେଣୁ ଶଙ୍କରାଚାର୍ଯ୍ୟ ଭୁବନେଶ୍ୱରକୁ ଆସିଥିବା ସଂପୂର୍ଣ୍ଣ ସମ୍ଭବପର । (୮୧୨ ସାଲରୁ ଶଙ୍କରାବ୍ଦ ପ୍ରଚଳିତ ଥିବାର ଶଙ୍କରାନନ୍ଦ ମଠର ମହନ୍ତ କହନ୍ତି ।) ଏ ସମ୍ବନ୍ଧରେ ମଧ୍ୟ ଆହୁରି ଅନେକ କିମ୍ବଦନ୍ତୀ ଶୁଣାଯାଏ । ଦିଗ୍‌ବିଜୟ ପରେ ମଧ୍ୟ ଅନେକ ବୌଦ୍ଧ ଖୋରଧାର ଚଉରାଶୀ ଗୁମ୍ଫାରେ ବାସ କରୁଥିଲେ । ଧଉଳୀ ଓ ଭୁବନେଶ୍ୱରଠାରୁ ଦକ୍ଷିଣାପଥକୁ ଗୋଟିଏ ଦାଣ୍ଡ ଥିଲା ।

ତାହାର ନାମ ନଙ୍କର ଦାଣ୍ଡ । ଏହା ସେମାନଙ୍କର ପ୍ରଧାନ ସମାଗମ ପଥ ଥିଲା । ଏହି ପଥର ନିକଟବର୍ତ୍ତୀ ସ୍ଥାନରେ ବୌଦ୍ଧମାନେ ୮୪ ଗୁମ୍ଫାରେ ଦ୍ୱାଦଶ ଶତାବ୍ଦୀର ଶେଷ ପର୍ଯ୍ୟନ୍ତ ବାସ କରୁଥିଲେ । ୮୪ ଗୁମ୍ଫା ଖଣ୍ଡଗିରି, ଉଦୟଗିରି, ଧଉଳୀ, କାଲୁପଡ଼ା ପାହାଡ଼, ବିନ୍ଧେଶ୍ୱରୀ ପାହାଡ଼, ବିଷ୍ଣୁସ୍ୱାମୀଲିଙ୍ଗଙ୍କ ପଶ୍ଚିମ ପାଖ ଯାଆଁଳା ପର୍ବତ, ପର୍ଯ୍ୟଙ୍କ ଦଣ୍ଡପାଟ, ପଁଅରପର୍ବତ, ବାରୁଣୀ ପର୍ବତ, ପାଞ୍ଚଗାଁ ମୁଣ୍ଡିଆ, ବିଶ୍ୱନାଥମୁଣ୍ଡିଆ, ଦାରୁଠେଙ୍ଗ ମୁଣ୍ଡିଆ ବା ସୁଡ଼ଙ୍ଗ ମୁଣ୍ଡିଆ ପ୍ରଭୃତି ୮୪ ଗୁମ୍ଫାରେ ବୌଦ୍ଧମାନେ ମଦନମହାଦେବ ବା ଏକଜଟା କାମଦେବଙ୍କ ପର୍ଯ୍ୟନ୍ତ ବାସ କରୁଥିଲେ । ତାଙ୍କ ସମୟରେ ବୌଦ୍ଧମାନେ ଏହି ଗୁମ୍ଫାମାନଙ୍କରୁ ବିତାଡ଼ିତ ହେଲେ ।

ଏହି ବୌଦ୍ଧ ବିତାଡ଼ନ କିମ୍ବଦନ୍ତୀ ମାଦଳାପାଞ୍ଜିରେ ବିଶଦ ଭାବରେ ବର୍ଣ୍ଣିତ ହୋଇଛି । ତୁଳାମାଠିଆ ମିଶ୍ର ପ୍ରଭୃତି କିମ୍ବଦନ୍ତୀରୁ ଏହା ସତ୍ୟ ବୋଲି ଜଣାଯାଏ । ଚୋଡ଼ଗଙ୍ଗଦେବଙ୍କ ସମୟରେ ଧଉଳୀ ପାହାଡ଼ରେ ବହିରଙ୍ଗେଶ୍ୱର ମନ୍ଦିର ଓ ଅନ୍ୟାନ୍ୟ ଅନେକ ଶିବମନ୍ଦିର ନିର୍ମିତ ହୋଇଥିଲା । ଖଣ୍ଡଗିରି ଓ ଉଦୟଗିରିରେ ବୌଦ୍ଧମାନେ ଅନେକଦିନ ପର୍ଯ୍ୟନ୍ତ ବାସ କରିଥିଲେ ସତ୍ୟ, କିନ୍ତୁ ସେମାନେ ପ୍ରକୃତ ବୌଦ୍ଧ ନଥିଲେ । ସେମାନେ ବ୍ରାହ୍ମଣ୍ୟଧର୍ମର ପ୍ରବଳ ଶକ୍ତି ସମ୍ମୁଖରେ ନତମସ୍ତକ ହୋଇଥିଲେ । ଭୁବନେଶ୍ୱର ନିକଟବର୍ତ୍ତୀ ସ୍ଥାନରେ ଅନେକ ବ୍ରାହ୍ମଣଶାସନ ପ୍ରତିଷ୍ଠିତ ହୋଇଥିଲା । ଏହିପରି ତ୍ରୟୋଦଶ ଶତାବ୍ଦୀବେଳକୁ ଭୁବନେଶ୍ୱରରୁ ବୌଦ୍ଧଧର୍ମ ଏକାବେଳକେ ଲୋପ ପାଇଥିଲା କହିଲେ ଅତ୍ୟୁକ୍ତି ହେବନାହିଁ । ଏହି ସମୟରେ ଭୁବନେଶ୍ୱର ସମ୍ବନ୍ଧରେ ଅନେକ ଗ୍ରନ୍ଥରଚିତ ହୋଇଥିଲା ଓ ଭୁବନେଶ୍ୱର ସମଗ୍ର ଭାରତର ଗୋଟିଏ ପ୍ରଧାନ ଶୈବକ୍ଷେତ୍ର ରୂପେ ପରିଗଣିତ ହେଲା ।



ତୃତୀୟ ଅଧ୍ୟାୟ

# ଶୈବଧର୍ମ ଧାରା

ଶିବପୂଜା ଭାରତରେ ଅତି ପ୍ରାଚୀନକାଳରୁ ପ୍ରଚଳିତ । କେତେକ ପାଶ୍ଚାତ୍ୟ ଐତିହାସିକ ଓ ସେମାନଙ୍କର ପଦାନୁସାରୀ କେତେକ ଭାରତୀୟ ଐତିହାସିକ ଶିବପୂଜାର ପ୍ରାଚୀନତ୍ୱ ବିଷୟରେ ସନ୍ଦିହାନ ହୋଇ ଏହାର ଅର୍ବାଚୀନତ୍ୱ ପ୍ରମାଣ କରିବା ପାଇଁ ନାନା ଯୁକ୍ତିତର୍କର ଅବତାରଣା କରିଅଛନ୍ତି । ଗତ ୧୯୨୨ଠାରୁ ୧୯୨୭ ମଧ୍ୟରେ ସିନ୍ଧୁନଦୀ ତୀରବର୍ତ୍ତୀ ହରପ୍ପା ଓ ମହେଞ୍ଜୋଦାରୋ ନାମକ ଦୁଇଟି ସ୍ଥାନରେ ଭାରତୀୟ ଅନୁସନ୍ଧାନ ବିଭାଗପକ୍ଷରୁ ଭୂଖୋଦନ କାର୍ଯ୍ୟ ଚାଲିଥିଲା । ଏ ସ୍ଥାନ ଦୁଇଟିରୁ ପ୍ରାୟ ଖ୍ରୀଷ୍ଟ ୩୦୦ବର୍ଷ ପୂର୍ବର ବା ଆନୁମାନିକ ୫୦୦୦ ବର୍ଷତଳର କୀର୍ତ୍ତିସକଳ ଆବିଷ୍କୃତ ହୋଇଅଛି । ସେ ସ୍ଥାନରେ ଆବିଷ୍କୃତ ପଦାର୍ଥମାନଙ୍କ ମଧ୍ୟରୁ ଶିବଙ୍କର ଜଟିଳ (ଜଟାଶୋଭିତ) ମୂର୍ତ୍ତିଚିହ୍ନ ଓ ଲିଙ୍ଗମୂର୍ତ୍ତି ଅଙ୍କିତ ଭାରତୀୟ ପ୍ରାଚୀନତମ ମୁଦ୍ରା ଓ ଇଟାଖଣ୍ଡମାନ ସମଗ୍ର ଜଗତକୁ ଚମତ୍କୃତ କରି ଦେଇଛି । ଶିବ ଭାରତର ପ୍ରାଚୀନତମ ଦେବତା ଓ ଲିଙ୍ଗପୂଜା ଭାରତରେ ଆଦିମ କାଳରୁ ପ୍ରଚଳିତ ଥିଲା । ସେଗୁଡ଼ିକ ଏହା ସହସ୍ରମୁଖରେ ଜଗତ୍‌ସମ୍ମୁଖରେ ଘୋଷଣା କରୁଛନ୍ତି । ଶିବପୂଜା ବିଦେଶାଗତ ନୁହେଁ । ଏହା ଭାରତୀୟ ଇତିହାସରେ ଘୋର ପରିବର୍ତ୍ତନ ଘେନି ଆସିଛି । ଶିବପୂଜା ଯେ ପୃଥିବୀରେ ଗୋଟିଏ ପ୍ରାଚୀନତମ ଧର୍ମମତ ବର୍ତ୍ତମାନ ଏଥିରେ ସନ୍ଦେହ କରିବାର କୌଣସି କାରଣ ନାହିଁ । ଏହାଦ୍ୱାରା ଭାରତର ଜାତୀୟତାବିରୋଧୀ ଓ ସର୍ବତ୍ର ଗ୍ରୀକ୍‌ପ୍ରଭାବଦର୍ଶୀ ଐତିହାସିକମାନଙ୍କର ମୁଖ ବନ୍ଦ ହୋଇଯାଇଛି । ସାର ଜନ୍ ମାରସେଲ୍‌ଙ୍କ ଉପରେ ଏହି ଭୂଖୋଦନ ଭାର ନ୍ୟସ୍ତ ଥିଲା । ସେ ପାଶ୍ଚାତ୍ୟ ହେଲେ ମଧ୍ୟ ମୁକ୍ତକଣ୍ଠରେ ଶିବପୂଜାର ପ୍ରାଚୀନତା ସ୍ୱୀକାର କରିଛନ୍ତି । "Among the many relations that Mahenjodaro and Harappa have in store for us none perhaps is more remarkable than this discovery that saivism has a history going back to calcolithic age or even further still and it thus takes its place on the most ancient living faith in the world."

'ମହେଞ୍ଜୋଦାରୋ ଓ ହରପ୍ପାରୁ ଆବିଷ୍କୃତ କୀର୍ତ୍ତିମାନଙ୍କରୁ ସ୍ପଷ୍ଟ ଜଣାଯାଏ ଯେ ଶିବପୂଜା ଆଦିମ ଯୁଗରେ ମଧ ପ୍ରଚଳିତ ଥିଲା ଓ ଏହା ପୃଥିବୀର ପ୍ରାଚୀନତମ ଧର୍ମମତମାନଙ୍କ ମଧ୍ୟରେ ଏକତମ' । ଏହି ଦୁଇଟି ସ୍ଥାନର ସଭ୍ୟତାକୁ ସେମାନେ ଅନ୍ତତଃ ୫ହଜାର ବର୍ଷପୂର୍ବର ବୋଲି କହନ୍ତି । କିନ୍ତୁ ଏହା କେବଳ ଅନୁମାନ ।

ଏହା ଯେ ଆହୁରି ପ୍ରାଚୀନତର ହୋଇପାରେ ଏହା କିଏ କହିବ? ତଥାପି ଏହା ସୁନିଶ୍ଚିତ ଯେ ପାଞ୍ଚହଜାର ବର୍ଷ ପୂର୍ବେ ସିନ୍ଧୁନଦୀ କୂଳବାସୀ ଭାରତୀୟମାନେ ଶିବ ଓ ଶକ୍ତି ଉପାସନା କରୁଥିଲେ । ବୃଷଭ ମଧ ଅତି ପ୍ରାଚୀନକାଳରୁ ଶିବଙ୍କ ବାହନ ରୂପେ ପରିଚିତ । ଉକ୍ତ ଦୁଇଟି ସ୍ଥାନରେ ନାନା ପ୍ରକାର ବୃଷଭମୂର୍ତ୍ତି ଆବିଷ୍କୃତ ହୋଇଅଛି । ବୃଷଭର କ୍ରୋଧାନ୍ୱିତ ମୂର୍ତ୍ତି ଅନେକ ସିଲ୍ (seal) ଓ ମୁଦ୍ରାରେ ଦେଖାଯାଏ । ବୃଷଭର କ୍ରୋଧ, ପ୍ରଳୟର ସ୍ମାରକ । ରୁଦ୍ରଶିବ ସୃଷ୍ଟିର ଧ୍ୱଂସକାରୀ । ତେଣୁ ବୃଷଭର କ୍ରୁଦ୍ଧମୂର୍ତ୍ତି ରୁଦ୍ରଶିବଙ୍କର ସୃଷ୍ଟିବିଧ୍ୱଂସିନୀ ଶକ୍ତିର ପରିଚାୟକ ।

୧୩୨୭ ସାଲର 'ପ୍ରବାସୀ' ପତ୍ରିକାରେ ଶ୍ରୀ ଚାରୁଚନ୍ଦ୍ର ବନ୍ଦ୍ୟୋପାଧ୍ୟାୟ ଶିବପୂଜା ବିଷୟରେ ଗୋଟିଏ ପ୍ରବନ୍ଧ ଲେଖିଥିଲେ । ତାଙ୍କ ମତରେ ସିରିଆଦେଶର ପ୍ରାଚୀନ ଅଧିବାସୀ ହିଟାଇଟମାନଙ୍କର ବୃଷଭାରୋହୀ ଦେବ ଓ ସିଂହବାହିନୀ ଦେବୀ ଆମ୍ଭମାନଙ୍କର ଶିବଦୁର୍ଗା ପରିକଳ୍ପନାର ଭିତ୍ତି । କିନ୍ତୁ ଏ ମତ ସମ୍ପୂର୍ଣ୍ଣ ଭ୍ରାନ୍ତ । ବୃଷାରୋହୀ ଶିବ ଆମ୍ଭମାନଙ୍କର ବୈଦିକ ରୁଦ୍ରଦେବତା । ଏହା ଆର୍ଯ୍ୟଜାତିର ସମ୍ପୂର୍ଣ୍ଣ ନିଜସ୍ୱ । ସିନ୍ଧୁପ୍ରଦେଶର ଲୋକମାନେ ଶିବଙ୍କର ଯୋଗାସନାସୀନ ମଙ୍ଗଳମୟ ମୂର୍ତ୍ତି କଳ୍ପନା କରିଥିଲେ । ମହେଞ୍ଜୋଦାରୋରୁ ପ୍ରାପ୍ତ ୧୭ନମ୍ବର ସିଲ୍‌ରେ ଯୋଗୀ ଶିବଙ୍କର ଗୋଟିଏ ସୁନ୍ଦର ଚିତ୍ର ଅଙ୍କିତ ହୋଇଅଛି । ତାଙ୍କର ତିନୋଟି ମସ୍ତକ ସତ୍ତ୍ୱ ରଜ ତମ ତ୍ରିଗୁଣାତ୍ମକ । ଆବୁପର୍ବତ ନିକଟରେ ଦେବାଙ୍ଗନ ଗ୍ରାମରେ ଶିବଙ୍କର ତ୍ରିଶିର ମୂର୍ତ୍ତି ଦେଖାଯାଏ । ଏହି ଆଦିମ ଯୁଗରେ ମଧ ଶିବ ତ୍ରିଶିର ରୂପେ ମଧ କଳ୍ପିତ ହୋଇଥିଲେ । ଏହାମଧ ତ୍ରିମୂର୍ତ୍ତି (ବ୍ରହ୍ମା ବିଷ୍ଣୁ ମହେଶ୍ୱର)ର ପରିକଳ୍ପନା ହୋଇପାରେ । ଏଠାରୁ ଶିବଙ୍କର ପଶୁପତିନାଥମୂର୍ତ୍ତି ମଧ ମିଳେ । ଶିବ ସିଂହାସନ ଉପରେ ବୀରାସନାସୀନ(ଚକାମଉରୀ ପକାଇ ବସିଛନ୍ତି) । ହସ୍ତ ଦୁଇଟିର ଅଙ୍ଗୁଷ୍ଠାଦ୍ୱୟ ଆଣ୍ଠୁ ଦୁଇଟିକୁ ସ୍ପର୍ଶ କରିଛି । ବକ୍ଷ ଉନ୍ନତ । ଉଷ୍ଣୀଷର ନିମ୍ନଭାଗରୁ ଦୁଇପାଖକୁ ଦୁଇଟି ଗୋ-ଶୃଙ୍ଗ ବାହାରି ଅଛି । ଏହାର ଦକ୍ଷିଣ ପାର୍ଶ୍ୱରେ ହସ୍ତୀ ଓ ବ୍ୟାଘ୍ର ଓ ବାମପାର୍ଶ୍ୱରେ ଖଡ଼୍‌ଗୀ(ଗଣ୍ଡାର) ଓ ମହିଷମୂର୍ତ୍ତି କଳ୍ପିତ ହୋଇଅଛି । ଏହା ଶିବଙ୍କର ପଶୁପତିନାଥ ମୂର୍ତ୍ତି ଭିନ୍ନ ଅନ୍ୟ କିଛି ନୁହେଁ । ପ୍ରାଚୀନତମ ଗ୍ରନ୍ଥମାନଙ୍କରେ ଶିବ ପଶୁପତିନାଥ ବୋଲି ବର୍ଣ୍ଣିତ ହୋଇଛନ୍ତି । ଏହି କଳ୍ପନା ଯେ ଅତି ପ୍ରାଚୀନତମ ଏହା ଏହି ମୂର୍ତ୍ତିଗୁଡ଼ିକ ଆଲୋଚନା କଲେ ଜଣାଯାଏ । କେବଳ ଏତିକି ନୁହେଁ। ମୂର୍ତ୍ତିର ଉପରଭାଗରେ ସାତଅକ୍ଷରବିଶିଷ୍ଟ ଗୋଟିଏ ଲିପି ଖୋଦିତ ହୋଇଅଛି । ଭାରତର ବିଖ୍ୟାତ ଐତିହାସିକ ଡକ୍ଟର ପ୍ରାଣନାଥମ ଏହି ଲିପି ପଢିପାରିଛନ୍ତି ।

ଏଥିରେ ଗୋଜାତି ମାହାତ୍ମ୍ୟ ଲିଖିତ ହୋଇଛି ବୋଲି ସେ କହନ୍ତି । ଗୋଜାତି ସହିତ ଶିବଙ୍କର ସମ୍ପର୍କ ଅତି ପ୍ରାଚୀନ କାଳରୁ ବିଦ୍ୟମାନ । ଗୋ ଅଘ୍ନ୍ୟା- ଗୋରୁ ଅବଧ । ଏହି ପ୍ରାଚୀନ ବୈଦିକ ସୂକ୍ତ ଉକ୍ତ ଯୁଗରେ ମଧ୍ୟ ଲୋକସମାଜରେ ପ୍ରଚଳିତ ଥିଲା । ସେହି ଆଦିମଯୁଗରୁ ଆଜିସୁଦ୍ଧା ହିନ୍ଦୁଧର୍ମରେ ଗୋମାହାତ୍ମ୍ୟ ଅକ୍ଷୁଣ୍ଣ ରହିଅଛି ।

ଶିବପୂଜା ସହିତ ଯୋଗାଭ୍ୟାସ ସେହି ଆଦିମକାଳରୁ ସଂପୃକ୍ତ । ବୈଦିକ ଯୁଗରେ ଯୋଗାଭ୍ୟାସ ବିଶେଷ ପ୍ରାଧାନ୍ୟ ଲାଭ କରିନଥିଲା । କିନ୍ତୁ ପରବର୍ତ୍ତୀ କାଳର ସାହିତ୍ୟରେ ନାନାବିଧ ଯୋଗାଭ୍ୟାସର ଭୂରି ଭୂରି ପ୍ରମାଣ ମିଳେ । ଉକ୍ତଯୁଗର ମୂର୍ତ୍ତିମାନଙ୍କରୁ ସେ ଯୁଗରେ ଯୋଗାଭ୍ୟାସ ବିଶେଷ ଭାବରେ ପ୍ରଚଳିତ ଥିବାର ଜଣାଯାଏ । ଅନ୍ୟଗୋଟିଏ (fience-sealing) ମୁଦ୍ରାରେ ନାଗବୃନ୍ଦପୂଜିତ ଶିବମୂର୍ତ୍ତି ଦେଖାଯାଏ । ଶିବମୂର୍ତ୍ତିର ନାନାବିଧ ପରିକଳ୍ପନାରୁ ସ୍ପଷ୍ଟ ଜଣାଯାଏ ଯେ, ଏହି ପ୍ରାଚୀନ କାଳରେ ଶିବପୂଜା ଭାରତୀୟମାନଙ୍କ ମଧ୍ୟରେ ଗୋଟିଏ ପ୍ରଧାନ ଧର୍ମମତ ରୂପେ ପ୍ରଚଳିତ ଥିଲା । କେବଳ ଏତିକି ନୁହେଁ ସେହି ଆଦିମ ଯୁଗରେ ମଧ୍ୟ ସେମାନେ ଲିଙ୍ଗପୂଜା ପ୍ରବର୍ତ୍ତନ କରିଥିଲେ । କିଛିକାଳ ପୂର୍ବେ ୭ମ ଶତାବ୍ଦୀରେ ଭାରତରେ ଲିଙ୍ଗପୂଜାର ବହୁଳ ପ୍ରଚାର ହୋଇଥିଲା ବୋଲି ଅନେକ ଐତିହାସିକଙ୍କର ଧାରଣା ଥିଲା । କିନ୍ତୁ ଏହା ଆଦୌ ସତ୍ୟ ନୁହେଁ । ହରପ୍ପା ଓ ମହେଞ୍ଜୋଦାରରୁ ପ୍ରାପ୍ତ ତାମ୍ରଫଳକ, ମୁଦ୍ରା ଓ ଇଟା ପ୍ରଭୃତିରେ ଲିଙ୍ଗମୂର୍ତ୍ତି ପରିଷ୍କାରଭାବରେ ଅଙ୍କିତ ହୋଇଅଛି । ବର୍ତ୍ତମାନ ଲିଙ୍ଗପୂଜାର ପ୍ରାଚୀନତା ସମ୍ବନ୍ଧରେ ସନ୍ଦେହ କରିବାର କୌଣସି କାରଣ ନାହିଁ । (At Mahenjodaro and Harrapa some ancient subjects of stone and other materials have been discovered. Two of these are realistically (PL XIV 2.4) modelled phalli showing beyond doubt that Phallism had a pre-Aryan origin and doing away with the theory that it was introduced into India by the Greek or the western invaders.)

ଏହା ଭାରତର ଗୋଟିଏ ପ୍ରାଚୀନତମ ଧର୍ମମତ ଓ ଆର୍ଯ୍ୟମାନଙ୍କର ଆଗମନ ପୂର୍ବରୁ ଭାରତରେ ପ୍ରଚଳିତ ଥିବାର ଜଣାଯାଏ । ଲିଙ୍ଗ ସହିତ ଯୋନିପୀଠର ସମାବେଶ ଚିତ୍ର ମଧ୍ୟ ମହେଞ୍ଜୋଦାରୋରୁ ପ୍ରାପ୍ତ ଅନେକ ତାମ୍ରଫଳକ ଓ ମୁଦ୍ରାରେ ଦେଖାଯାଏ । ଯେଉଁ ପ୍ରାଚୀନ ଭାରତୀୟମାନେ ସୃଷ୍ଟିର କାରଣ ଅନନ୍ତ ପ୍ରକୃତି ପୁରୁଷର କଳ୍ପନା କରିଥିଲେ ସେହିମାନେ ହିଁ ଲିଙ୍ଗଯୋନିର ସମାବେଶକୁ ଦିବ୍ୟ

ଦୃଷ୍ଟିରେ ଦେଖୁଥିଲେ । ଏହା ବିଦେଶାଗତ ନୁହେଁ । ଲିଙ୍ଗପୂଜା ଅଶ୍ଳୀଳ ନୁହେଁ । ଇତିହାସରୁ ଜଣାଯାଏ ପରବର୍ତ୍ତୀକାଳରେ ଅନେକ ପାଶ୍ଚାତ୍ୟ ଦେଶରେ ଲିଙ୍ଗପୂଜା ପ୍ରଚଳିତ ଥିଲା । ପୁରାଣମାନଙ୍କରେ ଲିଙ୍ଗ ଜ୍ୟୋତିବ୍ରହ୍ମରୂପେ କଳ୍ପିତ ହୋଇଛନ୍ତି । ଲିଙ୍ଗ ଓ ଶକ୍ତିପୂଜା ଆଦ୍ୟାଶକ୍ତିର ଆରାଧନା ଓ ଅର୍ଚ୍ଚନା ମାତ୍ର ।



## ଚତୁର୍ଥ ଅଧ୍ୟାୟ

# ବୈଷ୍ଣବ ଧର୍ମଧାରା

ଭୁବନେଶ୍ୱର ଉତ୍କଳ ତଥା ଭାରତର ପ୍ରଧାନ ଶୈବକ୍ଷେତ୍ର ହେଲେ ମଧ୍ୟ ଏଠାରେ ଅନେକ ବୈଷ୍ଣବ କୀର୍ତ୍ତି ଦେଖାଯାଏ । ଗଙ୍ଗବଂଶୀୟ ରାଜା ଭାନୁଦେବଙ୍କ ରାଜତ୍ୱ ଶେଷରେ - ୧୧୭୮ ଖ୍ରୀଷ୍ଟାବ୍ଦରେ ପରମାର୍ଦ୍ଦିଦେବ ଓ ଚନ୍ଦ୍ରିକାଦେବୀ ଲିଙ୍ଗକୋଟିସମାବୃତ ଭୁବନେଶ୍ୱର କ୍ଷେତ୍ରରେ ପାଷାଣମୟ ଜଗନ୍ନାଥ ବଳଭଦ୍ର ଓ ସୁଭଦ୍ରାଙ୍କ ମନ୍ଦିର ନିର୍ମାଣ କଲେ । ସେହିଦିନୁ ଭୁବନେଶ୍ୱରରେ ଶୈବଧର୍ମର ମାହାତ୍ମ୍ୟ କ୍ରମଶଃ ଲୁପ୍ତ ହେବାକୁ ବସିଲା । ଅନନ୍ତବର୍ମ ଚୋଡ଼ଗଙ୍ଗଦେବ (୧୧୧୨-୧୧୪୭) ପର୍ଯ୍ୟନ୍ତ ଉତ୍କଳରେ ରାଜତ୍ୱ କରିଥିଲେ । ତାଙ୍କ ବିଷୟରେ(ଅନେକ) ଶିଳାଲିପି ଲିଙ୍ଗରାଜ ମନ୍ଦିରରୁ କଳାହାଟ ଦ୍ୱାରରୁ ମିଳିଛି ଓ ଗୋଟିଏ ଶିଳାଲିପି କେଦାରେଶ୍ୱର ମନ୍ଦିରରେ ଖୋଦିତ ହୋଇଅଛି । ତାଙ୍କ ସମୟରେ ଉତ୍କଳରେ ରାମାନୁଜାଚାର୍ଯ୍ୟ ବୈଷ୍ଣବଧର୍ମ ପ୍ରଚାର କରିଥିଲେ । ସେ ନିଜର ଅଗାଧ ପାଣ୍ଡିତ୍ୟ ଓ ଅକାଟ୍ୟ ଯୁକ୍ତିବଳରେ ବେଙ୍କଟାଚଳ ପ୍ରଭୃତି ସ୍ଥାନର ମୂର୍ତ୍ତିକୁ ବୈଷ୍ଣବ ବୋଲି ପ୍ରମାଣ କରିଥିଲେ । ଚୋଡ଼ଗଙ୍ଗଦେବ ପ୍ରଥମେ ଶୈବ ଥିଲେ । କିନ୍ତୁ ରାମାନୁଜାଚାର୍ଯ୍ୟଙ୍କ ଦ୍ୱାରା ସେ ବୈଷ୍ଣବଧର୍ମରେ ଦୀକ୍ଷିତ ହୋଇଥିଲେ । ତେଣୁ ତାଙ୍କର ପରବର୍ତ୍ତୀ ଗଙ୍ଗବଂଶୀୟ ରାଜାମାନେ ବୈଷ୍ଣବଧର୍ମର ପ୍ରଧାନ ପୃଷ୍ଠପୋଷକ ହୋଇଥିଲେ । ଏହା ଉତ୍କଳ ବୈଷ୍ଣବଧର୍ମର ପ୍ରଧାନ ଧର୍ମପୀଠ ହୋଇଥିଲା ।

ରାମାନୁଜାଚାର୍ଯ୍ୟଙ୍କର ଦ୍ୱାରା ବୈଷ୍ଣବଧର୍ମ ପ୍ରଚାରିତ ହେବାପରେ ଦାକ୍ଷିଣାତ୍ୟରେ ଶୈବ ଓ ବୈଷ୍ଣବମାନେ ଇଉରୋପର ପ୍ରୋଟେଷ୍ଟାଣ୍ଟ ଓ କ୍ୟାଥୋଲିକ୍‌ମାନଙ୍କ ପରି ବହୁକାଳ ଆପଣା ଆପଣା ମଧ୍ୟରେ ଯୁଦ୍ଧ କରିଥିଲେ । କିନ୍ତୁ ଗଙ୍ଗବଂଶର ନରପତିମାନେ ବିଶାଳ ସାମ୍ରାଜ୍ୟର ଅଧିକାରୀ ଥିଲେ । ସେମାନେ ବୈଷ୍ଣବଧର୍ମର ପୃଷ୍ଠପୋଷକତା କରିବାରୁ ଶୈବଧର୍ମାବଲମ୍ବୀମାନେ ପ୍ରବଳ ରାଜଶକ୍ତି ବିରୁଦ୍ଧରେ ବିଦ୍ରୋହ ଚଳାଇବାକୁ ଏକାନ୍ତ ଅସମର୍ଥ ଥିଲେ । ଗଙ୍ଗବଂଶୀୟ ରାଜାମାନେ ବୈଷ୍ଣବ ଥିଲେ ମଧ୍ୟ ଶୈବଧର୍ମ ପ୍ରତି ଅନାଦର ପ୍ରକାଶ କରୁନଥିଲେ । ବୈଷ୍ଣବଧର୍ମ ଲୋକମାନଙ୍କ ମଧ୍ୟରେ ବିଶେଷ ଭାବରେ ପ୍ରଚଳିତ ହୋଇଥିଲା । ପୁନଶ୍ଚ ବୈଷ୍ଣବଧର୍ମର ରାଧାକୃଷ୍ଣ ପ୍ରଣୟ-କାହାଣୀ କଥା ଅତୀବ ଲୋକପ୍ରିୟ ହୋଇଥିଲା । କଠୋର ନିୟମାବଦ୍ଧ ଶୈବମତ ଅପେକ୍ଷା ସାଧାରଣ ଲୋକମାନେ ରାଧାକୃଷ୍ଣ ପ୍ରେମରସାପ୍ଲୁତ ବୈଷ୍ଣବଧର୍ମକୁ ଅତିଶୟ ଆଦର କରୁଥିଲେ । ଅନେକ

ଐତିହାସିକଙ୍କ ମତରେ ଚୈତନ୍ୟ ମହାପ୍ରଭୁ ପ୍ରଥମେ ଉତ୍କଳରେ ବୈଷ୍ଣବଧର୍ମ ପ୍ରଚାର କରିଥିଲେ । କିନ୍ତୁ ଏ ମତ ସମ୍ପୂର୍ଣ୍ଣ ଭ୍ରାନ୍ତ ପୁରୀର ବିଶାଳ ଜଗନ୍ନାଥ ମନ୍ଦିର ବିମାନ ଦେହରେ କୃଷ୍ଣଙ୍କ କାଳୀୟଦମନ, ଗୋବର୍ଦ୍ଧନଧାରଣ, ଦୋଳଯାତ୍ରା, ଗୋଧନଚାରଣ, ବଂଶୀବାଦନ, ନାବକେଳି ପ୍ରଭୃତିର ଚିତ୍ର ଦେଖାଯାଏ । ମନ୍ଦିର ନିର୍ମାଣ ପୂର୍ବରୁ ଅର୍ଥାତ୍ ୧୧୮୯ ଖ୍ରୀଷ୍ଟାବ୍ଦ ପୂର୍ବରୁ ଉତ୍କଳରେ ରାଧାକୃଷ୍ଣ ଧର୍ମ ବିଶେଷ ଭାବରେ ପ୍ରଚଳିତ ହୋଇଥିବାର ଜଣାଯାଏ । ତେଣୁ ଉତ୍କଳୀୟକବି ଜୟଦେବ ରାଧାକୃଷ୍ଣ କେଳି ସମ୍ବନ୍ଧରେ ଏପରି ଗ୍ରନ୍ଥ ରଚନା କରିବାକୁ ସମର୍ଥ ହୋଇଥିଲେ । ରାମଧର୍ମ ମଧ୍ୟ ଏ ସମୟକୁ ପ୍ରଚାରିତ ହେବାର ଜଣାଯାଏ । ବୈଷ୍ଣବଧର୍ମର ନାନାବିଭାଗ ଅତ୍ୟନ୍ତ ଲୋକପ୍ରିୟ ହୋଇଥିଲା । ତେଣୁ ଶୈବଧର୍ମ, ବୈଷ୍ଣବଧର୍ମର ପ୍ରବଳ ପ୍ରଚାର ଯୋଗୁ କ୍ରମଶଃ ଲୋପୋନ୍ମୁଖ ହେଲା । ଦୁଇଟି ପ୍ରବଳଧର୍ମ-ମତ ମଧ୍ୟରେ ସମନ୍ୱୟ ସ୍ଥାପିତହେବା ସହଜ ନୁହେଁ । ଗୋଟିଏ ଧର୍ମମତ ରାଜନୈତିକ ବା ସାମାଜିକ କାରଣବଶତଃ ଦୁର୍ବଳ ହୋଇଗଲେ ଅନ୍ୟ ଧର୍ମମତ ସହିତ କ୍ରମଶଃ ମିଶିଯାଏ ବା ପ୍ରବଳଧର୍ମମତରୁ କେତେକ ବିଷୟ ଗ୍ରହଣ କରେ । ପୃଥିବୀର ଧର୍ମ ଇତିହାସର ଆଲୋଚନା କଲେ ଏହା ସ୍ପଷ୍ଟ ଜଣାଯାଏ । ଭୁବନେଶ୍ୱରରେ ଶୈବ ଓ ବୈଷ୍ଣବଧର୍ମ ମତ ମଧ୍ୟରେ ସମନ୍ୱୟ ସ୍ଥାପିତ ହୋଇଥିବାର ଜଣାଯାଏ । ଲିଙ୍ଗରାଜ ମୂର୍ତ୍ତି, ଶିବଲିଙ୍ଗ ମୂର୍ତ୍ତି ରୂପେ ଗୃହୀତ ନ ହୋଇ ଧର୍ମମତ ମଧ୍ୟରେ ସମନ୍ୱୟ ସ୍ଥାପିତ ହେବାରୁ 'ହରିହର ମୂର୍ତ୍ତି' ରୂପେ ପୂଜିତ ହେବାକୁ ଲାଗିଲେ । ଭୁବନେଶ୍ୱର ସମ୍ବନ୍ଧରେ ଲିଖିତ ପୁରାଣମାନଙ୍କରୁ ଏ କଥା ଜଣାଯାଏ ।

ଏକାମ୍ର ପୁରାଣ ଭୁବନେଶ୍ୱର ବିଷୟକ ଗୋଟିଏ ଶୈବଗ୍ରନ୍ଥ । କିନ୍ତୁ ଏହାର କେତେକ ପଂକ୍ତିରୁ ସ୍ପଷ୍ଟ ଜଣାଯାଏ ଯେ ଭୁବନେଶ୍ୱରରେ ଶୈବ ଓ ବୈଷ୍ଣବଧର୍ମ ମଧ୍ୟରେ ସମନ୍ୱୟ ସ୍ଥାପିତ ହୋଇଥିଲା ।

ତ୍ୱଂ ଦେବି ବିଷ୍ଣୁଭାବେନ ତ୍ୱସୌ ଦେବୋ ମହେଶ୍ୱରଃ  
ମୂଢା ଭେଦଂ ପ୍ରକୁର୍ବନ୍ତି ଜ୍ଞାନବୁଦ୍ଧିବହିଷ୍କୃତାଃ ।୩୪।  
ନ ବିଷ୍ଣୁଶିବୟୋର୍ଭେଦ ଏଷ ଧର୍ମଃ ସନାତନଃ  
ପରିପାଲ୍ୟ ଇମଂ ଧର୍ମଂ ନରୋ ମୁକ୍ତିମବାପ୍ନୁୟାତ୍ ।୩୫।  
ନ ବକ୍ରାମ୍ବୁଜଶଙ୍ଖାଦୈଶ୍ଚକ୍ରେଣ ମୁଷଳେନ ଚ  
ଶିବଶକ୍ତ୍ୟାଙ୍କିତଂ ଲୋକଂ ବାଙ୍ମୟଂ ସଚରାଚରମ୍ ।୩୬।

*(ଏକାମ୍ର ପୁରାଣ, ଚତୁର୍ଥ ଅଧ୍ୟାୟ)*

କପିଳ ସଂହିତାର ରଚୟିତା ଖାଣ୍ଟି ବୈଷ୍ଣବ ସେ ଶିବଧର୍ମର ନିନ୍ଦା କରିନାହାନ୍ତି ବରଂ ଶିବମୁଖରେ ବିଷ୍ଣୁଙ୍କର ପ୍ରଶଂସା ବର୍ଣ୍ଣନା କରି ଶିବ କିପରି ନତମସ୍ତକରେ ବିଷ୍ଣୁଙ୍କର ମହିମା ସ୍ୱୀକାର କରିଥିଲେ ତାହା ବର୍ଣ୍ଣନା କରିଛନ୍ତି । ନିଜେ ମହାଦେବ କହିଛନ୍ତି -

### ମହାଦେବ ଉବାଚ

ହରିର୍ଯଥା ଜଗନ୍ନାଥସ୍ତଥାହଂ ଜଗତାଂପତିଃ ।
ଆବୟୋରନ୍ତରଂ ନାସ୍ତି ଆକାଶେ ପବନୋ ଯଥା ॥୧୨॥
ମମ ନାମ ହରେର୍ନାମ କୀର୍ତ୍ତୟସ୍ୱ ନିରନ୍ତରମ୍ ।
ଦଦାବଃ ପରମାଂମୁକ୍ତିଂ ସାଯୁଜ୍ୟଂ ନାତ୍ର ସଂଶୟଃ ॥୧୩॥
× × × ×
ଯୋଽୟଂ ନାରାୟଣୋ ଦେବଃ ସ ତ୍ୱହଂ ନୀଳକନ୍ଧରଃ ।
ମୟା ବିଚାର୍ଯ୍ୟତେ ଚାହଂ କରୋମି ଚ କରୋତି ସଃ ॥୧୬॥
ଶଙ୍କରୋ ନୀଳକଣ୍ଠଶ୍ଚ ଶ୍ରୀଧରୋ ନୀଳବିଗ୍ରହଃ ।
ଗୌରୀଶୋ ଗୋପିକାକାନ୍ତୋ ଧ୍ୟାୟତାମେକଚେତସା ॥୧୭॥
ମାଧବ ସ୍ୟୋମାଧବସ୍ୟ ନାସ୍ତି ଭେଦଂ ମୟୋଦିତମ୍ ।
ମୂଢ଼ାଭେଦଂ ପ୍ରକୁର୍ବନ୍ତି ପ୍ରପଚ୍ୟନ୍ତେ ହି ରୌରବେ ॥୧୮॥

*(କପିଳ ସଂହିତା-୨୧ ଅଧ୍ୟାୟ)*

ଏହିପରି ଅନେକପୁରାଣରୁ ଉଦ୍ଧାର କରିବାର ବିଶେଷ ଆବଶ୍ୟକତା ନାହିଁ । ଏହି କେତେକ ପଂକ୍ତିରୁ ସ୍ପଷ୍ଟ ଜଣାଯାଏ ଯେ, ଭୁବନେଶ୍ୱରରେ ଶୈବ ଓ ବୈଷ୍ଣବଧର୍ମ ମଧ୍ୟରେ ସମନ୍ୱୟ ସ୍ଥାପିତ ହୋଇଥିଲା । ଉକ୍ତ ଗ୍ରନ୍ଥଦୁଇଟି ତ୍ରୟୋଦଶ ଶତାବ୍ଦୀ ପୂର୍ବରୁ ରଚିତ ହୋଇଥିବା ସମ୍ଭବପର ନୁହେଁ । ଏଗୁଡ଼ିକରେ ଭୁବନେଶ୍ୱରର ଯେଉଁ ପ୍ରକାର ବର୍ଣ୍ଣନା ଦିଆଯାଇଛି ସେଥିରୁ ସ୍ପଷ୍ଟ ଜଣାଯାଏ ଅନଙ୍ଗଭୀମଦେବଙ୍କ ସମୟରୁ ଭୁବନେଶ୍ୱରରେ ବୈଷ୍ଣବଧର୍ମ କ୍ରମଶଃ ପ୍ରାଧାନ୍ୟ ବିସ୍ତାର କରିଥିଲା ଓ ଲିଙ୍ଗରାଜଙ୍କ ପରିବର୍ତ୍ତେ ଅନନ୍ତବାସୁଦେବ ଭୁବନେଶ୍ୱରର ପ୍ରଧାନ ଦେବତାରୂପେ ପରିଗଣିତ ହେଲେ ଓ ଲିଙ୍ଗରାଜଙ୍କ ସେବାପୂଜା ପୂର୍ବରୁ ବାସୁଦେବଙ୍କ ସେବାପୂଜା ଅନୁଷ୍ଠିତହେବାକୁ ଲାଗିଲା; କିନ୍ତୁ ପ୍ରଥମ ପୁରୁଷୋତ୍ତମଦେବଙ୍କ (୧୩୦୮-୧୩୨୮) ସମୟରୁ ରାଧାକୃଷ୍ଣଧର୍ମ ଲୋକସମାଜରେ ବିଶେଷ ପ୍ରଚଳିତ ହୋଇଥିଲା । କାରଣ ସେ ନିଜେ ରାଧାକୃଷ୍ଣଧର୍ମର ପ୍ରଧାନ ପୃଷ୍ଠପୋଷକ ଥିଲେ

ଓ ନିଜେ ଅଭିନବ ଗୀତଗୋବିନ୍ଦ ରଚନା କରିଥିଲେ । ପ୍ରତାପରୁଦ୍ରଙ୍କ ସମୟରେ ଭୁବନେଶ୍ୱରରେ ପ୍ରତିଷ୍ଠିତ ବୈଷ୍ଣବମୂର୍ତ୍ତିମାନଙ୍କ ମଧ୍ୟରେ ଲକ୍ଷ୍ମୀନାରାୟଣ ବା ଲକ୍ଷ୍ମୀନୃସିଂହଙ୍କ ଯୁଗଳମୂର୍ତ୍ତି ସର୍ବପ୍ରଧାନ । ଏହା ଅନ୍ୟ କୌଣସି ମନ୍ଦିରରୁ ଆନୀତ ହୋଇ ଏଠାରେ ରକ୍ଷିତ ହୋଇଥିବାର ସ୍ପଷ୍ଟ ଜଣାଯାଏ । କାରଣ ଭୋଗମଣ୍ଡପର ଏହି ଦ୍ୱାରଟିରେ ପୂର୍ବେ ଲୋକମାନେ ଯିବାଆସିବା କରୁଥିଲେ । ଲୌକିକ ପ୍ରବାଦ ଅନୁସାରେ କଳାପାହାଡ଼ ଆଗମନ ସମୟରେ ପଣ୍ଡାମାନେ ଭୟବିହ୍ୱଳ ହୋଇ ଏହି ମୂର୍ତ୍ତିଟିକୁ ଅନ୍ୟ ଏକ ମନ୍ଦିରରୁ ଘେନିଆସି ଏଠାରେ ଲୁଚାଇ ଦେଇଥିଲେ, ଏହା ସତ୍ୟପରି ଜଣାଯାଏ । ଏହାର ବେଢା ମଧ୍ୟରେ କୌଣସି ମନ୍ଦିରରେ ଥିବାର ଜଣାଯାଏ ।

**ନୃସିଂହ ମନ୍ଦିର** – ଭୋଗମଣ୍ଡପର ଦକ୍ଷିଣରେ ପ୍ରାୟ ୨୦ହାତ ଦୂରରେ ରୋଷଘର ନିକଟରେ ଗୋଟିଏ ମନ୍ଦିରରେ ନୃସିଂହଙ୍କ ମୂର୍ତ୍ତି ଦେଖାଯାଏ । ଏହାକୁ ଶାନ୍ତ ନୃସିଂହ ବୋଲି କହନ୍ତି । ନୃସିଂହ ପୁସ୍ତକାଧ୍ୟୟନ ନିରତ ଓ ଜିହ୍ୱାହୀନ, ଲକ୍ଷ୍ମୀଦେବୀ କୋଳରେ ବସିଛନ୍ତି । ବିଶାଳ ପୀଠ ଉପରେ ମୂର୍ତ୍ତିଟି ସମାସୀନ ।

**ମଳୟଗିରି** – ଭୁବନେଶ୍ୱର ମନ୍ଦିରବେଢାର ଅଗ୍ନିକୋଣରେ ଗୋଟିଏ କୁଦ ଅଛି । କୁଦ ପର୍ଯ୍ୟନ୍ତ ପରବର୍ତ୍ତୀକାଳରେ ସୋପାନଶ୍ରେଣୀ ନିର୍ମିତ ହୋଇଥିଲା । ସେଠାରେ ବିପରୀତଦିଗମୁଖୀ ଦୁଇଟି ଛୋଟ ମନ୍ଦିର ଅଦ୍ୟାପି ବିଦ୍ୟମାନ । ସେହି କୁଦକୁ ମଳୟଗିରି ବୋଲି ଲୋକେ କହନ୍ତି । ଲୌକିକ ପ୍ରବାଦ ଅନୁସାରେ ସେ ଦୁଇଟି ମଧ୍ୟରୁ ଗୋଟିକରେ ଗୋପୀନାଥ ଓ ଅନ୍ୟଟିରେ କୃଷ୍ଣ ମୂର୍ତ୍ତିଥିଲେ । ଉତ୍କଳର ଶେଷ ସ୍ୱାଧୀନ ନରପତି ଗଜପତି ମୁକୁନ୍ଦଦେବ ଗୋପୀନାଥମୂର୍ତ୍ତିଟି ସେଠାରୁ ନେଇଯାଇ ଦାନମୁକୁନ୍ଦପୁରରେ ସେ ମୂର୍ତ୍ତିଟିକୁ ପ୍ରତିଷ୍ଠା କରିବା ନିମିତ୍ତ ଗୋଟିଏ ମନ୍ଦିର ନିର୍ମାଣ କରୁଥିଲେ । ଏହା ସତ୍ୟ ପରି ଜଣାଯାଏ । କାରଣ ଦାନମୁକୁନ୍ଦପୁରରେ ଅଦ୍ୟାପି ଗୋଟିଏ ବିରାଟମନ୍ଦିର ଅସଂପୂର୍ଣ୍ଣ ଅବସ୍ଥାରେ ରହିଛି । ମନ୍ଦିରକୁ ଦେଖିଲେ ଜଣାଯାଏ ଯେ, ଏହାର କାର୍ଯ୍ୟ ଶେଷ ହୋଇନଥିଲା । ୧୯୨୯ ସାଲରେ ଦାନମୁକୁନ୍ଦପୁର ୧୬ ମକଦମ ଗୋପୀନାଥ ମୂର୍ତ୍ତିକୁ ରଖିବା ନିମିତ୍ତ

---

[୧]ବିଦ୍ୟୁଚ୍ଚନ୍ଦ୍ରନିଭଂ ବପୁଃ କମଳଜା ବୈକୁଣ୍ଠୟୋରେକତାଂ
ପ୍ରାପ୍ତଂ ସ୍ନେହରସେନ ରତ୍ନବିଳସଦ୍ ଭୂଷାଭରାଲଂକୃତମ୍
ବିଦ୍ୟାପଙ୍କଜଦର୍ପଣାନ୍ ମଣିମୟଂ କୁମ୍ଭଂ ସରୋଜଂ ଗଦାଂ
ଶଙ୍ଖଚକ୍ରମୟାନି ବିଭ୍ରଦମିତାଂ ଦିବ୍ୟାଂଶ୍ରିୟଂ ବଃ ସଦା)

ଗୋଟିଏ ମନ୍ଦିର ନିର୍ମାଣ କରୁଥିବାର ଲେଖକ ନିଜେ ଦେଖିଛି । ମୂର୍ତ୍ତିଟି ସାକ୍ଷୀଗୋପାଳ ମୂର୍ତ୍ତିପରି ଅତି ସୁନ୍ଦର । ସେ ସ୍ଥାନର ଲୋକମାନଙ୍କୁ ପଚାରିଲେ ଜଣାଯାଏ ଯେ ମୂର୍ତ୍ତିଟି ଏକାମ୍ର କ୍ଷେତ୍ରରୁ ସେଠାକୁ ନିଆଯାଇଥିଲା ।

**ଅନ୍ୟଗୋଟିଏ କୃଷ୍ଣମୂର୍ତ୍ତି** - ୧୯୨୪ ସାଲରେ ଟଙ୍କପାଣି ନିକଟରେ ଭାର୍ଗବୀ ନଦୀ ଗର୍ଭରୁ ଗୋଟିଏ ଗୋଧନ ଚାରଣ କୃଷ୍ଣମୂର୍ତ୍ତି ବାହାରିଥିଲା । ଲୌକିକ ପ୍ରବାଦ ଅନୁସାରେ ଏ ମୂର୍ତ୍ତିଟି ଭୁବନେଶ୍ୱର ଲିଙ୍ଗରାଜ ବେଢା ମଧ୍ୟରୁ ନିଆଯାଇ ଥିଲା । କେତେକଙ୍କ ମତରେ ଏ ମୂର୍ତ୍ତିଟି ରାଜାରାଣୀ ମନ୍ଦିରରେ ଥିଲା । କିନ୍ତୁ ଏହା ସତ୍ୟ ନୁହେଁ ବୋଲି ପୂର୍ବରୁ ପ୍ରମାଣିତ ହୋଇଛି । ଅନ୍ୟ କେତେକଙ୍କ ମତରେ ବାଲକାଟି ନିକଟରେ କୌଣସି ଗ୍ରାମରେ ଏ ମୂର୍ତ୍ତିଟି ପୂର୍ବେ ପୂଜିତ ହେଉଥିଲା ଓ ସେଠାରୁ ଚୋରମାନଙ୍କ ଦ୍ୱାରା ଅପହୃତ ହୋଇଥିଲା । ଭୁବନେଶ୍ୱର ବାଲକାଟି ନିକଟରେ ପ୍ରତାପପୁର ଶାସନ । ସମ୍ଭବତଃ ସେଠାରେ ସ୍ଥାପନକରିବାକୁ କିଏ ଏହି ମୂର୍ତ୍ତିଟି ଭୁବନେଶ୍ୱରରୁ ନେଇଯାଇଥିବ । କିନ୍ତୁ ଏ ମୂର୍ତ୍ତିଟି ଯେ ପ୍ରଥମେ ଭୁବନେଶ୍ୱରରେ ଥିଲା ଏଥିରେ ସନ୍ଦେହ କରିବାର ନାହିଁ । ଲୌକିକ ପ୍ରବାଦ ଅନୁସାରେ ପୁରୁଷୋତ୍ତମଦେବ ମଳୟଗିରି ନିର୍ମାଣ କରିଥିଲେ । ଇତିହାସରୁ ଦୁଇଜଣ ପୁରୁଷୋତ୍ତମଦେବ ଥିବାର ଜଣାଯାଏ ଯଥା ପ୍ରଥମ ପୁରୁଷୋତ୍ତମଦେବ (୧୩୦୮-୧୩୨୧ସାଲ) ଓ ଦ୍ୱିତୀୟ ପୁରୁଷୋତ୍ତମ ଦେବ(୧୪୬୫-୧୪୯୫) । ପ୍ରଥମ ପୁରୁଷୋତ୍ତମଦେବ ପ୍ରଧାନତଃ ରାଧାକୃଷ୍ଣ ଭକ୍ତଥିଲେ । ସେ ଜୟଦେବଙ୍କ ଗୀତଗୋବିନ୍ଦର ମାହାତ୍ମ୍ୟ ଲୋପ କରିବା ପାଇଁ ଅଭିନବ ଗୀତଗୋବିନ୍ଦ ରଚନା କରିଥିଲେ ଓ ନିଜ ରଚିତ ଗୀତଗୋବିନ୍ଦ ବଡ଼ସିଂହାର ସମୟରେ ବୋଲିବା ପାଇଁ ଜଗନ୍ନାଥ ମନ୍ଦିରରେ ଆଦେଶ ଦେଇଥିଲେ (ଚନ୍ଦ୍ରଦତ୍ତଙ୍କ ଭକ୍ତମାଳା-ଅଧ୍ୟାୟ ୪୦) । ପୁନଶ୍ଚ ଜଣାଯାଏ ଯେ, ପୁରୁଷୋତ୍ତମଦେବ କାଞ୍ଚୀ ଯୁଦ୍ଧରେ ଜୟକରି ସେଠାରୁ ଚନ୍ଦ୍ରଶେଖରମୂର୍ତ୍ତି ଘେନିଆସି ଲିଙ୍ଗରାଜଙ୍କୁ ଅର୍ପଣ କରିଥିଲେ ।

ନିର୍ଣ୍ଣୟ ସାଗର ପ୍ରେସରୁ ମୁଦ୍ରିତ ଗୀତଗୋବିନ୍ଦର ଶେଷ ଶ୍ଳୋକ:-

ଇତ୍ଥଂ କେଳିତତୀର୍ବିହୃତ୍ୟ ଯମୁନାକୂଳେ ସମଂ ରାଧୟା
ତଦ୍ରୋମାବଳିମୌକ୍ତିକାବଳିଯୁଗେ ବେଣୀଭ୍ରମଂ ବିଭ୍ରତି
ତତ୍ରାହ୍ଲାଦିକୁଚପ୍ରତ୍ୟାଗଫଳୟୋର୍ଲିପ୍ସାବତୋର୍ହସ୍ତୟୋ-

ର୍ବ୍ୟାପାରାଃ ପୁରୁଷୋତ୍ତମସ୍ୟ ଦଦତୁ ଷ୍ଠାତାଂ ମୁଦାଂ ସଂପଦମ୍ ॥

ଏ ସମସ୍ତ ବିଷୟ ଆଲୋଚନାକଲେ ମନେହୁଏ ଯେ, ପ୍ରଥମ ପୁରୁଷୋତ୍ତମ ଦେବଙ୍କ ସମୟରେ ମଳୟଗିରି ନିର୍ମିତ ହୋଇଥିଲା ।

**କଂସଜଗତୀ** - ସାବିତ୍ରୀ ମନ୍ଦିର ଉତ୍ତରପାର୍ଶ୍ୱରେ କଂସଜଗତୀ ନାମକ ଗୋଟିଏ ବଡ଼ ଉଚ୍ଚ ମଣ୍ଡପ ନିର୍ମିତ ହୋଇଥିଲା । ୧୯୨୯ ମସିହାରେ ମନ୍ଦିର ମରାମତି ସମୟରେ ଏହା ଭଙ୍ଗା ହୋଇଥିଲା । ମଣ୍ଡପଟି ମାଙ୍କଡ଼ାପଥରରେ ନିର୍ମିତ ହୋଇଥିଲା । ଏଠାରେ କଂସମାରଣ ଯାତ୍ରା ଅନୁଷ୍ଠିତ ହେଉଥିବାର ଜଣାଯାଏ ।

**ମକର ମଣ୍ଡପ** - ଗରୁଡ଼ସ୍ତମ୍ଭର ଅଗ୍ନିକୋଣରେ ମକର ମଣ୍ଡପ । ଏଠାରେ ଜନ୍ମାଷ୍ଟମୀଦିନ କୃଷ୍ଣଙ୍କ ଜନ୍ମର ଅଭିନୟ ହୁଏ । ଦେଉଳ ମଧ୍ୟରେ ଗଙ୍ଗାଯମୁନା ମଧ୍ୟ ବିଦ୍ୟମାନ । ଲିଙ୍ଗରାଜ ବେଢାମଧ୍ୟସ୍ଥ ଶତଶତ ଶୈବମନ୍ଦିର ମଧ୍ୟରେ ଏହି କେତେକ ବୈଷ୍ଣବ କୀର୍ତ୍ତି ଦେଖାଯାଏ । ଏଗୁଡ଼ିକ ତ୍ରୟୋଦଶ ଶତାବ୍ଦୀର ପରବର୍ତ୍ତୀ ବୋଲି ମନେହୁଏ ।

ଏହାବ୍ୟତୀତ ଭୁବନେଶ୍ୱରର ଅନ୍ୟ କେତେକସ୍ଥାନରେ ଆହୁରି କେତେକ ବୈଷ୍ଣବମୂର୍ତ୍ତି ଦେଖାଯାଏ ।

ଉତ୍ତରେଶ୍ୱର ମନ୍ଦିରର ଭିତରର ଐଶାନ୍ୟକୋଣରେ କ୍ରୁଦ୍ଧ ନୃସିଂହମୂର୍ତ୍ତି ବିଶେଷ ଦ୍ରଷ୍ଟବ୍ୟ । ଏ ହିରଣ୍ୟକଶିପୁବିଦାରଣ ମୂର୍ତ୍ତି । ଏହି ମୂର୍ତ୍ତିଟି ଅତୀବ ଭୟଙ୍କର । ଲୋଳଜିହ୍ୱ, ବିକୃତାନନ, ପାଦଦ୍ୱାରା 'ହିରଣ୍ୟକଶିପୁ ବିଦାରଣରତ । ଶଙ୍ଖ-ଚକ୍ର-ପାଶ-ଅଙ୍କୁଶ-କୁଳିଶ-ଗଦାଧାରୀ, ଦାରୁଣ, ତ୍ରିନୟନ ତଥା ଉଗ୍ରଦଂଷ୍ଟ୍ର ନୃସିଂହମୂର୍ତ୍ତି ଦକ୍ଷିଣଭାରତରେ ବିଶେଷ ଭାବରେ ପୂଜିତ ହେଉଥିଲା । ବାଳଗଙ୍ଗାଧର ତିଳକ, ତଦ୍‌ରଚିତ '*Orion*' ଗ୍ରନ୍ଥରେ ହିରଣ୍ୟକଶିପୁ ସହିତ ବୈଦିକମୁଚିନର ସାଦୃଶ୍ୟ ଉଲ୍ଲେଖ କରିଛନ୍ତି । ସମ୍ଭବତଃ ଏହି ବୈଦିକ ବୃତ୍ତାନ୍ତରୁ ହିରଣ୍ୟକଶିପୁ ଉପାଖ୍ୟାନ ଉଦ୍ଧୃତ ହୋଇଅଛି । ଏହି କ୍ରୁଦ୍ଧନୃସିଂହମୂର୍ତ୍ତିଟି ମୁଗୁନିପଥରରେ ନିର୍ମିତ । ଏହା ପରବର୍ତ୍ତୀ କାଳରେ ନିର୍ମିତ ହୋଇଥିବା ସ୍ପଷ୍ଟ ଜଣାଯାଏ । ଏହା ଗଙ୍ଗବଂଶୀୟ କୌଣସି ରାଜାଙ୍କ କୀର୍ତ୍ତି ବୋଲି ଜଣାପଡ଼େ ।

**ରାଧାକୃଷ୍ଣ ମୂର୍ତ୍ତି**- ବିନ୍ଦୁସାଗରର ଦକ୍ଷିଣ ଦିଗରେ ପ୍ରତିଷ୍ଠିତ ମଠରେ ଅତିସୁନ୍ଦର ରାଧାକୃଷ୍ଣମୂର୍ତ୍ତି ପୂଜିତ ହୁଏ । ଏହି ମଠଦ୍ୱାରା ନିର୍ମିତ ହୋଇଥିବା ମୂର୍ତ୍ତିଟି ସାକ୍ଷୀଗୋପାଳ ମୂର୍ତ୍ତିପରି ଅତି ରମଣୀୟ । ଭୁବନେଶ୍ୱରରେ ଆଉ କେତୋଟି

ବୈଷ୍ଣବମୂର୍ତ୍ତି ଦେଖାଯାଏ । କିନ୍ତୁ ସେଗୁଡ଼ିକ ନଗଣ୍ୟ । ଭୁବନେଶ୍ୱରରେ ବିଷ୍ଣୁକୀର୍ତ୍ତି ଅତି ଅଳ୍ପ ହେଲେ ମଧ୍ୟ ଗଙ୍ଗବଂଶର ରାଜତ୍ୱସମୟରୁ ଏହା ଶୈବଧର୍ମ ଉପରେ ବିଶେଷ ପ୍ରଭାବ ବିସ୍ତାର କରିଥିଲା । ବୈଷ୍ଣବଧର୍ମର ପ୍ରବଳ - ପ୍ରବାହ ଶୈବ-ଧର୍ମକୁ ପ୍ଲାବିତ କରି ପକାଇଥିଲା । ଏହାଦ୍ୱାରା ଧର୍ମବିପ୍ଳବର ସୃଷ୍ଟି ହୋଇନଥିଲା । ଦକ୍ଷିଣଭାରତରେ ଶୈବ ଓ ବୈଷ୍ଣବମାନଙ୍କ ମଧ୍ୟରେ ଚିରକାଳ କଳହ ବିଦ୍ୟମାନ । ଶୈବ ବୈଷ୍ଣବର ମନ୍ଦିରରେ ପ୍ରବେଶ କଲେ ନିଜକୁ ଅପବିତ୍ର ମନେକରେ । ବୈଷ୍ଣବ ମରଣାପନ୍ନ ଅବସ୍ଥାରେ ମଧ୍ୟ ଶିବମନ୍ଦିରରେ ଆଶ୍ରୟ ନେବାକୁ ଘୋର କୁଣ୍ଠାବୋଧ କରେ । କିନ୍ତୁ ଭୁବନେଶ୍ୱରରେ ଶିବ ବିଷ୍ଣୁଙ୍କର ଅପୂର୍ବମିଳନ ସ୍ୱୟଂ ଲିଙ୍ଗରାଜ ମୂର୍ତ୍ତି 'ହରିହରମୂର୍ତ୍ତି' । ଭୁବନେଶ୍ୱର ଶୈବକ୍ଷେତ୍ର ହେଲେ ମଧ୍ୟ ପରବର୍ତ୍ତୀକାଳରେ ବୈଷ୍ଣବଧର୍ମର ପ୍ରାଧାନ୍ୟ ଯୋଗୁ ପ୍ରତ୍ୟେକ ଯାତ୍ରୀ ପ୍ରଥମେ ଅନନ୍ତବାସୁଦେବଙ୍କର ମୂର୍ତ୍ତି ପରିଦର୍ଶନ କରନ୍ତି । ଲିଙ୍ଗରାଜଙ୍କ ପୂର୍ବରୁ ବାସୁଦେବଙ୍କର ସେବା ପୂଜା ହୋଇଥାଏ । ଭୁବନେଶ୍ୱରର ଅଧିକାଂଶ ଯାତ୍ରା ଉପଯାତ୍ରାମାନଙ୍କରେ ଲିଙ୍ଗରାଜଙ୍କ ଚଳପ୍ରତିମା ଚନ୍ଦ୍ରଶେଖରଙ୍କ ସହିତ ବାସୁଦେବଙ୍କର ଚଳମୂର୍ତ୍ତି ନିଆଯାଏ । ଭୁବନେଶ୍ୱରର ପ୍ରଧାନଯାତ୍ରା ଅଶୋକାଷ୍ଟମୀ ରଥଯାତ୍ରାରେ ଲିଙ୍ଗରାଜଙ୍କ ସହିତ ବାସୁଦେବମୂର୍ତ୍ତି ମଧ୍ୟ ରାମେଶ୍ୱର ଯାଆନ୍ତି । ଚନ୍ଦନଯାତ୍ରାରେ ଲିଙ୍ଗରାଜଙ୍କ ସହିତ ବାସୁଦେବମୂର୍ତ୍ତିଙ୍କର ଅପୂର୍ବ ମିଳନ ହୁଏ । ଦୋଳଯାତ୍ରାରେ ହରି ଓ ହର ମୂର୍ତ୍ତିଙ୍କ ଦୋଳନ ହୁଏ । ଲିଙ୍ଗରାଜଙ୍କ ଅନେକ ଯାତ୍ରା ଉପଯାତ୍ରା ଜଗନ୍ନାଥଙ୍କ ଯାତ୍ରା ଓ ଉପଯାତ୍ରା ଅନୁକରଣରେ ଅନୁଷ୍ଠିତ ହେବାକୁ ଲାଗିଲା । ଚୈତନ୍ୟଦେବଙ୍କ ଉତ୍କଳ ଆଗମନ ପରେ ଉତ୍କଳୀୟ ଇତିହାସରେ ନବଯୁଗର ଆରମ୍ଭ ହେଲା । ସେପର୍ଯ୍ୟନ୍ତ ଭୁବନେଶ୍ୱର ପୁରୀ ପରି ସମଗ୍ର ଭାରତରେ ବିଖ୍ୟାତ ଥିଲା । କିନ୍ତୁ ପୁରୀରେ ଚୈତନ୍ୟ ମହାପ୍ରଭୁ ଓ ତାଙ୍କର ସହଚରମାନେ ଓ ଭକ୍ତକବି ଜଗନ୍ନାଥ, ବଳରାମ, ଅନନ୍ତ, ଅଚ୍ୟୁତ, ଯଶୋବନ୍ତ ପ୍ରଭୃତି ଉତ୍କଳୀୟ ପଞ୍ଚସଖା ବହୁକାଳ ବାସ କରିବାରୁ ପୁରୀ ସମଗ୍ର ଭାରତବର୍ଷରେ ପ୍ରଧାନ ବୈଷ୍ଣବ କ୍ଷେତ୍ରରୂପେ ପରିଗଣିତ ହେଲା ଓ ଭୁବନେଶ୍ୱର କ୍ରମଶଃ ଅବନତି ପଥରେ ଗତି କରିବାକୁ ଲାଗିଲା । ଶୈବ ଭୁବନେଶ୍ୱର କ୍ଷେତ୍ରରେ ମହାପ୍ରସାଦ ପ୍ରଚଳନ ହିଁ ଉଭୟ ଧର୍ମ ମଧ୍ୟରେ ସମନ୍ୱୟର ସ୍ମୃତିସ୍ତମ୍ଭ ରୂପେ ଅଦ୍ୟାପି ବିଦ୍ୟମାନ ।

## ମହାପ୍ରସାଦ ପ୍ରଚଳନ

ମହାପ୍ରସାଦ ପ୍ରଚଳନ ଯୋଗୁ ପୁରୀ ଓ ଭୁବନେଶ୍ୱର ସମଗ୍ର ଭାରତବିଦିତ ।

ହିନ୍ଦୁଧର୍ମରେ ଶତପ୍ରକାର ଭେଦଭାବ ପ୍ରବେଶକରି ଧର୍ମକୁ କଳଙ୍କିତ କରି ପକାଇଛି । ଜାତିଭେଦ, ଧର୍ମଭେଦ, ମତଭେଦ, ପ୍ରଦେଶଭେଦ, କୁଳଭେଦ ଓ ଲୋକାଚାର ଭେଦ ଓ ଅସ୍ପୃଶ୍ୟତା ପ୍ରଭୃତି ଘୋର ସଂକୀର୍ଣ୍ଣ ପ୍ରଥାଗୁଡ଼ିକ ବିଶାଳ ହିନ୍ଦୁସମାଜର ଅସ୍ଥିମଜ୍ଜାଗତ ହୋଇ ସମାଜକୁ ସହସ୍ର ଭାଗରେ ବିଭକ୍ତ କରି ଦେଇଛି । ତେଣୁ ପୂର୍ବେ ହିନ୍ଦୁଧର୍ମରେ ଏକତା ନ ଥିଲା । ଏହି ଐକ୍ୟର ଅଭାବ ଯୋଗୁ ହିନ୍ଦୁମାନେ ଶତଶତବର୍ଷକାଳ ନୃଶଂସ ମୁସଲମାନ ନରପତିମାନଙ୍କର ଅଧୀନତା ସ୍ୱୀକାର କରିଥିଲେ । ଅନ୍ୟ ଧର୍ମମାନଙ୍କ ସହିତ ତୁଳନା କଲେ ଅସବର୍ଣ୍ଣବିବାହ, ଏକପଂକ୍ତିଭୋଜନ ଓ ସମସ୍ତଙ୍କର ଅବାଧ ଧର୍ମମନ୍ଦିରରେ ପ୍ରବେଶ ପ୍ରଭୃତି ହିନ୍ଦୁଧର୍ମରେ କେତୋଟି ପ୍ରଧାନ ଅଭାବ ଲକ୍ଷିତ ହୁଏ । କିନ୍ତୁ ମହାପ୍ରସାଦ ପ୍ରଚଳନ ଦ୍ୱାରା ପ୍ରଧାନ ଅଭାବଟି ଅନେକାଂଶ ବିଦୂରିତ ହେଉଥିଲା ।

ହିନ୍ଦୁଧର୍ମମତରେ ବ୍ରାହ୍ମଣଭୋଜନ ସମୟରେ ବ୍ରାହ୍ମଣ ବ୍ରାହ୍ମଣଙ୍କୁ ମଧ୍ୟ ସ୍ପର୍ଶ କରିବା ଉଚିତ ନୁହେଁ । ଅନ୍ୟ ଜାତିମାନଙ୍କ କଥା ଛାଡ଼ । ଏହା ଭେଦଭାବର ଚୂଡ଼ାନ୍ତ ନିଦର୍ଶନ । କିନ୍ତୁ ପୁରୀ ଓ ଭୁବନେଶ୍ୱରରେ ଆଚାଣ୍ଡାଳବ୍ରାହ୍ମଣ ସମସ୍ତେ ଏକତ୍ର ଭୋଜନ କରୁଥିବା ଦୃଶ୍ୟ ବିଶେଷ ଆନନ୍ଦଦାୟକ । ସଂକୀର୍ଣ୍ଣ କୁସଂସ୍କାରାଚ୍ଛନ୍ନ ହିନ୍ଦୁଧର୍ମରେ ଏହା କ୍ଷୀଣ ଆଲୋକରେଖା ମାତ୍ର । ଜଗନ୍ନାଥ ଓ ଲିଙ୍ଗରାଜଙ୍କ ପ୍ରସାଦ ନିକଟରେ ସମସ୍ତେ ସମାନ । ବ୍ରାହ୍ମଣ ଚାଣ୍ଡାଳ ମଧ୍ୟରେ, ସମ୍ରାଟ୍ ଭିକାରୀ ମଧ୍ୟରେ ପ୍ରଭେଦ ନାହିଁ । ଅନ୍ନ ମହାପ୍ରସାଦ ସମସ୍ତେ ଏକପଂକ୍ତିରେ ଭୋଜନ କରିପାରିବେ । ଭେଦଭାବ କଳୁଷିତ ମାନବ-ନିନ୍ଦୁକ ହିନ୍ଦୁ କିଛି ସମୟ ପାଇଁ ସମସ୍ତ ଭେଦଭାବ ଭୁଲିଯାଇ ସାମ୍ୟ ଓ ମୈତ୍ରୀ ଭାବରେ ଅନୁପ୍ରାଣିତ ହୋଇଯାଏ । ଏହା ମହାପ୍ରସାଦ ପକ୍ଷରେ ଅପୂର୍ବ ଗୌରବର ବିଷୟ । ଭାରତର ସମଗ୍ର ହିନ୍ଦୁମନ୍ଦିରରେ ଯଦି ମହାପ୍ରସାଦ ପ୍ରଥା ପ୍ରଚଳନ ଥାନ୍ତା ତାହାହେଲେ ହିନ୍ଦୁଧର୍ମର ନୀଚ ସଂକୀର୍ଣ୍ଣ ଭେଦଭାବ ବହୁ ପରିମାଣରେ ଅପସାରିତ ହୁଅନ୍ତା । ଏହି ଦୁଇଟି କ୍ଷେତ୍ରରେ ମହାପ୍ରସାଦ ପ୍ରଚଳନ ଉତ୍କଳ ପକ୍ଷରେ ବିଶେଷ ପ୍ରଶଂସନୀୟ ।

ଭୁବନେଶ୍ୱରରେ କେଉଁ ସମୟରେ ମହାପ୍ରସାଦ ପ୍ରଚଳିତ ହୋଇଥିଲା ତାହା କହିବା ସହଜ ନୁହେଁ । ତେବେ ଚତୁର୍ଦ୍ଦଶ ଶତାବ୍ଦୀ ପୂର୍ବରୁ ଏଠାରେ ମହାପ୍ରସାଦ ଚାଲୁଥିବାର କୌଣସି ଅକାଟ୍ୟ ପ୍ରମାଣ ମିଳେନାହିଁ । କାରଣ ସେ ସମୟରେ ରଚିତ ପୁସ୍ତକମାନଙ୍କରେ ଏ ସମ୍ବନ୍ଧରେ ବିଶେଷ ବିବରଣ

ଦିଆଯାଇନାହିଁ ।

"ନୈବେଦ୍ୟଂ ଯସ୍ୟ ଦେବସ୍ୟ ମହାପାତକନାଶନମ୍
ବ୍ରହ୍ମାଦୀନାଂ ଚ ଦେବାନାଂ ଭୋଗ୍ୟଂ ବ୍ରାହ୍ମଣସତ୍ତମାଃ ॥୩୨॥
ଏକାମ୍ରବିପିନେ ବିପ୍ରା ଲିଙ୍ଗଂ ସାକ୍ଷାତ୍ ସନାତନମ୍ ।
ନୈବେଦ୍ୟମସ୍ୟ ବାଞ୍ଛନ୍ତି ଶକ୍ରାଦ୍ୟାସ୍ତ୍ରିଦିବୌକସଃ ॥୩୩॥
ଅଗ୍ରାହ୍ୟମୀଶନୈବେଦ୍ୟଂ ନ ଭୋକ୍ତବ୍ୟମିତି ଦ୍ୱିଜାଃ
ଯାନି ବାକ୍ୟାନି ତାନ୍ୟତ୍ର ନାଦ୍ରିୟନ୍ତେ କଦାଚନ ॥୩୪॥
କାଶ୍ୟାମେକାମ୍ରକେ ସେତୌ ତଥୋଙ୍କାରେଶ୍ୱରେ ଦ୍ୱିଜାଃ
ମହାପ୍ରସାଦଂ ନୈବେଦ୍ୟମିତିପ୍ରାହୁର୍ମହର୍ଷୟଃ ॥୩୫॥
ଏକାମ୍ରକାନନେ ବିଷ୍ଣୋର୍ଗେହେ ବ୍ରାହ୍ମଣସତ୍ତମାଃ ।
ନୈବେଦ୍ୟଂ ଲିଙ୍ଗରାଜସ୍ୟ ପୁଣ୍ୟେ ଶଙ୍କାଚ ମା କୃଥାଃ ॥"
ତଦନାଦୃତ୍ୟ ନରକଂ ଯାନ୍ତି ନାସ୍ତ୍ୟତ୍ର ସଂଶୟଃ ॥୩୬॥

*(କପିଳ ସଂହିତା, ତ୍ରୟୋଦଶ ଅଧ୍ୟାୟ)*

କପିଳ-ସଂହିତା ଚତୁର୍ଦ୍ଦଶ ଶତାବ୍ଦୀର ଗ୍ରନ୍ଥ । କପିଳସଂହିତାରେ ମହାପ୍ରସାଦ ସମ୍ବନ୍ଧରେ ଏହି କେତେକ ପଂକ୍ତି ଲିଖିତ ଅଛି । ଏଥିରୁ ଜଣାଯାଏ ଯେ ଶିବ ନୈବେଦ୍ୟ ଅଗ୍ରାହ୍ୟ ନୁହେଁ । କିନ୍ତୁ ମହାପ୍ରସାଦ ସେ ସମୟରେ ଆଧୁନିକ ଅବସ୍ଥାରେ ଥିବା ଏ ଗ୍ରନ୍ଥରୁ ଜଣାଯାଏ ନାହିଁ ।

କପିଳସଂହିତାରେ ପୁରୀ ମହାପ୍ରସାଦ ବିଷୟ ବର୍ଣ୍ଣିତ ହୋଇଅଛି । କିନ୍ତୁ ଭୁବନେଶ୍ୱରର ଅନ୍ନମହାପ୍ରସାଦ ସମ୍ବନ୍ଧରେ କୌଣସି ଆଭାସ ଏଥିରେ ନାହିଁ ।

ତତ୍ର ଦାରୁସ୍ୱରୂପସ୍ୟ ନିର୍ମାଲ୍ୟଂ ପାପନାଶନମ୍ ।
ଅନ୍ନାଦ୍ୟଂପିଷ୍ଟକଂ ଚୈବ ଯଦନ୍ୟତ୍ ପ୍ରାପ୍ୟତେପରମ୍ ।୩୦।
ଜଗନ୍ନାଥସ୍ୟ ନୈବେଦ୍ୟଂ ମହାପାତକନାଶନଂ ।
ଭକ୍ଷଣାତ୍ ଫଳମାପ୍ନୋତି କପିଳାକୋଟି ଦାନଜମ୍ ।
ପୁରୁଷୋତ୍ତମାପ୍ରଂ କ୍ଷେତ୍ରୀନାସ୍ତି ନାସ୍ତିମହୀସୁରାଃ ।
ଦ୍ୱିଜାତିସ୍ତୁଶ୍ୱପଚାଦନ୍ନଂ ଯତ୍ର ଭୁଞ୍ଜନ୍ତି ପୂପକଂ ॥୩୫॥

*(କପିଳ ସଂହିତା ୫ମ ଅଧ୍ୟାୟ)*

ଏହି ବର୍ଣ୍ଣନାରୁ ସ୍ପଷ୍ଟ ଜଣାଯାଏ ଯେ କପିଳସଂହିତା ରଚନା ସମୟକୁ ଅର୍ଥାତ୍ ଚତୁର୍ଦ୍ଦଶଶତାବ୍ଦୀ ବେଳକୁ ପୁରୀରେ ଅନ୍ନମହାପ୍ରସାଦ ପ୍ରଚଳିତ ହୋଇ

ସାରିଥିଲା ଓ ଜାତିଧର୍ମ ନିର୍ବିଶେଷରେ ସମସ୍ତେ ଏହାକୁ ଆଦର ସହକାରେ ଗ୍ରହଣ କରୁଥିଲେ । ପୁରୀରେ ରାମାନୁଜଧର୍ମ ପ୍ରଚଳିତ ହେବାପରେ ମହାପ୍ରସାଦ ପ୍ରଚଳିତ ହୋଇଥିବାର ଅନୁମିତ ହୁଏ । ରାମାନୁଜଙ୍କ ମତରେ 'ନ ଜାତିଃ କାରଣଂ ଲୋକେ ଗୁଣାଃ କଲ୍ୟାଣହେତବଃ' । ତାଙ୍କ ଧର୍ମ ସାମ୍ୟ ଓ ମୈତ୍ରୀ ଉପରେ ପ୍ରତିଷ୍ଠିତ ଥିଲା । ସେ ନିଜେ ବ୍ରାହ୍ମଣ ହେଲେ ମଧ୍ୟ ଦୀକ୍ଷା ନେବାପରେ ବରଦରାଜଭକ୍ତ କାଞ୍ଚିପୂର୍ଣ୍ଣ ଶୂଦ୍ର ହେଲେ ବି ତାଙ୍କ ଉଚ୍ଛିଷ୍ଟ ଗ୍ରହଣ କରିଥିଲେ । ଶୈବମାନେ ବୈଷ୍ଣବମାନଙ୍କ ଅପେକ୍ଷା ବିଶେଷ ରକ୍ଷଣଶୀଳ । ତେଣୁ ପୁରୀରେ ଅନ୍ନମହାପ୍ରସାଦ ପ୍ରଚଳିତ ହେବାର କିଛି କାଳପରେ ଚଳିଥିବ । ଏ ସମସ୍ତ ଦିଗରୁ ବିଚାର କଲେ ଜଣାଯାଏ ଯେ ଭୁବନେଶ୍ୱର ଅନ୍ନମହାପ୍ରସାଦ ଚତୁର୍ଦ୍ଦଶଶତାବ୍ଦୀର ପୂର୍ବବର୍ତ୍ତୀ ନୁହେଁ ବୋଲି କହିବା ସମୀଚୀନ ନୁହେଁ । କାରଣ ଶ୍ରୀଚୈତନ୍ୟ ମହାପ୍ରଭୁଙ୍କ ସମୟରେ ମଧ୍ୟ ଲିଙ୍ଗରାଜଙ୍କ ମହାପ୍ରସାଦ ସାର୍ବଜନୀନ ହୋଇନଥିଲା । ଚୈତନ୍ୟଙ୍କ ଭକ୍ତ ଓ ସହଚରମାନେ ଲିଙ୍ଗରାଜଙ୍କ ମହାପ୍ରସାଦ ଗ୍ରହଣ କରିବା ପାଇଁ ଅନିଚ୍ଛା ପ୍ରକାଶ କରିଥିଲେ । ସମସ୍ତ ବିଷୟ ନିମ୍ନରେ ଉଦ୍ଧୃତ ହେଲା । କାରଣ ଏହାଦ୍ୱାରା ମହାପ୍ରସାଦର ପ୍ରଚଳନ ସମ୍ବନ୍ଧରେ ଅନେକ ସତ୍ୟମୂଳକ ବୃତ୍ତାନ୍ତ ଜଣାଯାଏ । ୰ମୁରାରିଗୁପ୍ତପ୍ରଣୀତ କରଚାରେ ଏହାର ସବିଶେଷ ବୃତ୍ତାନ୍ତ ଦିଆ ଯାଇଛି । କିନ୍ତୁ ସ୍ୱୟମ୍ଭୂ ଲିଙ୍ଗରାଜ ହରିହର ଐକ୍ୟ ବିଷୟ ବୁଝାଇ ଦେବାରୁ ଚୈତନ୍ୟଙ୍କ ଭକ୍ତ ଓ ସହଚରମାନେ ଭେଦବୁଦ୍ଧି ପରିହାର କରି ଶିବ ନିର୍ମାଲ୍ୟ ଗ୍ରହଣ କରିଥିଲେ ।

'ଚୈତନ୍ୟ ଭାଗବତ' ଗ୍ରନ୍ଥରେ ଅଛି :

ତବେ ପ୍ରଭୁ ଆଇଲେନ ଶ୍ରୀଭୁବନେଶ୍ୱର
ଗୁପ୍ତକାଶୀବାସ ଯଥା କରେନ୍ ଶଙ୍କର
ସର୍ବତୀର୍ଥଜଳ ଯଥା ବିନ୍ଦୁବିନ୍ଦୁ ଆନି
ବିନ୍ଦୁସରୋବର ଶିବ ସୃଜିଲା-ଆପନି
ଶିବପ୍ରିୟ ସରୋବର ବାନୀ ଚୈତନ୍ୟ
ସ୍ନାନକରି ବିଶେଷ କରିଲା ଅତି ଧନ୍ୟ
ନୃତ୍ୟଗୀତ ଶିବଅଗ୍ରେ କରି ଏ ଆନନ୍ଦ

ସେ ରାତ୍ରି ହରିଲା ସେହିଗ୍ରାମେ ଗୌରଚନ୍ଦ୍ର
ଗୋବିନ୍ଦ ଦାସଙ୍କର କରଚା "ଚୈତନ୍ୟ ମଙ୍ଗଳ" ଗ୍ରନ୍ଥରେ ମଧ୍ୟ ଏ ବିଷୟ ବର୍ଣ୍ଣିତ ହୋଇଅଛି । "ତାରପର ଲିଙ୍ଗରାଜେର ମନ୍ଦିରେ ଯାଇୟା, କିଜାନି କି ଭାବେ ପ୍ରଭୁ ଉଠିଲ କାନ୍ଦିୟା ।"

*(ଗୋବିନ୍ଦ ଦାସର କରଚା)*

ଚୈତନ୍ୟ ମଙ୍ଗଳ ଗ୍ରନ୍ଥରେ ଅଛି-

"କାଠାତିପାପ ଧରଣୀ ଛାଡିୟା ଏକାମ୍ର ବନେ
ଦେଖିଲ ଭୁବନେଶ୍ୱର ଲିଙ୍ଗ ବିରୋଚନେ
ବିନ୍ଦୁ ସରୋବରେ ସ୍ନାନ କୈଲ ଗୌରଚନ୍ଦ୍ର"

*(ଚୈତନ୍ୟ ମଙ୍ଗଳ- ଉତ୍କଳଖଣ୍ଡ)*

ଶ୍ରୀମତ ମୁରାରିଗୁପ୍ତଙ୍କ କରଚାରେ ଶ୍ରୀକୃଷ୍ଣଚୈତନ୍ୟଙ୍କର ତ୍ରିଭୁବନେଶ୍ୱର ଦର୍ଶନ ଓ ଏକାମ୍ର କ୍ଷେତ୍ରେ ଅବସ୍ଥାନାଦି ବିଷୟ ବିଶେଷ ବିସ୍ତାରିତ ଭାବରେ ଲିପିବଦ୍ଧ ହୋଇଅଛି ।

ଶ୍ରୀ ଚୈତନ୍ୟ ଦେବ ଭୂମିତଳେ ଦଣ୍ଡବତ ହୋଇ ନତମସ୍ତକରେ କୃତ୍ତିବାସଦେବଙ୍କୁ ବନ୍ଦନା କରିଥିଲେ । ନିତି ଗଦ୍‌ଗଦ୍ ବଚନେ ଦେବାଧିଦେବ ଗିରିଧର ସ୍ତବ ଉଚ୍ଚାରଣ ବେଳେ ଜନୈକ ଶିବଭୃତ୍ୟ ତାହାଙ୍କୁ 'ବରମାଲ୍ୟଗନ୍ଧେ' ବିଭୂଷିତ କରି ତାହାଙ୍କୁ ବହିଁଗୃହରେ ସ୍ଥାନ ଦେଇଥିଲେ । ସୁଖନିଦ୍ରାରେ ରାତ୍ରି ଅତିବାହିତ କରି ମହାପ୍ରଭୁ ପରଦିନ ପ୍ରାତଃ କାଳେ କୃଷ୍ଣଲୀଳା କୀର୍ତ୍ତନ କରିଥିଲେ । ବିନ୍ଦୁସାଗରରେ ସ୍ନାନ ଓ ତ୍ରିଭୁବନେଶ୍ୱର ଶିବଙ୍କୁ ଦର୍ଶନପୂର୍ବକ ଭଗବାନ ଶ୍ରୀଚୈତନ୍ୟ ପ୍ରେମାନନ୍ଦପରିପ୍ଲୁତ ହୋଇ ସେଠାରେ ସୁଖରେ ସମାସୀନ ହୋଇଥିଲେ । ତତ୍‌ପରେ ଭକ୍ତଗଣ ଏକତ୍ର ବରାନ୍ନ ଭୋଜନ ପୂର୍ବକ କୃଷ୍ଣପଦାମ୍ବୁଜ ଧ୍ୟାନ କରି ଶ୍ରୀଚୈତନ୍ୟ ସଂହୃଷ୍ଟଚିତ୍ତରେ ସୁପ୍ତିମଗ୍ନ ହୋଇଥିଲେ । ଦେବାଧିଦେବ ଶୂଳପାଣିଙ୍କର ମହାପ୍ରସାଦ ଗ୍ରହଣ କରିବା ଶ୍ରୀଚୈତନ୍ୟଙ୍କର ମନରେ ଉଦୟ ହେବାରୁ ଜଣେ ବ୍ରାହ୍ମଣ ମହାପ୍ରସାଦ ଆଣି ତାଙ୍କ ସମ୍ମୁଖରେ ଉପସ୍ଥିତ ହୋଇଥିଲେ ଓ ଏହା ଗ୍ରହଣ କରିବା ପାଇଁ ଅନୁରୋଧ କରିଥିଲେ । ଶ୍ରୀ

ଗୌରାଙ୍ଗ ନତମସ୍ତକେ ପ୍ରସାଦ ଗ୍ରହଣ କରି ଅମୃତବତ୍ ଏହା ଆସ୍ୱାଦନ କରିଥିଲେ । ତାଙ୍କର ଏହି ଶିବ ନିର୍ମାଲ୍ୟ ଭକ୍ଷଣର କଥା ଶ୍ରବଣ କରି ତାଙ୍କର ଅନ୍ୟତମ ଭକ୍ତ ମହାତେଜା ଦାମୋଦର ପଣ୍ଡିତ ଜିଜ୍ଞାସା କରିଥିଲେ "ଭୃଗୁଶାପ ହେତୁ ଶିବନିର୍ମାଲ୍ୟ ଗ୍ରହଣୀୟ ନୁହେଁ ତାହା ଜାଣିସୁଦ୍ଧା ଭଗବାନ କାହିଁକି ଏହା ଭକ୍ଷଣ କଲେ ?" ଏ କଥାର ଉତ୍ତରରେ ଶ୍ରୀକୃଷ୍ଣଚୈତନ୍ୟ ସେମାନଙ୍କୁ ଭେଦବୁଦ୍ଧି ପରିହାର କରିବାକୁ ଉପଦେଶ ଦେଇ ବୁଝାଇଦେଲେ ଯେ, "ସ୍ୱୟମ୍ଭୂଲିଙ୍ଗ ସାନ୍ନିଧ୍ୟେ ହରିହରଙ୍କ ଐକ୍ୟ ବିଷୟରେ ଅଭେଦବୁଦ୍ଧି ହୋଇ ପୂଜାକରିଲେ କଦାପି ଶାପଗ୍ରସ୍ତ ହେବ ନାହିଁ ଓ ସେଠାରେ ମହାପ୍ରସାଦ ଗ୍ରହଣ କରିଲେ ଲୋକର ରୋଗମୁକ୍ତି ହୁଏ, ସ୍ଥିର ସମ୍ପତ୍ତି ପ୍ରାପ୍ତି ହୁଏ ଓ ମୋକ୍ଷଲାଭ ହୁଏ ।" ଏହି ରୂପରେ ଶ୍ରୀକୃଷ୍ଣ ଚୈତନ୍ୟ ନିଜ ଉଦାର ଗୁଣରେ ନିଜ ଅନୁଚରମାନଙ୍କ ମଧ୍ୟରୁ ସଂପ୍ରଦାୟଗତ ବିଦ୍ୱେଷବହ୍ନି ନିର୍ବାପିତ କରିବାକୁ ସମର୍ଥ ହୋଇଥିଲେ । ଏହି କାରଣ ଯୋଗୁଁ ଉତ୍କଳୀୟ ଓ ବଙ୍ଗୀୟ ଶୈବ ଓ ବୈଷ୍ଣବମାନଙ୍କ ମଧ୍ୟରେ ଶୈବଧର୍ମ ପ୍ରତି ବିରୁଦ୍ଧ ଓ ବିଦ୍ୱେଷ ଭାବ ଦେଖାଯାଏ ନାହିଁ । ଶ୍ରୀ ଶ୍ରୀକୃଷ୍ଣଚୈତନ୍ୟଚରିତମ୍ -ଶ୍ରୀମତ୍ ମୁରାରିଗୁପ୍ତପ୍ରଣୀତମ୍ ଅଷ୍ଟମସର୍ଗ ପୃଷ୍ଠା ୧୩୬-୧୩୭; ନବମସର୍ଗ ପୃଷ୍ଠା ୧୩୮,୧୪୦)

ଏକାମ୍ରପୁରାଣରେ ମଧ୍ୟ ମହାପ୍ରସାଦ ସମ୍ବନ୍ଧରେ କେତେକ ପଂକ୍ତି ଉଲ୍ଲିଖିତ ହୋଇଛି-

**ବ୍ରହ୍ମୋବାଚ**

ତସ୍ୟ ଶ୍ରୀଭୁବନେଶସ୍ୟ ଧୂପକାଳାର୍ଚ୍ଚିତଂଶିବେ
ଯଦ୍‌ଦ୍ରବ୍ୟଂ ବ୍ରହ୍ମଣୋ ଦୃଷ୍ଟମନ୍ନାଦ୍ୟଂ ସ୍ଥାପ୍ୟତେଽମ୍ବିକେ ॥
ମହାପ୍ରସାଦଂ ତଜ୍‌ଜ୍ଞେୟମିୟଂ ବୈ ବୈଦିକୀ ସ୍ମୃତିଃ ।
ନୈବେଦ୍ୟଂ ତୁ ମୟା ଲଭ୍ୟଂ କି ପୁନର୍ମାନବୈର୍ଭୁବି ॥
× × × × ×
ଅର୍ଦ୍ଧମାତ୍ରାପରଂ ଯଚ୍ଚ ତଦ୍‌ବ୍ରହ୍ମେଦଂ ସନାତନମ୍ ।
ଯାନି ସନ୍ତି ହି ବାକ୍ୟାନି ଶମ୍ଭୋନିର୍ମାଲ୍ୟଦୂଷଣେ ॥
ତାନ୍ୟତ୍ର ନୈବାଦ୍ରିୟନ୍ତେ ଲିଙ୍ଗେ ତ୍ରିଭୁବନେଶ୍ୱରେ ।

କୃଚ୍ଛ୍ରଚାନ୍ଦ୍ରାୟଣା ଯଜ୍ଞା ମାସବ୍ରତପରାୟଣାଃ ॥
ତତ୍ଫଳଂ ସମମାପ୍ନୋତି ନିର୍ମାଲ୍ୟଂ କୃତ୍ତିବାସସଃ ।
× × × × ×
(ଏକାମ୍ରପୁରାଣ, ଦ୍ୱାଦଶ ଅଧ୍ୟାୟ, ୧୯-୨୦, ୨୨-୨୪)

କପିଳସଂହିତାର ବର୍ଣ୍ଣନା ସହିତ ଏହା ପ୍ରାୟ ସମାନ । କିନ୍ତୁ ଏଥିରେ ଆଉପର ବର୍ଣ୍ଣନା ଦିଆଯାଇଛି । ଏହିଗ୍ରନ୍ଥ ସେହି ସମୟର ବା କିଞ୍ଚିତ୍ ପରବର୍ତ୍ତୀ, ଆନୁମାନିକ ଚତୁର୍ଦ୍ଦଶଶତାବ୍ଦୀର । ସେ ସମୟରେ ଶିବନିର୍ମାଲ୍ୟକୁ ଲୋକମାନେ ଅନାଦର କରୁଥିଲେ । ଏ ଗ୍ରନ୍ଥଦୁଇଟିରୁ ଏତିକିମାତ୍ର ଜଣାଯାଏ ଯେ, ଲିଙ୍ଗରାଜ ହେଉଛନ୍ତି 'ହରିହର' ମୂର୍ତ୍ତି । ତେଣୁ ତାଙ୍କର ନୈବେଦ୍ୟ ସମସ୍ତଙ୍କର ଗ୍ରହଣୀୟ । କାଶୀ, ଏକାମ୍ର, ରାମେଶ୍ୱର ଓ ଓଁକାରେଶ୍ୱରରେ ଶିବଙ୍କର ପ୍ରସାଦ ନୈବେଦ୍ୟରୂପେ ଗୃହୀତ ହେଉଥିଲା । ସେ ସମୟରେ ଲିଙ୍ଗରାଜଙ୍କ ମହାପ୍ରସାଦ ଏପରି ବହୁଳ ଭାବରେ ପ୍ରଚାର ହୋଇଥିବା ଆଦୌ ଜଣାଯାଏ ନାହିଁ । କେବଳ ମହାପ୍ରଭୁଙ୍କର ଦୈନିକଭୋଗ ହରିହରଙ୍କୁ ଅର୍ପିତ ହେଉଥିବାରୁ ତାହା ନୈବେଦ୍ୟରୂପେ ସମସ୍ତଙ୍କ ଦ୍ୱାରା ଗୃହୀତ ହେଉଥିଲା । ଲିଙ୍ଗରାଜମନ୍ଦିର ନିର୍ମାଣକାଳରୁ ଏଠାରେ ମହାପ୍ରସାଦ ପ୍ରଚଳିତ ହୋଇଥିବାର କୌଣସି ପ୍ରମାଣ ନାହିଁ । ବରଂ ଶିଳାଲିପିମାନଙ୍କରୁ ଜଣାଯାଏ ଯେ ଭୋଗମଣ୍ଡପ ୧୨୪୩ ସାଲରେ ଓ ନାଟମନ୍ଦିର ୧୨୯୮ ସାଲରେ ନିର୍ମିତ ହୋଇଥିଲା । ଭୋଗମଣ୍ଡପ ଓ ନାଟମନ୍ଦିର ନିର୍ମାଣ ପର୍ଯ୍ୟନ୍ତ ମହାପ୍ରଭୁଙ୍କ ଦୈନିକଭୋଗ ଜଗମୋହନରେ ହେଉଥିଲା । ପୁନଶ୍ଚ ସେ ସମୟରେ ଆଜିକାଲି ପରି ବହୁତ ମହାପ୍ରସାଦ ରନ୍ଧନ କରିବା ନିମିତ୍ତ କୌଣସି ରୋଷଘର ଥିବାର ଜଣାଯାଏ ନାହିଁ । ଭୁବନେଶ୍ୱରର ପ୍ରାଚୀନ ରୋଷଘରକୁ ରାମକୃଷ୍ଣସ୍ୱାମୀ କରିଥିଲେ । ଏହା ୩୦୦ବର୍ଷର ପୂର୍ବବର୍ତ୍ତୀ ନୁହେଁ । ନୂଆ ରୋଷଘର ସୁରଙ୍ଗୀର ରାଜା କରିଥିଲେ । ତେଣୁ ଏହି ଦୁଇଟି ରୋଷ ଗଙ୍ଗବଂଶୀୟ ରାଜାଙ୍କର କୀର୍ତ୍ତି ନୁହେଁ । ନୂଆ ରୋଷଠାରୁ ନାଟମନ୍ଦିରକୁ ଭୋଗବୁହା ରାସ୍ତା ଅଛି । ଭୋଗମଣ୍ଡପର ନାମ ପ୍ରଥମେ ଭୋଗମଣ୍ଡପ ନ ଥିଲା । ଏହା ପଣ୍ଡିତମାନଙ୍କର ଶାସ୍ତ୍ର ଆଲୋଚନା ନିମିତ୍ତ ନିର୍ମିତ ହୋଇଥିଲା । ପରବର୍ତ୍ତୀ କାଳରେ ପୁରୀର ଭୋଗମଣ୍ଡପ ଅନୁକରଣରେ ଏହାର ନାମ ଭୋଗମଣ୍ଡପ ହୋଇଥିଲା । ପୁରୀର ଭୋଗମଣ୍ଡପ ପୁରୁଷୋତ୍ତମଦେବଙ୍କ ଦ୍ୱାରା ନିର୍ମିତ ହୋଇଥିଲା । ଏହି ସବୁକାରଣରୁ ମନେହୁଏ ଯେ ଚତୁର୍ଦ୍ଦଶଶତାବ୍ଦୀ ପୂର୍ବରୁ ଭୁବନେଶ୍ୱରରେ ମହାପ୍ରସାଦ ପ୍ରଚଳିତ ହୋଇ ନ

ଥିଲା । କିନ୍ତୁ ଲିଙ୍ଗରାଜଙ୍କ ନୈବେଦ୍ୟ ଅନାଦୃତ ହେଉନଥିଲା । ତେଣୁ ପରବର୍ତ୍ତୀ କାଳରେ ମହାପ୍ରସାଦ ପ୍ରଚଳନକରିବା ସୁବିଧାଜନକ ହୋଇଥିଲା । ଏହା ନିଶ୍ଚୟ ଯେ, 'ସ୍ୱର୍ଣ୍ଣାଦ୍ରିମହୋଦୟ' ରଚନା ସମୟକୁ ଭୁବନେଶ୍ୱରରେ ମହାପ୍ରସାଦ ସମ୍ପୂର୍ଣ୍ଣରୂପେ ପ୍ରଚଳିତ ହୋଇଥିଲା । ଏହା ୫୦୦ବର୍ଷର ପୂର୍ବବର୍ତ୍ତୀ ଗ୍ରନ୍ଥ ନୁହେଁ । ଏଥିରେ ମହାପ୍ରସାଦ ସମ୍ବନ୍ଧରେ ଦୁଇଟି ଅଧ୍ୟାୟରେ (ଷଷ୍ଠ ଓ ସପ୍ତମ) ବର୍ଣ୍ଣିତ ହୋଇଅଛି । ଏହାକୁ 'ମହାପ୍ରସାଦ-ମାହାତ୍ମ୍ୟ' ବୋଲି କୁହାଯାଏ ।

ଶୈବମହାପ୍ରସାଦ ପ୍ରଚଳନ ସମୟରେ ଅନେକ ରକ୍ଷଣଶୀଳ ପଣ୍ଡିତ ଘୋର ଆପତ୍ତି କରିଥିଲେ । ଅଦ୍ୟାପି ଭୁବନେଶ୍ୱରର କ୍ଷେତ୍ରବାସୀ ବ୍ରାହ୍ମଣମାନେ ବାସୁଦେବଙ୍କ ପ୍ରସାଦକୁ ଗ୍ରହଣ କରନ୍ତି ନାହିଁ । କିନ୍ତୁ ଗତ ୨୦ବର୍ଷ ମଧ୍ୟରେ ଏହା ମହାପ୍ରସାଦରୂପେ ପ୍ରଚଳିତ ହୋଇଗଲାଣି । ତଥାପି ଏହା ବ୍ରାହ୍ମଣେତର ବର୍ଣ୍ଣଦ୍ୱାରା ସ୍ପର୍ଶହେଲେ ଅପବିତ୍ର ହୋଇଯାଏ ବୋଲି ସମସ୍ତଙ୍କର ମତ । କାଳକ୍ରମେ ଏହି ପ୍ରତିବନ୍ଧକ ମଧ୍ୟ ଲୋପ ପାଇଯିବାର ସମ୍ପୂର୍ଣ୍ଣ ସମ୍ଭାବନା ଅଛି । ସେହିପରି ଶୈବମହାପ୍ରସାଦ ପ୍ରଚଳନ ସମୟରେ ନାନା ବିଷୟରେ ଯୁକ୍ତିତର୍କ ହୋଇଥିବ । ରକ୍ଷଣଶୀଳଙ୍କର ଘୋର ପ୍ରତିବାଦ ଯୋଗୁ ସତ୍ୟବାଦୀରେ ଅନ୍ନମହାପ୍ରସାଦ ପ୍ରଚଳିତ ହୋଇପାରିଲା ନାହିଁ । ବର୍ତ୍ତମାନ ଏଠାରେ କେବଳ 'ଶୁଖିଲାଭୋଗ' ପ୍ରଚଳିତ । ଶୁଖିଲାଭୋଗ ଓ ଅନ୍ନମହାପ୍ରସାଦ ମଧ୍ୟରେ ବିଶେଷ ପାର୍ଥକ୍ୟ ଅଛି । ଉତ୍କଳର ତଥା ଭାରତର ଅଧିକାଂଶ ମନ୍ଦିରରେ 'ଶୁଖିଲାଭୋଗ' ପ୍ରସାଦରୂପେ ଗୃହୀତ ହୁଏ । କିନ୍ତୁ ଅନ୍ନମହାପ୍ରସାଦ ପ୍ରଚଳନ ହେବା ସହଜ ନୁହେଁ । କାରଣ ହିନ୍ଦୁଧର୍ମର ନିୟମାନୁସାରେ ଅନ୍ୟ ପାକରେ ଖାଇବା ଅନୁଚିତ । ଶ୍ରୋତ୍ରିୟ ବ୍ରାହ୍ମଣମାନେ ଲୌକିକ ବ୍ରାହ୍ମଣମାନଙ୍କଦ୍ୱାରା ପାକାନ୍ନ ଖାଆନ୍ତି ନାହିଁ । ଏପରି ଅବସ୍ଥାରେ ଲୌକିକ ବ୍ରାହ୍ମଣଙ୍କଦ୍ୱାରା ରନ୍ଧା ହୋଇଥିବା ଅନ୍ନମହାପ୍ରସାଦ ଘୋର ରକ୍ଷଣଶୀଳ ବ୍ରାହ୍ମଣମାନ ପଂକ୍ତିଭେଦ ନକରି ଖାଇବା ଅତିକଷ୍ଟସାଧ୍ୟ । ଅଦ୍ୟାପି ପୁରୀଜିଲ୍ଲାର କେତେକ ଶାସନର ବ୍ରାହ୍ମଣମାନେ ଲିଙ୍ଗରାଜଙ୍କ ଅନ୍ନକୁ ମହାପ୍ରସାଦ ବୋଲି ଗ୍ରହଣ କରନ୍ତି ନାହିଁ । 'ସ୍ୱର୍ଣ୍ଣାଦ୍ରିମହୋଦୟ'ରେ ଏ ସମସ୍ତ ବିଷୟରେ ବିଶଦ ବର୍ଣ୍ଣନା ପ୍ରଦତ୍ତ ହୋଇଅଛି-

ବ୍ରହ୍ମୋବାଚ

ଅଗ୍ରାହ୍ୟଂ ଲିଙ୍ଗନୈବେଦ୍ୟମିତି ପ୍ରାହୁର୍ମହର୍ଷୟଃ ।*(ସ୍ୱ.ମ.୬. ୨)*

**ବ୍ୟାସ ଉବାଚ**

ଏତଲ୍ଲିଙ୍ଗଂ ନ ଦେବାଶ୍ଚ ନ ରୁଦ୍ରୋ ନୈବ ମାଧବଃ ।
ଅର୍ଦ୍ଧମାତ୍ରାପ୍ରଂ ଯତ୍ର ତଦିଦଂ ଲିଙ୍ଗମବ୍ରଜ ॥*(ସ୍ୱ.ମ.୬.୫)*

ଏହାପରେ ଲିଙ୍ଗରାଜଙ୍କ ଓ ତାଙ୍କ ମହାପ୍ରସାଦର ବିସ୍ତୃତ ବର୍ଣ୍ଣନା ଦିଆଯାଇଛି-

ବ୍ରହ୍ମକ୍ଷତ୍ରବିଶଃ ଶୂଦ୍ରାଃ ସର୍ବେ ବର୍ଣ୍ଣାସ୍ତଥାଶ୍ରମାଃ ।
ପଂକ୍ତିଭେଦୋ ନ କର୍ତ୍ତବ୍ୟୋ ଭେଦଦ୍ୱାନ୍ନରକଂ ବ୍ରଜେତ୍ ॥୧୭॥
ଦେବତାଭ୍ୟଃ ପିତୃଭ୍ୟଶ୍ଚ ବ୍ରାହ୍ମଣେଭ୍ୟୋ ଦିନେ ଦିନେ ।
ତାବୁଭୌ ଦାତୃଭୋକ୍ତାରୌ ବ୍ରହ୍ମସାଯୁଜ୍ୟତାଂ ଗତୌ ॥୨୨॥
ନକାଳନିୟମୋ ହୋମେ ବ୍ରତେ ଚାନ୍ଦ୍ରାୟଣେ ଜପେ ।
ପ୍ରାପ୍ତିମାତ୍ରେଣ ଭୋକ୍ତବ୍ୟଂ ଲଭେତ୍ କୋଟିଗୁଣଂ ଫଳମ୍ ॥୨୩॥
ଲିଙ୍ଗରାଜସ୍ୟ ନୈବେଦ୍ୟେ ନାସ୍ତି ସଂସ୍ପୃଷ୍ଟଦୋଷକମ୍
ସକୃଦ୍ ଭକ୍ଷଣମାତ୍ରେଣ ନରୋ ଯାତି ପରଂ ପଦମ୍ ॥୨୪॥
କୁରୁକ୍ଷେତ୍ର ମହାଦାନଂ ଚନ୍ଦ୍ରସୂର୍ଯ୍ୟପରାଗୟୋଃ
ଲିଙ୍ଗରାଜାନ୍ନକଂ ଦତ୍ତଂ ତସ୍ମାତ୍କୋଟିଗୁଣଂ ଭବେତ୍ ॥୨୬॥
(ସ୍ୱର୍ଣ୍ଣାଦ୍ରିମହୋଦୟ୬ଷ୍ଠ ଅଧ୍ୟାୟ)

## ଅନ୍ନଦାନ

ଶୁଷ୍କଂ ବା ପଚିତଂବାପି ନୀତଂ ବା ଦୂରଦେଶତଃ ।
ଲିଙ୍ଗରାଜସ୍ୟ ନୈବେଦ୍ୟଂ ଭୁକ୍ତ୍ୱା ମୁକ୍ତିମବାପ୍ନୁୟାତ୍ ॥ ସ୍ୱ.ମ. ୬।୨୭

**ଦୂରଦେଶକୁ ପଠାଇବା-** ଲିଙ୍ଗରାଜଙ୍କ ଅନ୍ନ ସବୁଠାରୁ ପବିତ୍ରତମ ।

"ଏକାଦଶୀବ୍ରତେ ଯେ ବା ନିରାହାରୈରୁପୋଷିତାଃ ।
ଆକଣ୍ଠ ଭକ୍ଷଣାନ୍ମୁକ୍ତିର୍ବ୍ରତେ କୋଟିଗୁଣଂ ଫଳମ୍ ॥୩୭॥
ବ୍ରତସ୍ଥା ବିଧବା ଚୈବ ସର୍ବେ ବର୍ଣ୍ଣାସ୍ତଥାଶ୍ରମାଃ ।
ତତ୍ପ୍ରାଶନେନ ପୂୟନ୍ତେ ଦୀକ୍ଷିତାଶ୍ଚାଗ୍ନିହୋତ୍ରିଣଃ ॥୩୮॥
(ସ୍ୱର୍ଣ୍ଣାଦ୍ରିମହୋଦୟ ଷଷ୍ଠ ଅଧ୍ୟାୟଃ)

## କିଣାବିକା

- ନ ବିକ୍ରୟକ୍ରୟେ ଦୋଷୋ ନା ଶୌଚାଶୌଚନିର୍ଣ୍ଣୟଃ ।

ନ କାଳନିୟମସ୍ତସ୍ମିନ୍ ପ୍ରାପ୍ତେ ମୁକ୍ତିର୍ନ ସଂଶୟଃ ॥

× × × × ×

ନୀଚେନ ବାପି ସଂସ୍ପୃଷ୍ଟଂ ଭକ୍ଷଣାନ୍ମୁକ୍ତିମାପ୍ନୁୟାତ୍" ॥୭୭॥

ଜଗଦ୍ଧାତ୍ରୀ ଯତ୍ପଚତି ଶମ୍ଭୋରଗ୍ନୌ ଚ ସଂସ୍କୃତମ୍ ॥ ଭୁଙ୍କ୍ତେ ସ୍ୱୟଂ ପରଂବ୍ରହ୍ମ କିଂବା ତନ୍ନହିମୋଚ୍ୟତେ ॥୧୧॥ ଅଗମ୍ୟାଗମନଂ ପାପଂ ଯଚ୍ଚ ବିଶ୍ୱାସଘାତକମ୍ । ତତ୍ସର୍ବଂ ବିଲୟଂ ଯାତି ଲିଙ୍ଗରାଜାନ୍ନଭକ୍ଷଣାତ୍ ॥୧୨॥

ମହାପ୍ରସାଦଂ ତୁ ମହାପବିତ୍ରଂ ବିଷ୍ଣ୍ୱାଦିଦେବୈଃ ପରିସେବିତଂ ଚ ।
ଶୁନୋବକ୍ତ୍ରାତ୍ସଂଚ୍ୟୁତଂ ବାପ୍ୟମେଧ୍ୟେ ଧୃତ୍ୱା ସଭପ୍ରାବନଂ ଭୁଂ ପୁତ୍ର ॥୨୫॥
(ସ୍ୱର୍ଣ୍ଣାଦ୍ରିମହୋଦୟ ୭ମ ଅଧ୍ୟାୟ)

ତଥାପି ଉକ୍ତ ଗ୍ରନ୍ଥରୁ ସ୍ପଷ୍ଟ ଜଣାଯାଏ ଯେ, ଏହା ଲେଖା ହେବା ସମୟରେ ଅନେକ ଲୋକ ମହାପ୍ରସାଦର ନିନ୍ଦାବାଦ କରୁଥିଲେ । ତେଣୁ ଗ୍ରନ୍ଥକାର ତାଙ୍କ ପାଇଁ କଠୋର ଦଣ୍ଡ ବିଧାନ କରିଛନ୍ତି । ଦଣ୍ଡବିଧାନ ଦେଖିଲେ ମନେହୁଏ, ପ୍ରତିବାଦ ମଧ୍ୟ ଭୀଷଣ ହୋଇଥିବ ।

× × × × ×

ନିନ୍ଦକା ନରକଂ ଯାନ୍ତି ମୂଢ଼ାଃ ପଣ୍ଡିତମାନିନଃ ॥୮॥
ନିନ୍ଦକାନାଂ ଜନାନାଂ ଚ ପ୍ରାଣତ୍ୟାଗେ ଦ୍ୱିଜୋତ୍ତମାଃ
ଭୁବନେଶଃ ସ୍ୱୟଂ ସାକ୍ଷାଦ୍ଦଣ୍ଡୟତ୍ୟେବ ନାନ୍ୟଥା ॥୯॥
ସ୍ୱୟଂ ଦଣ୍ଡଧରୋ ଭୂତ୍ୱା ଦଣ୍ଡଂ ଦତ୍ତ୍ୱା ବିଧାନତଃ
ରୌରବେ ନରକେ ବାସଂ ଦଦାତ୍ୟେବ ନସଂଶୟଃ ॥୧୦॥
ନୋ ଭୁଂକ୍ତେ ଚ ତଥା ମୋହାତ୍ କୋଟି ଜନ୍ମ ସ ନାରକୀ ॥୧୫॥
ତଦନ୍ନଂ ନିନ୍ଦତେ ଯସ୍ତୁ ତନ୍ନିନ୍ଦା ବୈ କରୋତି ଯଃ ।
ତତ୍ପୂର୍ଣ୍ଣନାର୍ଚ୍ଚନାଦର୍ଣ୍ୟଂ ତତ୍ସର୍ବଂ ନିଷ୍ଫଳଂ ଭବେତ୍
(ସ୍ୱର୍ଣ୍ଣାଦ୍ରିମହୋଦୟ ୭ମ ଅଧ୍ୟାୟ)

ଲିଙ୍ଗରାଜଙ୍କ ଅନ୍ନରେ ପଙ୍କ୍ତିଭେଦ ନାହିଁ । ବ୍ରାହ୍ମଣ ଭୋଜନରେ ଅନ୍ନଦାନ କଲେ

ଦାତା ଓ ଭୋକ୍ତା ଉଭୟେ ମୁକ୍ତିପ୍ରାପ୍ତ ହୁଅନ୍ତି । ଶୂଦ୍ର ବା ଚାଣ୍ଡାଳ ସ୍ପର୍ଶ କଲେ ମଧ୍ୟ ଏହା ଅପବିତ୍ର ହୁଏ ନାହିଁ । ଅନ୍ନଦାନ ସର୍ବଶ୍ରେଷ୍ଠ ପୁଣ୍ୟକାର୍ଯ୍ୟ । ଶୁଷ୍କ ବା ପର୍ଯ୍ୟୁଷିତ ହେଲେ ମଧ୍ୟ ଏହା ଦୂରଦେଶକୁ ପଠାଯାଇପାରେ । ବ୍ରତ ଉପବାସାର୍ଥରେ ଏହା ଆକଣ୍ଠ ଭକ୍ଷଣୀୟ । ଜାତିବର୍ଣ୍ଣନିର୍ବିଶେଷରେ ଏହା ଭକ୍ଷିତ ହୋଇପାରେ । ଦୀକ୍ଷିତ ଓ ଅଗ୍ନିହୋତ୍ରୀ ବ୍ରାହ୍ମଣ ଓ ବ୍ରତସ୍ଥା ବିଧବାମାନଙ୍କର ମଧ୍ୟ ଏହା ଭୁକ୍ତ ହୋଇପାରେ । ଅନ୍ନ ମହାପ୍ରସାଦ କ୍ରୟବିକ୍ରୟରେ କୌଣସି ଦୋଷ ନାହିଁ । ଅନ୍ନ ମହାପ୍ରସାଦ ସେବାରେ ମଧ୍ୟ ଶୌଚାଶୌଚ ବିଧି ପାଳିତ ହୁଏ ନାହିଁ । ସ୍ୱୟଂ ଭଗବତୀ ଏହା ପାକ କରୁଛନ୍ତି ଓ ପରଂବ୍ରହ୍ମ ସନାତନ ଏହା ଭୋଜନ କରୁଛନ୍ତି । ସଂସାରରେ ଏହାଠାରୁ ଅଧିକ ପବିତ୍ର ବସ୍ତୁ ନାହିଁ । ଅଗମ୍ୟାଗମନ, ବିଶ୍ୱାସଘାତକତା ପ୍ରଭୃତି ପାପ କାଣିଚାଏ ଅନ୍ନପ୍ରସାଦ ସେବାଦ୍ୱାରା ବିଦୂରିତ ହୁଏ । ଘୃଣ୍ୟ ଶ୍ୱାନମୁଖରୁ ସ୍ଖଳିତ ଓ ଅମେଧ୍ୟରେ ପତିତ ମହାପ୍ରସାଦ ମଧ୍ୟ ସେବାକଲେ କୌଣସି ଦୋଷ ନାହିଁ ।

'ସ୍ୱର୍ଣ୍ଣାଦ୍ରିମହୋଦୟ' ରଚନା ସମୟକୁ ମହାପ୍ରସାଦ ଆଧୁନିକ ଅବସ୍ଥାରେ ଉପନୀତ ହୋଇଥିଲା ।

ହିନ୍ଦୁଧର୍ମ ମଧ୍ୟରେ ସଂକୀର୍ଣ୍ଣ ଜାତି ବିଭାଗ ଯୋଗୁଁ ମହାପ୍ରସାଦ ପ୍ରଚଳନ ସମୟରେ ବହୁ ବାଧାବିଘ୍ନ ଆସିଥିବ । ଅନେକ ରକ୍ଷଣଶୀଳ ଲୋକ ଏହାକୁ ନିନ୍ଦା କରିଥିବେ । ଗ୍ରନ୍ଥକାର ଲେଖିଛନ୍ତି ଯେ ନିନ୍ଦୁକମାନେ ମୃତ୍ୟୁପରେ ମହାଦେବଙ୍କ ଦ୍ୱାରା ରୌରବ ନରକରେ ନିକ୍ଷିପ୍ତ ହେବେ । ଯେ ମୋହ ଓ ଅଭିମାନରେ ଏହା ଭକ୍ଷଣ କରିବାକୁ କୁଣ୍ଠାବୋଧ କରେ ସେ କୋଟିଜନ୍ମ ପର୍ଯ୍ୟନ୍ତ ନରକଗାମୀ ହୁଏ । ଯେ ଏହାର ନିନ୍ଦାକରେ ତାହାର ଦର୍ଶନ, ସ୍ପର୍ଶନ ବା କୃଚ୍ଛ୍ର ଚାନ୍ଦ୍ରାୟଣ ବ୍ରତ ପାଳନ ଦ୍ୱାରା ଯେଉଁ ଅସମ୍ଭବ ପୁଣ୍ୟ ଲାଭ ହୋଇଥାଏ ତାହା କ୍ଷଣକେ ନଷ୍ଟ ହୋଇଥାଏ । ଅଦ୍ୟାପି କେତେକ ଲୋକ ଏହାକୁ ହିନ୍ଦୁ ହୋଟେଲ୍ Hindu Hotel ବୋଲି କହନ୍ତି । 'ସ୍ୱର୍ଣ୍ଣାଦ୍ରିମହୋଦୟ'ର ଉକ୍ତ ଦୁଇଟି ଅଧ୍ୟାୟ ସଂସ୍କାର-ପ୍ରୟାସୀମାନଙ୍କର ବିଶେଷ ପ୍ରଣିଧାନଯୋଗ୍ୟ । କାରଣ ହିନ୍ଦୁଧର୍ମରେ ସଂସ୍କାର କରିବାକୁ ଗଲେ ଘୋର ବାଧାବିଘ୍ନ ସହିବାକୁ ହୁଏ । ଯାହାହେଉ ବହୁବର୍ଷ ହେଲା ପୁରୀ ପରି ଭୁବନେଶ୍ୱର କ୍ଷେତ୍ରରେ ମହାପ୍ରସାଦ ପ୍ରଚଳିତ ହୋଇଆସୁଅଛି । ଏହାଦ୍ୱାରା ବହୁଦୂରଦେଶାଗତ ଯାତ୍ରୀମାନେ ଅନାୟାସରେ

ତୀର୍ଥସ୍ଥାନରେ ନିଜର ଅନ୍ନସଂସ୍ଥାନ କରି ପାରୁଛନ୍ତି । ଗତ ପଚାଶ ବର୍ଷ ମଧ୍ୟରେ କପିଳେଶ୍ୱରଙ୍କଠାରେ ଅନ୍ନମହାପ୍ରସାଦ ପ୍ରଚଳିତ ହେଉଛି । ଏହା ଅତି ଅଳ୍ପଦିନ ମଧ୍ୟରେ ଭୁବନେଶ୍ୱର ପରି ବିଶେଷ ଲୋକପ୍ରିୟ ହୋଇଯିବ । ଏହାଦ୍ୱାରା ଅନେକ ଲୋକ ପରିବାରର ଭରଣପୋଷଣ କରିବାପାଇଁ ସମର୍ଥ ହେଉଛନ୍ତି ଓ ଭେଦଭାବ ମଧ୍ୟ ଅନେକ ପରିମାଣରେ ଦୂରୀଭୂତ ହେଉଛି । ପ୍ରତ୍ୟେକ ଦିଗରୁ ଦେଖିଲେ ଜଣାଯାଏ ଯେ ଏହା ଗୋଟିଏ ଲୋକ ହିତକର ପ୍ରଥା ଓ ସମଗ୍ର ଭାରତରେ ପ୍ରଚଳିତ ହେବା ଆବଶ୍ୟକ ।

ଅବଶ୍ୟ ଖାଦ୍ୟ ପଦାର୍ଥଗୁଡ଼ିକର ଅବସ୍ଥା ପ୍ରତି ବିଶେଷ ଦୃଷ୍ଟି ଦେବାକୁ ହେବ ଓ ଆକାର ପ୍ରକାରରେ ଅନେକ ପ୍ରକାର ଉନ୍ନତି କରିବାକୁ ହେବ । ତାହା ହେଲେ ଭବିଷ୍ୟତରେ ଏହା ଗୋଟିଏ ନିର୍ଦ୍ଦୋଷ ଅନୁଷ୍ଠାନରୂପେ ପରିଗଣିତ ହେବ ।

ପ୍ରତାପରୁଦ୍ରଦେବଙ୍କ ସମୟରେ ବୈଷ୍ଣବଧର୍ମ ସମଗ୍ର ଉତ୍କଳରେ ପ୍ରଚାରିତ ହୋଇଥିଲା ଓ ଶୈବଧର୍ମର ସତ୍ତା ମଧ୍ୟ ରହିଲା ନାହିଁ । ଭୁବନେଶ୍ୱରର ମାହାତ୍ମ୍ୟ କ୍ରମଶଃ ଲୋପପାଇବାକୁ ଲାଗିଲା । କିନ୍ତୁ ଭୁବନେଶ୍ୱର ବୈଷ୍ଣବକ୍ଷେତ୍ର ବୋଲି ଆଦୌ ପରିଚିତ ହେଲାନାହିଁ । ଅଥଚ ଶୈବଧର୍ମରେ ଏହା ଯେଉଁ ବିଶିଷ୍ଟ ସ୍ଥାନ ଅଧିକାର କରିଥିଲା ସେଥିରୁ ବାମନ ବ୍ରତ, ଅନନ୍ତବ୍ରତ (ଭାଦ୍ର-ଶୁକ୍ଳ-ଚତୁର୍ଦ୍ଦଶୀ) ଚ୍ୟୁତ ହେଲା । ଭୁବନେଶ୍ୱର ଶୈବକ୍ଷେତ୍ର ହେଲେ ମଧ୍ୟ ୫୦୦ ବର୍ଷ କାଳ ବୈଷ୍ଣବ ନରପତିମାନଙ୍କର ଗୋଟିଏ ପ୍ରଧାନ ବାସସ୍ଥାନ ହୋଇ ରହିବାରୁ ଏଠାରେ କେତେକ ବୈଷ୍ଣବକୀର୍ତ୍ତି ଦେଖାଯାଏ । ଶିବମନ୍ଦିର ତୁଳନାରେ ସେଗୁଡ଼ିକ ନଗଣ୍ୟ ହେଲେ ମଧ୍ୟ ସେମାନେ ବୈଷ୍ଣବଧର୍ମ ପ୍ରଚାରର ମୂକସାକ୍ଷୀରୂପେ ଅଦ୍ୟାପି ବିଦ୍ୟମାନ ।



## ପଞ୍ଚମ ଅଧ୍ୟାୟ

# ଉତ୍କଳୀୟ ମନ୍ଦିରଶିଳ୍ପ ଓ ସ୍ଥାପତ୍ୟର କ୍ରମବିକାଶ

ମୁସଲମାନମାନଙ୍କର ଶତ ଶତ ବର୍ଷର ଅତ୍ୟାଚାରଯୋଗୁ ଆଜି ବିଶାଳ ଭାରତବର୍ଷରୁ ଅସଂଖ୍ୟ ବୌଦ୍ଧ ଓ ହିନ୍ଦୁ କୀର୍ତ୍ତି ଚିରକାଳପାଇଁ ଲୁପ୍ତ ହୋଇଯାଇଛି । ହିନ୍ଦୁମନ୍ଦିର ଧ୍ୱଂସକରିବା ସେମାନଙ୍କର ପ୍ରଧାନ ଧର୍ମ ଥିଲା । ତେଣୁ ମଧ୍ୟଏସିଆ ଅନ୍ତର୍ଗତ ଆମୁଦରିଆ-ସିରିଦରିଆ ନଦୀଠାରୁ ପୂର୍ବରେ ବ୍ରହ୍ମପୁତ୍ରନଦୀ ପର୍ଯ୍ୟନ୍ତ ଓ ଉତ୍ତରରେ ହିମାଳୟଠାରୁ ଦକ୍ଷିଣରେ କୃଷ୍ଣାନଦୀ ପର୍ଯ୍ୟନ୍ତ ବିରାଟ-ଭୂଖଣ୍ଡରେ କେତେ ପ୍ରାଚୀନ କୀର୍ତ୍ତି ମୁସଲମାନ ନରପତିମାନଙ୍କଦ୍ୱାରା ଧ୍ୱସ୍ତବିଧ୍ୱସ୍ତ ହୋଇଅଛି, ତାହା କିଏ କହିପାରିବ ? ଆହୁରି ମଧ ଭାରତର ଅନେକ କୀର୍ତ୍ତି ନୈସର୍ଗିକ ପ୍ରକ୍ରିୟା ଦ୍ୱାରା ନଷ୍ଟ ହୋଇଯାଇଛି । କୃଷ୍ଣାର ଦକ୍ଷିଣକୁ ମୁସଲମାନ ରାଜ୍ୟ ବିସ୍ତୃତ ହୋଇଥିଲେ ସୁଦ୍ଧା ସେ ଅଞ୍ଚଳରେ ବିଶେଷ କିଛି କ୍ଷତି ହୋଇନାହିଁ । ଉତ୍ତରଭାରତର ପ୍ରଧାନ ପ୍ରଧାନ ତୀର୍ଥମାନଙ୍କରେ ଅଦ୍ୟାବଧି ଯେଉଁ ମନ୍ଦିରସକଳ ବିଦ୍ୟମାନ ଅଛି ସେଗୁଡ଼ିକ ମଧ୍ୟରୁ ଅଧିକାଂଶ ପରବର୍ତ୍ତୀ ଯୁଗର କୀର୍ତ୍ତି । ତେଣୁ ଉତ୍ତରଭାରତରେ ପ୍ରାଚୀନତମ ବୌଦ୍ଧ ବା ହିନ୍ଦୁ ମନ୍ଦିରର ବିଶେଷ ଅଭାବ ଅନୁଭୂତ ହୁଏ । ସୌଭାଗ୍ୟର ବିଷୟ ଭାରତର କେତେକ ପ୍ରାଚୀନ କୀର୍ତ୍ତି ବହୁକାଳ ପର୍ଯ୍ୟନ୍ତ ଦୁର୍ଭେଦ୍ୟ ଅରଣ୍ୟାନୀ ମଧ୍ୟରେ ଲୁକ୍କାୟିତ ଓ ଭୂଗର୍ଭରେ ପ୍ରୋଥିତ ଥିବାରୁ ଏବଂ କେତେକ ଦୁରତିକ୍ରମ୍ୟ ହିମାଳୟର ପାଦଦେଶରେ ବିଦ୍ୟମାନ ଥିବାରୁ ମୁସଲମାନ ଆକ୍ରମଣରୁ ରକ୍ଷା ପାଇ ଯାଇଛନ୍ତି । ସେଗୁଡ଼ିକ ଭାରତୀୟ ଶିଳ୍ପର ପ୍ରାଚୀନ ଗୌରବମୟ ଇତିହାସର କିଞ୍ଚିତ୍ ଆଭାସ ଦେଉଛି । ବର୍ତ୍ତମାନ ଐତିହାସିକମାନଙ୍କର ଏହାହିଁ ପ୍ରଧାନ ଅବଲମ୍ବନ । ଉତ୍ତରଭାରତର ମନ୍ଦିରଗୁଡ଼ିକ ସାଧାରଣତଃ ଶିଖର ଆଖ୍ୟାରେ ଅଭିହିତ ହୁଅନ୍ତି ।

### ଶିଖରର ପ୍ରବର୍ତ୍ତନ

ଶିଖରର ପ୍ରବର୍ତ୍ତନ ସମ୍ବନ୍ଧରେ ଐତିହାସିକମାନେ ନାନାପ୍ରକାର ମତ ପ୍ରଚାର କରିଥାନ୍ତି । ମାନ୍ଦ୍ରାଜ ପ୍ରତ୍ନତତ୍ତ୍ୱବିଦ୍ ଶ୍ରୀଯୁକ୍ତ ଏସ୍ କୃଷ୍ଣସ୍ୱାମୀ ଆୟଙ୍ଗାର ମହାଶୟ କହନ୍ତି ଯେ ଦେବତାମାନଙ୍କ ଆକାଶଗାମୀ ରଥସହିତ କାଞ୍ଚନିକ ସାଦୃଶ୍ୟବଶତଃ ଶୋଭାଯାତ୍ରାର ରଥଗୁଡ଼ିକୁ (Processional cars) ବିମାନ ବୋଲି କୁହାଯାଏ । ଏଥିରୁ ଗର୍ଭଗୃହସ୍ଥ ଉପରିସ୍ଥ ସ୍ଥଳଟି (Tower) 'ବିମାନ' ଆଖ୍ୟାପ୍ରାପ୍ତ ହୋଇଛି । ତାଙ୍କ ମତରେ ଶୋଭାଯାତ୍ରାର ବିମାନଗୁଡ଼ିକ କ୍ରମଶଃ

ସାମରିକ ରଥର ସ୍ଥାନ ଅଧିକାର କରିଥିଲା । ମହାବଳୀପୁରର ପ୍ରସ୍ତରଖୋଦିତ ମନ୍ଦିରଗୁଡ଼ିକ 'ରଥ' ନାମରେ ଅଭିହିତ । ଦାକ୍ଷିଣାତ୍ୟର ତିରୁବନନ୍ତପୁରମ୍‌ର ବିଖ୍ୟାତ ମନ୍ଦିରକୁ ରଥ ବୋଲି କୁହାଯାଏ । ବାସ୍ତବିକ ଉତ୍କଳରେ ଅଦ୍ୟାବଧି ପ୍ରଚଳିତ ରଥଗୁଡ଼ିକର ମନ୍ଦିରବିମାନ ସହିତ ଅନେକ ସୌସାଦୃଶ୍ୟ ଦେଖାଯାଏ । ଉତ୍କଳରେ ପ୍ରଚଳିତ ବିମାନଗୁଡ଼ିକ ପୀଢ଼ଦେଉଳ ପରି ଦେଖାଯାଏ । ବୈଦିକଯୁଗରୁ ଭାରତରେ ରଥନିର୍ମାଣ ପ୍ରଥା ପ୍ରଚଳିତ ଅଛି । ଫର୍ଗୁସନ୍‌ଙ୍କ ମତରେ ଭାରତରେ ପ୍ରସ୍ତରଶିଳ୍ପ କାଷ୍ଠଶିଳ୍ପର ଅନୁକରଣରେ ନିର୍ମିତ । ବଂଶନିର୍ମିତ ରଥର ବସ୍ତ୍ରାବୃତ ବେଷ୍ଟନୀରୁ ମନ୍ଦିରଶିଖରର ଉଦ୍‌ବର୍ତ୍ତନ ।

ଆର୍ଯ୍ୟାବର୍ତ୍ତ ଶ୍ରେଣୀୟ ମନ୍ଦିର ନର୍ମଦାର ଦକ୍ଷିଣକୁ ବେଶି ଦେଖାଯାଏ ନାହିଁ । ସ୍ଫୀତୋଦରବିମାନ ଓ ପାର୍ଶ୍ୱଦେଶର ଊର୍ଦ୍ଧ୍ୱାଧଃ ବକ୍ରତା (Curvature) ଏ ସକଳ ମନ୍ଦିରର ପ୍ରଧାନ ବିଶେଷତ୍ୱ ବୋଲି ପରିଗଣିତ । ଆର୍ଯ୍ୟଭାରତୀୟ ମନ୍ଦିରର ଆକାର ସାଧାରଣତଃ ଚତୁଷ୍କୋଣ, କିନ୍ତୁ ଦ୍ରାବିଡ଼ ପ୍ରଥାରେ ନିର୍ମିତ ଦେଉଳଗୁଡ଼ିକ ପରି ଏଗୁଡ଼ିକ ଏକାଧିକ ତଳ ବିଶିଷ୍ଟନୁହେଁ । ଊର୍ଦ୍ଧ୍ୱାଧଃ (Vertical) ଓ ପାତିତ (Horizontal) ରେଖାର ନିପୁଣ ସମାବେଶ ଅନତିଉଚ୍ଚ ମନ୍ଦିରମାନଙ୍କର ସ୍ଥାପତ୍ୟ-ମହିମାରେ ବେଶ ପରିସ୍ଫୁଟ ହୁଏ । ସିମ୍ପସନ୍‌ଙ୍କ ମତରେ ରଥଯାତ୍ରାର ରଥ ଉପରେ ଯେ ବଂଶନିର୍ମିତ ବେଷ୍ଟନୀ ଥାଏ ତାହାର ଅନୁକରଣରେ ଏହିଶ୍ରେଣୀୟ ମନ୍ଦିର ଚୂଡ଼ାର ଉଦ୍ଭବ ହୋଇଅଛି । ମୁକ୍ତେଶ୍ୱର ମନ୍ଦିର ଏହାର ପ୍ରାଚୀନତମ ଆଦର୍ଶ ।

ମାନନୀୟ ହାଭେଲ୍ ପ୍ରାଚ୍ୟମନ୍ଦିରର ଶିଖର ବା ବିମାନସମ୍ବନ୍ଧରେ କେତୋଟି କୌତୂହଳଜନକ ତଥ୍ୟ ପ୍ରକାଶ କରିଛନ୍ତି । ତାଙ୍କ ମତରେ ଶିଖର ନିର୍ମାଣ ପ୍ରଣାଳୀ ସର୍ବଜନପରିଚିତ ମେସୋପଟାମିୟା ବା ଇରାକ୍‌ର ବହୁପ୍ରାଚୀନ Nineveh (ନିନେଭ) ନଗରୀରୁ ଆମଦାନୀ ହୋଇଥିଲା । ସେ ସ୍ଥାନର ସ୍ଥାପତ୍ୟ ନିଦର୍ଶନର ମଧ୍ୟ ଏ ରୂପ ଗଠନଯୁକ୍ତ ମନ୍ଦିରାଦିର ଧ୍ୱଂସାବଶେଷ ଆଜିପର୍ଯ୍ୟନ୍ତ ଦେଖାଯାଏ । ସୁତରାଂ ଆର୍ଯ୍ୟାବର୍ତ୍ତ ସ୍ଥାପତ୍ୟପଦ୍ଧତି ଯେ କି ପରିମାଣରେ ବିଦେଶୀ ପ୍ରଭାବରେ ଅନୁପ୍ରାଣିତ ସେ ସମ୍ବନ୍ଧରେ ଆଜିପର୍ଯ୍ୟନ୍ତ ମତଭେଦ ରହିଛି । ଶ୍ରୀଯୁକ୍ତ ହେଭଲ ଲେୟାର୍ଡ଼ ପ୍ରଣୀତ 'ନିନେଭ'ରୁ ପ୍ରମାଣସ୍ୱରୂପ ଯେଉଁ ଚିତ୍ରଟିର ଉଲ୍ଲେଖ କରିଛନ୍ତି ତାହାର ପ୍ରତିଲିପିଟି ଉତ୍ତମରୂପେ ଲକ୍ଷ୍ୟକଲେ ଦେଖାଯାଏ ଯେ ଶିଖରଦ୍ୱୟର

ଅଗ୍ରଭାଗରେ 'ଆଳକ' ପରି ଗୋଟିଏ ପଦାର୍ଥ ଦେଖାଯାଏ । କିନ୍ତୁ ଏଥିରେ ଶିରା ନାହିଁ ଓ ଶୀର୍ଷସ୍ଥ କଳସର କୌଣସି ଚିହ୍ନ ଦେଖାଯାଏ ନାହିଁ । ତେଣୁ ହାଭେଲଙ୍କ ମତବାଦ ସମ୍ପୂର୍ଣ୍ଣ ଗୃହୀତ ହେଲେ ମଧ୍ୟ ଏ ପରିବର୍ତ୍ତନ ବା ପରିବର୍ଦ୍ଧନ ଭାରତରେ ଘଟିଛି ବୋଲି କୁହାଯାଇପାରିବ ।

. . E.B. Havell) ମତରେ ବୈଦିକ ଅଗ୍ନିହୋତ୍ରୀମାନଙ୍କର ଗୃହରୁ ଉଦ୍ଭୂତ (derived from the sacrificial sites of the ancient Aryans of India) these sacrificial taernacles though perhaps primitive in form and structure served all the purposes of temples and doubtless, the proto-type those which were in latter time built in a great and costly scale of permanent materials" ଏହିପରି ହୋମାଗାରର ଉପରି ଭାଗରେ ଧୂମ ନିର୍ଗମନ ନିମିତ୍ତ କ୍ଷୁଦ୍ରକ୍ଷୁଦ୍ର ଦ୍ୱାର ଥିଲା । ହିନ୍ଦୁ ମନ୍ଦିରର ଶିଖର ତାହାର ଅନୁକରଣରେ ନିର୍ମିତ (*Havell's Handbook of Indian Art*) ଭୁବନେଶ୍ୱର ଲିଙ୍ଗରାଜ ମନ୍ଦିରର ରେଖ ଅଂଶର ଉପରିଭାଗରେ ଧୂମନିର୍ଗମନ ଦ୍ୱାରର ସ୍ମାରକସ୍ୱରୂପ କେତୋଟି ଦ୍ୱାର ଦେଖାଯାଏ । ହାଭେଲଙ୍କ ମତରେ ଏହା ଲିଙ୍ଗରାଜ ମନ୍ଦିରର ପ୍ରାଚୀନତ୍ୱ ଜ୍ଞାପକ ।

ହାଭେଲଙ୍କ ମତରେ ଆର୍ଯ୍ୟମାନେ ମେସୋପଟାମିୟାରେ ୧୭୪୬ ଖ୍ରୀଷ୍ଟପୂର୍ବଠାରୁ ୬୦୦ବର୍ଷ ରାଜତ୍ୱ କରିଥିଲେ ଓ ସେଠାରେ ଆର୍ଯ୍ୟସଭ୍ୟତା ପ୍ରଚଳନ କରିଥିଲେ । ତେଣୁ ସେ ସ୍ଥାନରୁ ପ୍ରାପ୍ତଚିତ୍ର ସହିତ ଭାରତୀୟ ଶିଖରର ଏପରି ସାଦୃଶ୍ୟ ବିଦ୍ୟମାନ ।

**ଲିଙ୍ଗରାଜ ମନ୍ଦିରର ନିର୍ମାଣକାଳ :-**

Smith D. Barnetଙ୍କ ମତରେ ଲିଙ୍ଗରାଜମନ୍ଦିର ୯ମ ବା ୧୦ମ ଶତାବ୍ଦୀର କୀର୍ତ୍ତି ଓ ଆର୍ଯ୍ୟାବର୍ତ୍ତ ବା ଭାରତୀୟ ଆର୍ଯ୍ୟସ୍ଥାପତ୍ୟ ପଦ୍ଧତିର (Indo - Aryan) ସର୍ବୋତ୍କୃଷ୍ଟ ନିଦର୍ଶନ । ସେମାନଙ୍କ ମତରେ ପ୍ରଥମେ ଶିଖର ଓ ତାହାପୂର୍ବରେ ଗୋଟିଏ ମଣ୍ଡପ ମାତ୍ର ନିର୍ମିତ ହେଉଥିଲା । ୬୫୦ରୁ ୯୦୦ ଖ୍ରୀଷ୍ଟାବ୍ଦ ମଧ୍ୟରେ ନିର୍ମିତ ଭୁବନେଶ୍ୱରର ପ୍ରାଚୀନ ମନ୍ଦିରପ୍ରଭୃତି ଦେଖି ମନେହୁଏ

ପୂର୍ବେ ଶିଖର ସେପରି ଉଚ୍ଚ ହେଉନଥିଲା । ଉଚ୍ଚଶିଖରଯୁକ୍ତ ଲିଙ୍ଗରାଜ ମନ୍ଦିର ଯେ ପରବର୍ତ୍ତୀ କାଳର Dr. Barnet ପ୍ରଭୃତି ତାହା ବିବେଚନା କରିବାର ଏହା ଅନ୍ୟତମ କାରଣ । ଏହା କିନ୍ତୁ ଠିକ୍ ନୁହେଁ ।

ଶିଖରର ପ୍ରବର୍ତ୍ତନ ସମ୍ବନ୍ଧରେ ନାନାପ୍ରକାର ମତ ପ୍ରକାଶିତ ହୁଏ । ଭାରତର ଇତିହାସ ଆଜିପର୍ଯ୍ୟନ୍ତ ଧାରାବାହିକରୂପେ ଲିପିବଦ୍ଧ ହୋଇନାହିଁ । ତେଣୁ ଏହା ସମ୍ବନ୍ଧରେ କୌଣସି ଅଭ୍ରାନ୍ତ ମତ ଦେବା ସହଜ ନୁହେଁ । କେବଳ ପାଠକମାନଙ୍କର ଅବବୋଧ ନିମିତ୍ତ ଶିଖର ସମ୍ବନ୍ଧରେ ଆଲୋଚନା କରାଗଲା ।

**ଭଦ୍ରଦେଉଳ**

ଉତ୍କଳରେ କେବେ ଶିଖରଜାତୀୟ ମନ୍ଦିର ନିର୍ମାଣପ୍ରଥା ପ୍ରଚଳିତ ହୋଇଥିଲା ତାହା କହିବା ସହଜ ନୁହେଁ । ଖାରବେଳଙ୍କ ଲିପିରୁ ସ୍ପଷ୍ଟ ଜଣାଯାଏ ଯେ, ଖାରବେଳଙ୍କ ପୂର୍ବବର୍ତ୍ତୀ ରାଜାମାନେ ମଧ୍ୟ କଳିଙ୍ଗ ରାଜଧାନୀରେ ଶିଖର ଓ ଗୋପୁର ଇତ୍ୟାଦି ନିର୍ମାଣ କରିଥିଲେ । ସେ ନିଜ ରାଜତ୍ୱର ଦ୍ୱାଦଶ ବର୍ଷରେ ଅନେକ ଶିଖର, ଗୋପୁର ନିର୍ମାଣ କରିଥିଲେ । "ଦ୍ୱାଦଶେ ବର୍ଷେ × × × × ବୀଥିଚତ୍ୱର, ପରିଘାନ୍, ଗୋପୁରାଣି ଶିଖରାଣି ନିବେଶୟତି" କିନ୍ତୁ ଦୁଃଖର ବିଷୟ ଉତ୍କଳର ଖ୍ରୀଷ୍ଟପୂର୍ବ ଶତାବ୍ଦୀର ସେ ସମସ୍ତ ଉତ୍କଳୀୟ ପ୍ରାଚୀନ ଶିଖର ଅଦ୍ୟାପି ଚିହ୍ନିତ ହୋଇନାହିଁ ।

ହିନ୍ଦୁଶିଳ୍ପୀମାନେ ପର୍ବତଶୃଙ୍ଗର ଅନୁକରଣରେ ଦେବମନ୍ଦିର ସକଳ ନିର୍ମାଣ କରୁଥିଲେ । ରାମାୟଣ, ମତ୍ସ୍ୟ, ଅଗ୍ନି, ବାୟୁପୁରାଣ ପ୍ରଭୃତିରେ ଶିଖର ଓ ଅଣ୍ଡାଭ ମନ୍ଦିରର ବିଶେଷ ବର୍ଣ୍ଣନା ଦିଆଯାଇଛି । କିନ୍ତୁ ସେମାନଙ୍କର ଆଲୋଚନା ଏଠାରେ ଅନାବଶ୍ୟକ ।

୧. ସାହାବାଦ ଜିଲାର ଦେଓ-ବାରନକ୍ ନାମକ ଗୋଟିଏ ଗ୍ରାମରେ ସୂର୍ଯ୍ୟଙ୍କର ମନ୍ଦିର ଅଛି । ଏହି ଗ୍ରାମର ପ୍ରାଚୀନ ନାମ ବାରୁଣିକ । ବାଳାଦିତ୍ୟଙ୍କ ପୂର୍ବରୁ ଏହି ମନ୍ଦିର ନିର୍ମିତ ହୋଇଥିବା ସ୍ପଷ୍ଟ ଜଣାଯାଏ । କାରଣ ସେ ମନ୍ଦିରର ପରିଚାଳନାନିମିତ୍ତ ଗୋଟିଏ ଗ୍ରାମ ପ୍ରଦାନ କରିଥିଲେ । ଦେଉଳର ରେଖ ଅଂଶ ଦୁଇଭାଗରେ ବିଭକ୍ତ । ଦେଉଳଟି ମୁକ୍ତେଶ୍ୱର ମନ୍ଦିର ପରି ଦେଖାଯାଏ । ଗୋଟିଏ ପାଠ ଉପରେ ସେହି ମନ୍ଦିର ନିକଟରେ ଅନେକଗୁଡ଼ିଏ ପୀଢ଼ମନ୍ଦିର ନିର୍ମିତ ହୋଇଥିଲା । ସୂର୍ଯ୍ୟ ମନ୍ଦିର

ନିକଟ ପୀଢ଼ଦେଉଳଟି କୋଣାର୍କର ଜଗମୋହନ ପରି ଦେଖାଯାଏ । ପୀଢ଼ଦେଉଳଗୁଡ଼ିକ ଏହି ମନ୍ଦିରର ସମସାମୟିକ ହୋଇଥିଲେ ଏଗୁଡ଼ିକ ପୀଢ଼ଦେଉଳର ପ୍ରାଚୀନ ନିଦର୍ଶନ ବୋଲି କୁହାଯାଇପାରିବ ।

୨. ଅଜୟଗଡ଼ ରାଜ୍ୟର ପାର୍ବତୀମନ୍ଦିର ଓ ତତ୍ ପାର୍ଶ୍ୱବର୍ତ୍ତୀ ଚତୁର୍ମୁଖ ଶିବ ଓ ଭୈରବଙ୍କ ମନ୍ଦିର ଦୁଇଟି ପ୍ରାଚୀନତମ ଶିଖର ମନ୍ଦିର । ଏହା ବକାତକ ରାଜାମାନଙ୍କ ଦ୍ୱାରା ନିର୍ମିତ ହୋଇଥିଲା ।

୩. ବୁଦ୍ଧଗୟାର ମନ୍ଦିର ଅଦ୍ୟାପି ବିଦ୍ୟମାନ । ସେ ଦେଉଳର ବିମାନଟିର ପର୍ଶୁରାମେଶ୍ୱର ମନ୍ଦିରର ବିମାନ ସହିତ ଅନେକ ସାମଞ୍ଜସ୍ୟ ଅଛି । ଏଥିରେ ଖ୍ରୀଷ୍ଟୀୟ ୨ୟ ଶତାବ୍ଦୀର ଅକ୍ଷରରେ ଲିଖିତ ଗୋଟିଏ ଲିପି ବିଦ୍ୟମାନ । ମନ୍ଦିରଟି ଇଟାରେ ନିର୍ମିତ ହୋଇଥିଲା ।

୪. ସୂର୍ଯ୍ୟମାନ ନାମକ ଗ୍ରାମରେ ଗୁପ୍ତଯୁଗର ଗୋଟିଏ ଶିଖର (ବା ରେଖ) ପ୍ରସ୍ତର ନିର୍ମିତ କ୍ଷୁଦ୍ରମନ୍ଦିର ଦେଖାଯାଏ । ଏହା ଶିଖର ମନ୍ଦିର (ପୀଢଦେଉଳ) ଓ ଏଥିରେ ନଅଟି ଲହଡ଼ିପଥର ବିଦ୍ୟମାନ । ନବପୀଢ଼ଶୋଭିତ ଏହି ମନ୍ଦିର ବିଷ୍ଣୁଙ୍କ ପ୍ରିୟସ୍ଥଳୀ ବୋଲି ଶିଳ୍ପଶାସ୍ତ୍ରରୁ ଜଣାଯାଏ । ଏହା ପୀଢଦେଉଳର ଗୋଟିଏ ପ୍ରାଚୀନ ନିଦର୍ଶନ । ଭାରତର ଆହୁରି ଅନେକସ୍ଥାନରେ ଅଦ୍ୟାପି ପ୍ରାଚୀନ ମନ୍ଦିରସକଳ ବିଦ୍ୟମାନ ଅଛି । କିନ୍ତୁ ଏହି କେତେକ ମନ୍ଦିର ବିଷୟ ଆଲୋଚନା କଲେ ଜଣାଯାଏ ଯେ ବହୁ ପ୍ରାଚୀନ କାଳରୁ ଭାରତରେ ରେଖ ଓ ପୀଢ (ଭଦ୍ର ଦେଉଳ) ମନ୍ଦିର ନିର୍ମାଣ ପ୍ରଥା ପ୍ରଚଳିତ ଥିଲା ।

ଉତ୍କଳ ଦ୍ୱିବିଧ ଭାରତୀୟ ସ୍ଥାପତ୍ୟର ମିଳନତୀର୍ଥ ବୋଲି ଉତ୍କଳର ସ୍ୱତନ୍ତ୍ର ସ୍ଥାପତ୍ୟ ରୀତି ଏହି ଉଭୟର ସମବାୟରେ ପ୍ରବର୍ତ୍ତିତ ହୋଇଥିବାର ମନେହୁଏ ।

ଐତିହାସିକ ଓ ଶିଳ୍ପତତ୍ତ୍ୱବିଦ୍ ପଣ୍ଡିତମାନେ ଉତ୍କଳୀୟ ମନ୍ଦିରଗୁଡ଼ିକର ଯେ ପ୍ରକାର ଶ୍ରେଣୀବିଭାଗ କରିଥିଲେ ତାହା ଆଦୌ ସନ୍ତୋଷଜନକ ନୁହେଁ । ଉତ୍କଳର ରାଜନୈତିକ ଇତିହାସ ସଂପୂର୍ଣ୍ଣରୂପେ ନିର୍ଣ୍ଣୀତ ନ ହେବା ପର୍ଯ୍ୟନ୍ତ ଏ ସମ୍ବନ୍ଧରେ କୌଣସି ଅଭ୍ରାନ୍ତ ମତ ଦିଆଯାଇ ପାରିବ ନାହିଁ । ସ୍ମିଥ୍ଙ୍କ ମତରେ ମୁକ୍ତେଶ୍ୱରର ଅସ୍ତମ୍ଭମନ୍ଦିର (Astylar) ପ୍ରଥମ ଶ୍ରେଣୀ ମନ୍ଦିରର ପ୍ରାଚୀନତମ ଆଦର୍ଶ । ଲିଙ୍ଗରାଜ ମନ୍ଦିର ଦ୍ୱିତୀୟ ଶ୍ରେଣୀର ଅନ୍ତର୍ଗତ । ତୃତୀୟ ଶ୍ରେଣୀ ଏହି

ଦୁଇଟିର ସମ୍ମିଶ୍ରଣରେ ଗଠିତ । ତାଙ୍କ ମତରେ ପର୍ଶୁରାମେଶ୍ୱର ମନ୍ଦିର ପ୍ରଥମ ଶ୍ରେଣୀର ଅନ୍ତର୍ଗତ ଓ ଏହି ଦୁଇ ମନ୍ଦିର ନିର୍ମାଣ ପ୍ରଣାଳୀ ଏକ ସମୟରେ ବିଦ୍ୟମାନ ଥିଲା । ଲିଙ୍ଗରାଜ ମନ୍ଦିର ଦ୍ୱିତୀୟ ଶ୍ରେଣୀର ସର୍ବୋତ୍କୃଷ୍ଟ ନିଦର୍ଶନ । ଏହାର ଅତ୍ୟୁଚ୍ଚ ବିମାନ ଅଂଶରେ କେବଳ ଊର୍ଦ୍ଧ୍ୱଦେଶରେ ବକ୍ରତା ଲକ୍ଷିତ ହୋଇଥାଏ । ବାକି ଅଂଶ ସିଧା । ଫର୍ଗୁସନଙ୍କ ମତରେ ଲିଙ୍ଗରାଜ ମନ୍ଦିରର କାରୁକାର୍ଯ୍ୟମୟ ଶିଖରାଂଶ କୌଣସି ମନ୍ଦିରର ଦାରୁମୟ ଆଦର୍ଶରୁ ଗୃହୀତ । ସେ ଅନୁମାନ କରନ୍ତି ଯେ ବିମାନ-ଗାତ୍ରର ଅଂଶଗୁଡ଼ିକର କାରୁକାର୍ଯ୍ୟ କାଷ୍ଠଖୋଦିତ ଗଣ୍ଡିର ଅନୁକରଣରେ ନିର୍ମିତ । ସ୍ଥାପତ୍ୟ ଶିଳ୍ପବିତ୍‌ମାନେ ଏହାର ଅନୁସନ୍ଧାନ କରିବା ଆବଶ୍ୟକ । ରାଜାରାଣୀ ତୃତୀୟ ଶ୍ରେଣୀ ମନ୍ଦିରର ଶ୍ରେଷ୍ଠ ନିଦର୍ଶନ । ଏଗୁଡ଼ିକ ସ୍ତମ୍ଭ ବିଶିଷ୍ଟ ବହୁକାରୁକାର୍ଯ୍ୟ ସୁଶୋଭିତ ।

ଉତ୍କଳର ହିନ୍ଦୁ ନରପତିମାନେ ଏହି ଦୁଇପ୍ରକାର ମନ୍ଦିର ନିର୍ମାଣ ପ୍ରଥା ଏ ଦେଶରେ ଚଳାଉଥିଲେ । କିନ୍ତୁ ପୂର୍ବେ ଅଧିକାଂଶ ସ୍ଥାନରେ ରେଖ ଦେଉଳ ନିର୍ମିତ ହେଉଥିଲା । ପୀଢ ଦେଉଳମାନଙ୍କର ସଂଖ୍ୟା ରେଖଦେଉଳ ତୁଳନାରେ ଅତି ଅଳ୍ପ । ପର୍ଶୁରାମେଶ୍ୱର ମନ୍ଦିରର ଜଗମୋହନ ଗଠନ ସ୍ୱତନ୍ତ୍ର । ଏହା ଗୋଟିଏ ମଣ୍ଡପ । ପୀଢଦେଉଳ ପରିବର୍ତ୍ତେ ଆୟତାକାର ଗୃହଉପରେ ପଥରର ଛାତ ନିର୍ମିତ ହୋଇଅଛି । ଏହା ମଗଧର ବୌଦ୍ଧବିହାରମାନଙ୍କ ଅନୁକରଣରେ ନିର୍ମିତ ହୋଇଥିବାର ରାଜେନ୍ଦ୍ରଲାଲ ମିତ୍ର ମତ ପ୍ରକାଶ କରନ୍ତି । ପୀଢଦେଉଳ ନିର୍ମାଣ ପ୍ରଥା ବହୁକାଳରୁ ପ୍ରଚଳିତ ଥିଲେ ସୁଦ୍ଧା ମନ୍ଦିରନିର୍ମାଣକାରୀ । କେବେ ଏ ଧରଣର ମନ୍ଦିରନିର୍ମାଣ କରିଥିଲେ ତାହା ବର୍ତ୍ତମାନ ସ୍ଥିର କରିବା ସମ୍ଭବପର ନୁହେଁ । ପୀଢଦେଉଳର ଏପରି ମଣ୍ଡପର କ୍ରମବିକାଶ ବୋଲି ମନେହୁଏ ନାହିଁ । କାରଣ ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀରେ ବକାତକମାନଙ୍କ ସମୟରେ ସୁଦ୍ଧା ପୀଢ ଦେଉଳ ନିର୍ମିତ ହେଉଥିଲା । ତେଣୁ ଏହା ଗୋଟିଏ ସ୍ୱତନ୍ତ୍ର ଧରଣର ଜଗମୋହନ ବୋଲି କହିବା ସମୀଚୀନ ମନେହୁଏ ।

## ରେଖ ଓ ପୀଢ଼ ଦେଉଳ

ରେଖ ଦେଉଳ (Curvilinear) ମାନବାକୃତି ବୋଲି ଶିଳ୍ପଶାସ୍ତ୍ରରେ କଳ୍ପିତ ହୋଇଅଛି । ମନୁଷ୍ୟର ପାଦ, ଜଙ୍ଘ, କଟି, ବେକ, ମୁଣ୍ଡ ନିର୍ମିତ ହୁଏ । ମନୁଷ୍ୟ ହୃଦୟରେ ବିବେକ ବା ଭଗବାନଙ୍କ ଆଶ୍ରୟସ୍ଥଳ ପରି ଏହାର ଗର୍ଭଦେଶରେ

ଭଗବାନଙ୍କ ପ୍ରତିମୂର୍ତ୍ତି ସ୍ଥାପିତ ହେଉଥିଲା । ବଙ୍ଗଳାର ବୀରଭୂମି ଓ ବର୍ଦ୍ଧମାନ ଜିଲ୍ଲାରେ, ବିହାରର ମାନଭୂମ, ଗୟା, ସାହାବାଦପାଟଣା ଜିଲ୍ଲାରେ (ମଗଧ), ମଧ୍ୟଭାରତରେ ବୁନ୍ଦେଲଖଣ୍ଡ, ବଘେଲଖଣ୍ଡ, ଭୂପାଳ ରାଜ୍ୟ, ବିନ୍ଧ୍ୟାଚଳ, ହିମାଳୟର କାଙ୍ଗଡ଼ା ଉପତ୍ୟକା (ନଗରକୋଟ), ବଦ୍ରିନାରାୟଣର ପଥରେ ସ୍ଥାନେ ସ୍ଥାନେ ଓ ରାଜପୁତାନାର ଜୟପୁର ଓ ଉଦୟପୁର ରାଜ୍ୟରେ ମଧ୍ୟଯୁଗରେ ଅନେକ-ରେଖ ଦେଉଳ ନିର୍ମିତ ହୋଇଥିଲା ।

**ପୀଢ ଦେଉଳ :** ଏହା ସାଙ୍ଗାତୀୟ ମନ୍ଦିର ବୋଲି ନିର୍ଦ୍ଦେଶ କରାଯାଇଛି । ଓଡ଼ିଶାରେ ଭୁବନେଶ୍ୱର ପୁରୀ ପ୍ରଭୃତି ସ୍ଥାନରେ ଅନେକ ପ୍ରାଚୀନ ପୀଢ଼ମନ୍ଦିର ବିଦ୍ୟମାନ । ଓଡ଼ିଶା ଛଡ଼ା ମାନଭୂମ ପାଢା ଗ୍ରାମରେ, ରାଜପୁତନାରେ ଓ ସିୟାରେ ଏବଂ ମଧ୍ୟପ୍ରଦେଶର ଖୁଜୁରାଓରେ ଅନେକ ପୀଢ ଭଦ୍ରମନ୍ଦିର ଦେଖାଯାଏ । ଦାକ୍ଷିଣାତ୍ୟରେ ପୀଢ଼(ଭଦ୍ର) ଦେଉଳର ଅଭାବ ଲକ୍ଷିତ ହୁଏ ।

ଭୁବନେଶ୍ୱରରେ ପର୍ଶୁରାମେଶ୍ୱର ମନ୍ଦିର ପରି ୫ଟି ମନ୍ଦିର ଅଛି । ଯଥା:- ମାର୍କଣ୍ଡେଶ୍ୱର, ଦ୍ୱାରବାସିନୀ, ଶିଶିରେଶ୍ୱର, ଉତ୍ତରେଶ୍ୱର ଓ ସ୍ୱର୍ଣ୍ଣଜାଳେଶ୍ୱର । ଏଥିରେ ମୋହନ ନିର୍ମାଣରେ ମଧ୍ୟ କ୍ରମବିକାଶ ଲକ୍ଷିତ ହୁଏ । ବିନ୍ଦୁସାଗରର ପଶ୍ଚିମରେ ଥିବା ମାର୍କଣ୍ଡେଶ୍ୱର ମନ୍ଦିରର ମୋହନର ପୂର୍ବ, ଉତ୍ତର, ଦକ୍ଷିଣ ପାଖର କାନ୍ଥଗୁଡ଼ିକ ସ୍ତମ୍ଭାବଳୀ ଉପରେ ନିର୍ମିତ ହୋଇଥିଲା ।

ପ୍ରଦତ୍ତ ଚିତ୍ରରୁ ପାଠକମାନେ ଏହା ସମ୍ୟକ୍‌ରୂପେ ହୃଦୟଙ୍ଗମ କରିପାରିବେ । ମୋହନ ମଧ୍ୟରେ ୪ଟି ସ୍ତମ୍ଭ ଉପରେ ସମଗ୍ର ଛାତର ଭାର ନ୍ୟସ୍ତ ହୋଇଥିଲା । ସ୍ୱର୍ଣ୍ଣଜାଳେଶ୍ୱର(କୋଟିତୀର୍ଥ) ମନ୍ଦିରର ମୋହନ ଏହି ପ୍ରକାର ନିର୍ମିତ ହୋଇଥିଲା ବୋଲି ଗ୍ରାମର ବୃଦ୍ଧ ଲୋକମାନେ କହନ୍ତି । କିନ୍ତୁ ମୋହନଟି ସର୍ବାଂଶରେ ନଷ୍ଟ ହୋଇଯାଇଛି । ଏହି ପ୍ରକାର ମୋହନ ନିର୍ମାଣର ପ୍ରଥମ ଅବସ୍ଥାରେ ଶିଳ୍ପୀମାନେ ସ୍ତମ୍ଭାବଳୀ ନ୍ୟସ୍ତଭାର-ଦୋଚାଳିଆ ମଣ୍ଡପ ନିର୍ମାଣ କରୁଥିଲେ । ଏହାକୁ ଶିଳ୍ପୀମାନେ ଭାଡ଼ିଆମୋହନ ବୋଲି କହନ୍ତି । କାରଣ ମୋହନ ଦୁଇଟି ଚାଳ ମଧ୍ୟରେ ପାରାଭାଡ଼ି ସଦୃଶ ପଥରମାନଙ୍କ ମଧ୍ୟରେ ବ୍ୟବଧାନ ଥିବାରୁ ଏହା ଭାଡ଼ିସଦୃଶ ଦେଖାଯାଏ । ପରବର୍ତ୍ତୀକାଳରେ ସ୍ତମ୍ଭମାନଙ୍କର ଦୃଢତାରେ ସନ୍ଦିହାନ ହୋଇ ଶିଳ୍ପୀମାନେ ସ୍ତମ୍ଭ ପରିବର୍ତ୍ତେ କାନ୍ଥ ବ୍ୟବହାର କଲେ । କିନ୍ତୁ ଆଲୋକ ଓ ବାୟୁର ଗମନାଗମନ

ନିମିତ୍ତ ଜାଲିଝରକା ବା କାଠ ଝରକା ପରି ଝରକାମାନ ବ୍ୟବହୃତ କଲେ । ଏହାଦ୍ୱାରା ସ୍ତମ୍ଭମାନଙ୍କ ମଧ୍ୟରେ ଥିବା ବ୍ୟବଧାନ ପୂର୍ଣ୍ଣ ହେବାରୁ ଦୋଚାଳିଆ ଛାତର ଭାରବହନ କରିବାକୁ ସମର୍ଥ ହେଲା । ପର୍ଶୁରାମେଶ୍ୱର ମନ୍ଦିରର ଉତ୍ତରପାର୍ଶ୍ୱରେ କପାଳିନୀର ଦକ୍ଷିଣ ପାର୍ଶ୍ୱରେ, ଉତ୍ତରେଶ୍ୱରର ଦକ୍ଷିଣ ପାର୍ଶ୍ୱରେ ଜାଲିଝରକାମାନ ନିର୍ମିତ ହୋଇଅଛି ।

ଶିଖରେଶ୍ୱର ମନ୍ଦିରର ଉତ୍ତରପାର୍ଶ୍ୱରେ ଗୋଟିଏ ଦ୍ୱାର ଥିଲା । ଉତ୍ତରେଶ୍ୱର, କପାଳିନୀ ଓ ଶିଖରେଶ୍ୱର ମୋହନର ଛାତ ତଳେ କୌଣସି ସ୍ତମ୍ଭ ନଥିଲା । କିନ୍ତୁ ଶିଖରେଶ୍ୱରଙ୍କ ମୋହନର କାନ୍ଥ ସରୁହୋଇଥିବାରୁ ଓ ସ୍ତମ୍ଭର ଅଭାବ ହେତୁ ଏହାର ଦୋଚାଳିଆ ଏକାବେଳକେ ନଷ୍ଟ ହୋଇଗଲାଣି । ଉତ୍ତରେଶ୍ୱର ଓ କପାଳିନୀ ମନ୍ଦିର ମରାମତି ହୋଇଥିବାରୁ ସେମାନଙ୍କର ମୋହନ ଆଜିପର୍ଯ୍ୟନ୍ତ ଅକ୍ଷୁଣ୍ଣ ରହିଛି । ଶିଖରେଶ୍ୱର, ମୋହିନୀ ଓ ମାର୍କଣ୍ଡେଶ୍ୱର ମନ୍ଦିର ମରାମତି ହୋଇନଥିବାରୁ ସେଗୁଡ଼ିକ ପତନୋନ୍ମୁଖ ହୋଇଗଲାଣି । କପାଳିନୀ, ଶିଖରେଶ୍ୱର ମୋହନର ଭିତର ପାଖରେ ଦେଖିଲେ ଜଣାଯାଏ କାନ୍ଥଗୁଡ଼ିକ ମଧ୍ୟରେ ଗୋଟିଏ ସ୍ତମ୍ଭହିଁ ଛାତର ଭାର ବିଶେଷ ଭାବରେ ସମ୍ଭାଳୁଥିଲା । ଶିଶିରେଶ୍ୱର ଉତ୍ତରେଶ୍ୱର ଓ ପର୍ଶୁରାମେଶ୍ୱରର କାନ୍ଥଗୁଡ଼ିକରେ ସ୍ତମ୍ଭର କୌଣସି ସତ୍ତା ଦେଖାଯାଏ ନାହିଁ । ସନ୍ଧି ମିଳାଯାଇ ପଥରଗୁଡ଼ିକ ଗୋଟିଏ ସୁଦୃଢ଼କାନ୍ଥ ନିର୍ମାଣ ହୋଇଛି । ଏପରି କାନ୍ଥ ଅପେକ୍ଷାକୃତ ସୁଦୃଢ଼ । କେବଳ କପାଳିନୀ ମୋହନର ଚାରିକୋଣରେ ଚାରୋଟି କ୍ଷୁଦ୍ର ମନ୍ଦିର ନିର୍ମିତ ହୋଇଥିଲା । କପାଳିନୀଙ୍କ ବିମାନର ପୂର୍ବାଂଶର ବିଶେଷତ୍ୱ ପରି ମୋହନର ଚାରିକୋଣରେ ଚାରୋଟି ମନ୍ଦିର ନିର୍ମାଣ ମଧ୍ୟ ସେହିପରି ଗୋଟିଏ ବିଶେଷତ୍ୱ । ଏ ମନ୍ଦିରମାନଙ୍କର ବିମାନର ଭିତର ଅଂଶ ଓ ପଥର ବିଷୟରେ ଆଲୋଚନା କରଣୀୟ ।

**ଗୌରୀଚାର-ଖାଖରା** : ବୃତ୍ତାନ୍ତିକ ମନ୍ଦିର ପୂର୍ବକାଳରେ ଧର୍ମମତର ପାର୍ଥକ୍ୟ ଯୋଗୁ ବିଭିନ୍ନ ଧର୍ମାବଲମ୍ବୀମାନେ ବିଭିନ୍ନ ଧରଣର ମନ୍ଦିର ନିର୍ମାଣ କରୁଥିଲେ । ମନ୍ଦିର ନିର୍ମାଣରେ ଧର୍ମମତ ସର୍ବାଦୌ ବିଚାର ହୋଇ ଆରାଧ୍ୟ ଦେବଦେବୀଙ୍କ ପାଇଁ ସ୍ୱଧର୍ମମତାନୁମୋଦିତ ମନ୍ଦିର ହେଉଥିଲା । ମହାଯାନ ଧର୍ମର ପତନ ସମୟରେ ବୌଦ୍ଧଧର୍ମ ତଥା ହିନ୍ଦୁଧର୍ମରେ ତନ୍ତ୍ର ମତ ପ୍ରାଧାନ୍ୟ ଲାଭ କରିଥିଲା । ତନ୍ତ୍ରପୂଜା ବୈଦିକ ମନ୍ତ୍ରପୂଜାଠାରୁ ସ୍ୱତନ୍ତ୍ର । ସେହିପରି ତାନ୍ତ୍ରିକମାନଙ୍କର ମନ୍ଦିର

ମଧ୍ୟ ଶୈବ ଓ ବୈଷ୍ଣବ ମନ୍ଦିରଠାରୁ ପୃଥକ୍ ଆକାରରେ ନିର୍ମିତ ହେଉଥିଲା । ଏହି ମନ୍ଦିରର ପୀଠ, ଆସନ, ପାର୍ଶ୍ୱଦେବତା, ଦ୍ୱାରପାଳ, ବେକୀ ପ୍ରଭୃତିରେ ସ୍ୱତନ୍ତ୍ରତା ରହୁଥିଲା । ଭୁବନେଶ୍ୱରର ପ୍ରଧାନ ଶିଳ୍ପୀମାନଙ୍କ ମତରେ ଭୁବନେଶ୍ୱରରେ ଗୌରୀ, ଗୋପାଳୁଣୀ ଓ ସାବିତ୍ରୀ ଏହି ତିନୋଟି ତାନ୍ତ୍ରିକ ମନ୍ଦିର ବିଦ୍ୟମାନ । ବସ୍ତର ଅଞ୍ଚଳରେ ଓ ଓଡ଼ିଶାର କେତେକ ଗଡ଼ଜାତରେ ଏହିପରି ତାନ୍ତ୍ରିକ ମନ୍ଦିର ଦେଖାଯାଏ । ଭୁବନେଶ୍ୱରର ଏହି ତିନୋଟି ମନ୍ଦିର ଭଗ୍ନଦଶାପନ୍ନ ହେବାରୁ ପରବର୍ତ୍ତୀକାଳରେ ଏଗୁଡ଼ିକ ମରାମତି ହୋଇଥିଲା । ତେଣୁ ଏଗୁଡ଼ିକ ବିଷୟରେ ଆଲୋଚନା ଅଭ୍ରାନ୍ତ ହେବା ସହଜ ନୁହେଁ । ମନ୍ଦିର ନିର୍ମାଣ ସମ୍ପୂର୍ଣ୍ଣ ହୋଇ ଆସିଲେ ଶିଖରର ଶିରୋଭାଗରେ ଶସ୍ୟ, ମଣିରତ୍ନ, ସ୍ୱର୍ଣ୍ଣ, ରଜତ ପ୍ରଭୃତି ମୂଲ୍ୟବାନ ଧାତୁ ଏବଂ ମନ୍ଦିର ପ୍ରତିଷ୍ଠାଜ୍ଞାପକ ନାମ ଓ ଅଧିଯୁକ୍ତ ଉତ୍କୀର୍ଣ୍ଣ ତାମ୍ରଲିପି ସଂରକ୍ଷିତ ହୁଏ । ମାନ୍ଦ୍ରାଜ ଅଞ୍ଚଳରେ ସ୍ଥାନେସ୍ଥାନେ ଏହି ଅଂଶରେ ଖୋଦିତ ଲିପି ମିଳିଅଛି । ତେଣୁ ଭୁବନେଶ୍ୱର ମନ୍ଦିରରେ ଏପରି ଲିପିଥିବା ଅସମ୍ଭବ ନୁହେଁ । ଏ ପ୍ରବାଦ ଭୁବନେଶ୍ୱରରେ ଅଦ୍ୟାବଧି ପ୍ରଚଳିତ ଅଛି ।

**କଳସ** – 'ମନ୍ଦିରଶୀର୍ଷସ୍ଥ' କଳସାକୃତି ପଦାର୍ଥ ଗ୍ରୀକ୍ Amphara ବା Vase ଜାତୀୟ ପାତ୍ର ସହିତ ଆଶ୍ଚର୍ଯ୍ୟ ସାଦୃଶ୍ୟ ଥିବାର R.L. Mitra ଉତ୍କଳ ଓ ବିହାର ପ୍ରଦେଶର ମନ୍ଦିର ଶୀର୍ଷସ୍ଥ ଅନେକଗୁଡ଼ିଏ କଳସର ଆକୃତି ଆଲୋଚନା କରି ସ୍ଥିର କରିଛନ୍ତି ।

କିନ୍ତୁ ଏହିମତ ଗ୍ରହଣୀୟ ନୁହେଁ । କାରଣ ଯେତେବେଳେ ପର୍ଣ୍ଣଶାଳା ବ୍ୟତୀତ ମାନବର ଅନ୍ୟ କୌଣସି ଆଶ୍ରୟସ୍ଥାନ ନ ଥିଲା ସେତେବେଳେ ପ୍ରତ୍ୟେକ କୁଟୀରର ଉପରିଭାଗରେ ଜଳପୂର୍ଣ୍ଣ କଳସ ରଖିବା ଆବଶ୍ୟକ ବୋଲି ବିବେଚିତ ହେଉଥିଲା । ଚାଣକ୍ୟଙ୍କ ଅର୍ଥଶାସ୍ତ୍ରରେ ଗ୍ରୀଷ୍ମକାଳରେ ଅଗ୍ନିଭୟ ନିବାରଣ ନିମିତ୍ତ ପର୍ଣ୍ଣଶାଳାର ଦ୍ୱାରଦେଶରେ ଜଳପୂର୍ଣ୍ଣ କଳସ ରଖିବା ପାଇଁ ନିର୍ଦ୍ଦେଶ ଦେଖାଯାଏ, ନ ରଖିଲେ ଅର୍ଥ ଦଣ୍ଡ ଦିଆଯାଏ । ଇଷ୍ଟକ ଓ ପ୍ରସ୍ତରରେ ମନ୍ଦିର ଓ ଅଟ୍ଟାଳିକାଦି ନିର୍ମିତ ହେଲାବେଳେ କଳସ ଶୋଭନଅଳଙ୍କାର ରୂପେ ମନ୍ଦିର ଓ ଅଟ୍ଟାଳିକା ଶୀର୍ଷରେ ସ୍ଥାନ ପାଇଲା । ହିନ୍ଦୁସମାଜରେ ଜଳପୂର୍ଣ୍ଣ କଳସ ଶୁଭସୂଚକ ବୋଲି ବିବେଚିତ ହୁଏ । ତେଣୁ ଏହିଯୋଗୁ ଦେବାଳୟ ସଂକ୍ରାନ୍ତ ସ୍ଥାପତ୍ୟ ଏହାର ବ୍ୟବହାର ସୁସଙ୍ଗତ ବୋଲି ମନେହୁଏ ।

ପୂର୍ବେ ଶିଳ୍ପୀମାନେ ଶିଳ୍ପଶାସ୍ତ୍ରର ନିୟମାନୁଯାୟୀ ମୂର୍ତ୍ତି ନିର୍ମାଣ କରୁଥିଲେ । ହିନ୍ଦୁଶିଳ୍ପୀମାନଙ୍କର ଦେବମୂର୍ତ୍ତିସକଳ ସ୍ୱେଚ୍ଛାରେ ଗଠନ କରିବାର ଅଧିକାର ନ ଥିଲା । ତେଣୁ ଏଥିରେ ବର୍ଦ୍ଧକୀର ସୌନ୍ଦର୍ଯ୍ୟ ଉଦ୍‌ବୋଧନ ପ୍ରତିଭା ଅପେକ୍ଷା ଦକ୍ଷତାର ସହିତ ପଥରକାଟି ମୂର୍ତ୍ତିଖୋଦନ କରିବାର କ୍ଷମତା ଭଲରୂପେ ପ୍ରକାଶ ପାଇଥିଲା । ସ୍ୱାଧୀନ ଭାବରେ ସ୍ୱୀୟ କଳ୍ପନାର ବଶବର୍ତ୍ତୀ ହୋଇ ସୌନ୍ଦର୍ଯ୍ୟ ସାଧନ କଲେ ଚାରୁଶିଳ୍ପ ଯେ ସମଧିକ ଉନ୍ନତି ଲାଭ କରିଥାଏ ଏଥିରେ କୌଣସି ସନ୍ଦେହ ନାହିଁ, କିନ୍ତୁ ବନ୍ଧାନିୟମ ବଜାୟରଖି ଶିଳ୍ପୀ ଯେ ଏପରି ସୌନ୍ଦର୍ଯ୍ୟ ପାଷାଣ ଦେହରେ ଫୁଟାଇ ପାରିଥିଲେ ଏହାହିଁ ଅତି ଆଶ୍ଚର୍ଯ୍ୟର ବିଷୟ । Idealism ବା ଭାବପ୍ରବଣତା ଭାରତୀୟଶିଳ୍ପୀର ପ୍ରାଣ । ଭାରତୀୟଶିଳ୍ପୀ କୌଣସି ସମୟରେ ବାସ୍ତବଚିତ୍ରର ବିଶେଷ ଅନୁକରଣରେ ପ୍ରଭାବିତ ହେଉ ନ ଥିଲେ । ଶିଳ୍ପଶାସ୍ତ୍ରୋକ୍ତ ତାଳ, ମାନ ଅକ୍ଷୁଣ୍ଣ ରଖି ଅମସୃଣ ପ୍ରସ୍ତରାଦିରେ ସେମାନେ ଅପୂର୍ବ ସୁଷମା ସୃଷ୍ଟି କରିବାକୁ ସମର୍ଥ ହେଉଥିଲେ । କେବଳ ପାର୍ବତୀଙ୍କ ଗାତ୍ରବସନ ଖଣ୍ଡିକରେ ଯେ ଅପରୂପ କାରୁକାର୍ଯ୍ୟ ରହିଅଛି ତାହା ଦେଖିଲେ ଶିଳ୍ପୀମାନଙ୍କୁ ଅଲୌକିକ ଦୈବଶକ୍ତିସଂପନ୍ନ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ ।

ଦେବଦେବୀ ମୂର୍ତ୍ତି ଓ ଖୋଦିତ ଚିତ୍ରସମୂହ ସାଧାରଣତଃ ଉତ୍କଳର ମନ୍ଦିରର ବିଭିନ୍ନ ମନ୍ଦିରଗାତ୍ରସ୍ଥ ଖୋପରେ ବିନ୍ୟସ୍ତ ହୋଇଥାଏ । ଦକ୍ଷିଣୀ ମନ୍ଦିରର ଚିତ୍ରାଦି ପରି ଏଗୁଡ଼ିକରେ ବିଷୟ ପାରମ୍ପର୍ଯ୍ୟ ଧାରାବାହିକ ରୂପେ ରକ୍ଷିତ ହୁଏନାହିଁ । ଦେବଦେବୀଙ୍କ ଚିତ୍ରପାର୍ଶ୍ୱରେ ଗାର୍ହସ୍ଥ୍ୟ ଚିତ୍ରାଦି ମଧ୍ୟ ଦେଖାଯାଏ । ଦକ୍ଷିଣୀଶିଳ୍ପୀ ରାମେଶ୍ୱରର ବିରାଟ ଦରଦିଲାନର ଛାତରେ ସମସ୍ତ ରାମାୟଣ ମହାଭାରତ ଛବି ଆକାରରେ ଫୁଟାଇ ଅଛନ୍ତି । କନ୍ୟାକୁମାରୀର ନିକଟବର୍ତ୍ତୀ 'ଶୁଚୀନ୍ଦ୍ର ମନ୍ଦିର'ର ଗୋପୁରରେ ରାମାୟଣ, ମହାଭାରତ ଓ ପ୍ରାୟ ସମସ୍ତ ପୁରାଣର ପ୍ରସିଦ୍ଧ ଗଳ୍ପଗୁଡ଼ିକ ଖୋଦିତ ହୋଇଅଛି । ଦକ୍ଷିଣୀ ଶିଳ୍ପୀର ଏହା ଗୋଟିଏ ଚିରପ୍ରଚଳିତ ପ୍ରଥା । କମ୍ବୋଜର ଓଁକାରଭଟ୍ଟ ଓ ଯବଦ୍ୱୀପରେ ବରଭୂଧର (ବରବୁଦୁର)ରେ ଶିଳ୍ପକୁଶଳୀ ଦକ୍ଷିଣୀ ଭାସ୍କରଗଣ ସେମାନଙ୍କର ସୁପ୍ରତିଷ୍ଠିତ ଶିଳ୍ପରୀତିର ଅକ୍ଷୟ ଚିହ୍ନ ରଖିଛନ୍ତି । ସେଥିରେ ଦେଖାଯାଏ ଯେ, ପୌରାଣିକ ବା ଜାତକର ଚିତ୍ରଗୁଡ଼ିକ ଗୋଟିକ ପରେ ଗୋଟିଏ ଧାରାବାହିକ ଭାବରେ ବିନ୍ୟସ୍ତ, ତେଣୁ ଗୋଟିଏ ଚିତ୍ର ଚିହ୍ନିପାରିଲେ

ଆଉ ସମସ୍ତ ଚିତ୍ର ସହଜରେ ଜଣାପଡ଼େ । କିନ୍ତୁ ଉତ୍କଳୀୟ ମନ୍ଦିରର ଚିତ୍ରାଦିରେ ଏରୂପ ଧାରାବଦ୍ଧ ବିଷୟର ସନ୍ନିବେଶ ଦୃଷ୍ଟ ହୁଏ ନାହିଁ । ସୀତାଙ୍କ ବିବାହ ଚିତ୍ରଦେଖି ନିକଟରେ ମାୟାମୃଗବଧର ଚିତ୍ର ଦେଖିବାର ଭରସା କରିଲେ ନିରାଶ ହେବାକୁ ହୁଏ । ମନ୍ଦିରଗାତ୍ରସ୍ଥ ଯେ ସକଳ ମୂର୍ତ୍ତି ଦୃଷ୍ଟ ହୁଏ ସେଗୁଡ଼ିକ ପାରମ୍ପର୍ଯ୍ୟଶୂନ୍ୟ ହେଲେ ହେଁ ବିଶେଷ କୌତୂହଳଜନକ ।

ଉତ୍କଳୀୟ ମନ୍ଦିରମାନଙ୍କର ଶିଳ୍ପକଳାର ଦୁଇ ବିଭାଗ ଯଥା ଧର୍ମ ବିଭାଗ ଓ କଳା ବିଭାଗ । କେତେକ ମନ୍ଦିର ଅତି ନଗଣ୍ୟ ଓ କାରୁକାର୍ଯ୍ୟବିହୀନ । କିନ୍ତୁ ସେଥିରେ ନବଗ୍ରହ, ପାର୍ଶ୍ୱ ଦ୍ୱାରପାଳ, ଦିକ୍‌ପାଳ, ଦେଉଳଚାରିଣୀ ପ୍ରଭୃତିଙ୍କର ମୂର୍ତ୍ତି ଦେଖାଯାଏ । ନିର୍ମାଣ ସମୟରେ ମନ୍ଦିର ଦେହରେ ଏ ସମସ୍ତ ମୂର୍ତ୍ତି ନିର୍ମାଣ କରିବା ଧର୍ମାନୁସାରେ ବାଧ୍ୟ । ମନ୍ଦିରରେ ବିଚିତ୍ର କାରୁକାର୍ଯ୍ୟ ଖୋଦନ ତାହାର ଆର୍ଥିକ ଅବସ୍ଥା ଓ ମାନସିକ ପ୍ରବୃତ୍ତି ଉପରେ ନିର୍ଭର କରୁଥିଲା । ତେଣୁ ମନ୍ଦିରମାନଙ୍କରେ ଶିଳ୍ପକଳା ମଧ୍ୟରେ ଘୋର ପାର୍ଥକ୍ୟ ଲକ୍ଷିତ ହୁଏ । ଶିଳ୍ପଶାସ୍ତ୍ରାନୁସାରେ ମଧ୍ୟ ମନ୍ଦିର ନିର୍ମାଣରେ କେତୋଟି ନିୟମ ପାଳନ କରିବାକୁ ଶିଳ୍ପୀ ବାଧ୍ୟ ହେଉଥିଲା । ମନ୍ଦିରଟି ପୀଢ଼ଦେଉଳ ବା ରେଖଦେଉଳ ହେବା ଆବଶ୍ୟକ । ତେଣୁ ଉତ୍କଳୀୟ ମନ୍ଦିରଗୁଡ଼ିକ ପ୍ରାୟ ସମାନ । ପ୍ରାଚୀନ କାଳରେ ଆହୁରି ଅନେକ ପ୍ରକାର ପ୍ରାସାଦ ନିର୍ମାଣ ପ୍ରଥା ପ୍ରଚଳିତଥିବାର ମାନସାର, ଶୁକ୍ରନୀତି, ଅଗ୍ନିପୁରାଣ ଓ ପ୍ରାଚୀନକୀର୍ତ୍ତିମାନଙ୍କରୁ ଜଣାଯାଏ । କିନ୍ତୁ ନିର୍ମାଣ ବିଶାଳ ସାମ୍ରାଜ୍ୟର ଅଧୀଶ୍ୱର ହେଉ ବା ସ୍ୱଳ୍ପଧନଧାରୀ ହେଉ ଦେବମନ୍ଦିରଟି ଶିଳ୍ପଶାସ୍ତ୍ରାନୁମୋଦିତ ହେବା ଆବଶ୍ୟକ । ଉତ୍କଳର ସମସ୍ତ ମନ୍ଦିର ଉତ୍କଳୀୟ ରାଜା ବା ଧନୀବ୍ୟକ୍ତିଙ୍କ ଦ୍ୱାରା ନିର୍ମିତ ହୋଇ ନ ଥିଲା । ଅନେକମନ୍ଦିର ବୈଦେଶିକମାନଙ୍କଦ୍ୱାରା ନିର୍ମିତ ହୋଇଥିବାର ଜଣାଯାଏ । କିନ୍ତୁ ସେମାନେ ଉତ୍କଳୀୟ ଶିଳ୍ପର ନିୟମମାନ ପାଳନ କରି ମନ୍ଦିର ନିର୍ମାଣ କରୁଥିଲେ । ସ୍ୱଦେଶର ମନ୍ଦିରାନୁକରଣରେ ଏଠାରେ ମନ୍ଦିର ନିର୍ମାଣ କରିବା ପାଇଁ ସେମାନେ ଧର୍ମବିରୁଦ୍ଧ କାର୍ଯ୍ୟ ବୋଲି ମନେ କରୁଥିଲେ । ଉତ୍କଳୀୟ ମନ୍ଦିରମାନଙ୍କର ଏହି ଦୁଇଟି ବିଭାଗର ଘନିଷ୍ଠ ସମ୍ପର୍କ । ଗୋଟିଏକୁ ଛାଡ଼ିଲେ ଅନ୍ୟଟିର ମାହାତ୍ମ୍ୟ ହ୍ରାସ ହୁଏ । ତେଣୁ ଏଦୁଇଟି ବିଷୟରେ ଏକତ୍ର ଆଲୋଚନା ଆବଶ୍ୟକ ।



ଷଷ୍ଠ ଅଧ୍ୟାୟ

# ଉତ୍କଳୀୟ ମନ୍ଦିରଗୁଡ଼ିକର ବିଶେଷତ୍ୱ

ଉତ୍କଳୀୟ ମନ୍ଦିରମାନଙ୍କ ଦେହରେ ନାନାବିଧ କାରୁକାର୍ଯ୍ୟ ଓ ମୂର୍ତ୍ତି ଖୋଦିତ ହୋଇଥାଏ । ସେଥିରୁ ସାଧାରଣତଃ ଅଧିକାଂଶ ମୂର୍ତ୍ତି ଓ ଚିତ୍ରସବୁ ମନ୍ଦିରମାନଙ୍କରେ ଦେଖାଯାଏ । ଗଜସିଂହ, ନାଗ, ନାଗିଣୀ, 'ଓଭା' ଦେଉଳ ଚାରିଣୀ, ଦେବମନ୍ଦିରରେ ଖୋଦିତ ନବଗ୍ରହ, ଦ୍ୱାରପାଳ, ପାର୍ଶ୍ୱମୂର୍ତ୍ତି, କୀର୍ତ୍ତିମୁଖ, ଗନ୍ଧର୍ବ, କିନ୍ନର ପ୍ରଭୃତିର ନାନାବିଧ ପ୍ରତିକୃତି ପ୍ରତ୍ୟେକ ଦର୍ଶକର ଦୃଷ୍ଟି ଆକର୍ଷଣ କରିଥାଏ । ମନ୍ଦିରର ଅଧିଷ୍ଠାତ୍ରୀ ଦେବତା ଓ ଧର୍ମମତର ପାର୍ଥକ୍ୟ ଯୋଗୁ ପାର୍ଶ୍ୱ ଦ୍ୱାରପାଳ ମୂର୍ତ୍ତିରେ କେବଳ ସାମାନ୍ୟ ପରିବର୍ତ୍ତନ ହୋଇଥାଏ । ଏତଦ୍‌ବ୍ୟତୀତ ଶିଳ୍ପୀମାନେ ନିଜର କୌତୂହଳ ନିବୃତ୍ତି କରିବା ନିମିତ୍ତ ନାନାବିଧ ଜୀବଜନ୍ତୁ, ବୃକ୍ଷଲତା, ପକ୍ଷୀ ଓ ମନୁଷ୍ୟଚିତ୍ର ମନ୍ଦିରଗାତ୍ରରେ ନିର୍ମାଣ କରିଥାନ୍ତି । କିନ୍ତୁ ଏଗୁଡ଼ିକ କେବଳ ମନ୍ଦିରର ସୌନ୍ଦର୍ଯ୍ୟ ବୃଦ୍ଧି ନିମିତ୍ତ ଖୋଳା ପାଇଁ କୌଣସି ବିଧାନ ନାହିଁ । ପାଠକମାନଙ୍କର ଅବବୋଧ ନିମିତ୍ତ ପ୍ରତ୍ୟେକ ପ୍ରତିକୃତି ବିଷୟରେ କିଞ୍ଚିତ୍ ବର୍ଣ୍ଣନା କରିବା ଆବଶ୍ୟକ ।

**ନାଗନାଗିଣୀ** - ମଧ୍ୟଯୁଗର ମନ୍ଦିରମାନଙ୍କରେ ନାଗନାଗିଣୀ ମୂର୍ତ୍ତି ଖୋଦିତ ହୋଇଥିବାର ଦେଖାଯାଏ । ବୈଦିକଯୁଗରୁ ନାଗନାଗିଣୀ ପୂଜା ଭାରତରେ ପ୍ରଚଳିତ । 'ଐତରେୟ ବ୍ରାହ୍ମଣ'ରେ ନାଗନାଗିଣୀ ସ୍ତୁତି ବର୍ଣ୍ଣିତ ହୋଇଛି -

ତେ ତତଃ ସର୍ପନ୍ତି ତେ ସଦଃ ସଂପ୍ରପଦ୍ୟନ୍ତେ ।
ଯଥାଯଥମନ୍ୟ ଋତ୍ୱିଜୋ ଖୁସର୍ପନ୍ତି ।
ସଂସର୍ପବ୍ରୂ୍ୟ ଦ୍ମାତରସ୍ତେ ସର୍ପରାଜ୍ଞ୍ୟା ଋକ୍ଷୁସ୍ତୁବତଃ ।
ଇୟଂ ବୈମସର୍ପରାଜ୍ଞାୟଂ ହି ସର୍ଗତେ ।
ରାଜ୍ଞାୟଂ ବା ଅଲୋମକେ ବାଗ୍ରଆସୀତ୍ ।
ତଂମନ୍ତମପଶ୍ୟଦ୍ 'ଆୟଂ ଗୌଃ ପୃଶ୍ନିରକ୍ରମୀତ୍' ଇତି ।
ତାମୟଂ ପୃଶ୍ନିବର୍ଣ୍ଣ ଆବିଶନ୍ ନାନାରୂପୋ ଯଂ ଯଂ କାମମକାରୟତ୍
ଯଦିଦଂ କିଂ ଚୋଷଧୟୋ ବନସ୍ପତୟଃ ସର୍ବାଣି ରୂପାଣି ।
ପୃଶ୍ନିରେନଂବର୍ଣ୍ଣ ଆବିଶତି ନାନାରୂପୋ ଯଂ ଯଂ କାମଂ କାମୟତେ

ଯା ଏବଂ ବେଦା( ଐତରେୟ ବ୍ରାହ୍ମଣ-ସର୍ପମନ୍ତ୍ର)

ବୈଦିକ ଯୁଗରେ ଆର୍ଯ୍ୟମହର୍ଷିମାନେ ସର୍ପକୁ ଦେବତାରୂପେ ପୂଜା କରୁଥିଲେ । ପୌରାଣିକ ଯୁଗରେ ଧରାଶ୍ରୀଧାରିଣୀ ବାସୁକିର ବିସ୍ତୃତ ବର୍ଣ୍ଣନା ପୁରାଣ ଓ ପ୍ରାଚୀନ ଗ୍ରନ୍ଥମାନଙ୍କରେ ଦିଆହୋଇଛି । ବୌଦ୍ଧଯୁଗରେ ଖ୍ରୀ.ପୂ. ୨ୟ ଶତାବ୍ଦୀଠାରୁ ଖ୍ରୀଷ୍ଟୀୟ ୨ୟ ଶତାବ୍ଦୀ ମଧ୍ୟରେ ସାଞ୍ଚୀ, ବରହୁତ୍, ମଥୁରା, ଗୟା ପ୍ରଭୃତି ନିର୍ମିତ ବୌଦ୍ଧସ୍ତୂପ, ବିହାର, ପ୍ରାଚୀର, ଗୁମ୍ଫା ଓ ପ୍ରାସାଦମାନଙ୍କ ଗାତ୍ରରେ ନାଗନାଗିଣୀଙ୍କର ରମଣୀୟ ପ୍ରତିମୂର୍ତ୍ତିମାନ ନିର୍ମିତ ହୋଇଅଛି ।

ବିଷ୍ଣୁଙ୍କର ଅନନ୍ତଶୟନ, କାଳୀୟଦମନ, ଜନ୍ମେଜୟଙ୍କ ସର୍ପମେଧଯଜ୍ଞ ପ୍ରଭୃତି ଆଲୋଚନା କଲେ ମନେହୁଏ ବୌଦ୍ଧମାନଙ୍କ ପରି ପୌରାଣିକ ହିନ୍ଦୁମାନେ ମଧ୍ୟ ସର୍ପକୁ ଆରାଧ୍ୟଦେବତା ବୋଲି ଗ୍ରହଣ କରିଥିଲେ । ଉଦୟଗିରିର ସର୍ପଗୁମ୍ଫା (ଏକଫଣୀନାଗ), ଖଣ୍ଡଗିରିର ଅନନ୍ତଗୁମ୍ଫାଦ୍ୱାରସ୍ଥ ଗଜଲକ୍ଷ୍ମୀମୂର୍ତ୍ତିର ଦୁଇ ପାର୍ଶ୍ୱରେ ଦୁଇଟି ତ୍ରିଫଣୀ ନାଗମୂର୍ତ୍ତି ଖୋଦିତ ହୋଇଛି । ଏକଫଣୀ, ତ୍ରିଫଣୀ, ପଞ୍ଚଫଣୀ, ସପ୍ତଫଣୀ ନାଗ ଓ ନାଗକନ୍ୟାର ମୂର୍ତ୍ତି ଭୁବନେଶ୍ୱରରେ ଅନେକ ମନ୍ଦିରରେ ଦେଖାଯାଏ । ଉତ୍କଳର ହିନ୍ଦୁମାନେ ନାଗଚତୁର୍ଥୀ ଦିନ ନାଗପୂଜା କରନ୍ତି । ଆଦିମ ବୈଦିକ ଯୁଗରୁ ଆର୍ଯ୍ୟ ମହର୍ଷିସ୍ତୁତ ନାଗ ନାଗିଣୀ କାଳକ୍ରମେ ସମଗ୍ର ଭାରତ ଓ ଉତ୍କଳର ଆରାଧ୍ୟଦେବତାରୂପେ ପରିଗଣିତ ହେଲେ । ହିନ୍ଦୁ ଶିଳ୍ପଶାସ୍ତ୍ର ମତାନୁସାରେ ନାଗ ଓ ନାଗକନ୍ୟା ମୂର୍ତ୍ତି ପବିତ୍ର ଓ ପୂଜ୍ୟ । ତେଣୁ ହିନ୍ଦୁର ଧର୍ମମନ୍ଦିରରେ ଏହା ପ୍ରଧାନ ସ୍ଥାନ ଲାଭ କରିଥିଲା ।

ତେବେ ଭୁବନେଶ୍ୱରର କେତେକ ମନ୍ଦିରରେ ନାଗ, ନାଗିଣୀର ମୂର୍ତ୍ତି ଅତ୍ୟଧିକ ଭାବରେ ଖୋଦିତ ହୋଇଛି । ପରବର୍ତ୍ତୀ କାଳରେ ନିର୍ମିତ ଯମେଶ୍ୱର, ମେଘେଶ୍ୱର,ସାରୀଦେଉଳ, ଚିତ୍ରେଶ୍ୱର ପ୍ରଭୃତି କେତେକ ମନ୍ଦିରରେ ଓ ବିଶେଷତଃ ଭୁବନେଶ୍ୱରର ଗୋଟିଏ ପ୍ରାଚୀନତମ ମନ୍ଦିର ଭାସ୍କରେଶ୍ୱରରେ ନାଗନାଗିଣୀ ମୂର୍ତ୍ତିର ପ୍ରାଚୁର୍ଯ୍ୟ ଲକ୍ଷିତ ହୁଏ ନାହିଁ । କିନ୍ତୁ ମୁକ୍ତେଶ୍ୱର, ରାଜାରାଣୀ, ଗୌରୀ, ପାର୍ବତୀ, ଅନନ୍ତବାସୁଦେବ ମନ୍ଦିରରେ

ନାଗନାଗିଣୀ ମୂର୍ତ୍ତି ଦେଖାଯାଏ ।

ଏଗୁଡ଼ିକ ସମ୍ପୂର୍ଣ୍ଣ ଭାବରେ ବୌଦ୍ଧଶିଳ୍ପର ପ୍ରଭାବ ବୋଲି ବିଚାର କରାଯାଇଥାଏ । ସାଧାରଣତଃ କୋଣକ ଓ ଅନର୍ଥ ପାଗର ମଧ୍ୟବର୍ତ୍ତୀ ସ୍ଥାନ, ପ୍ରବେଶଦ୍ୱାରର ଦୁଇପାର୍ଶ୍ୱ ଓ ଜଗମୋହନ, ଭାଲିଝରକା ନିକଟରେ ଏଗୁଡ଼ିକ ଖୋଦିତ ହୋଇଥାନ୍ତି ।

ଅଗ୍ନିପୁରାଣ ଅନୁସାରେ ଅଷ୍ଟନାଗ ପ୍ରଧାନ-
"ଅନନ୍ତୋବାସୁକିଃ ପଦ୍ମଃ ମହାପଦ୍ମଶ୍ଚ ତକ୍ଷକଃ
କୁଳିରୋ କର୍କଟୋ ଶଙ୍ଖଃ ହ୍ୟଷ୍ଟ ନାଗାଃ ପ୍ରକୀର୍ତ୍ତିତାଃ"

ବୌଦ୍ଧମାନଙ୍କର ଅଷ୍ଟପ୍ରକାର ଉପଦେବତା (demigods)ଙ୍କ ମଧ୍ୟରେ ନାଗ ଗୋଟିଏ ପ୍ରଧାନ ଉପଦେବତା ।

**ଗଜଲକ୍ଷ୍ମୀ ମୂର୍ତ୍ତି** - ଲକ୍ଷ୍ମୀପୂଜା ଭାରତରେ କେବେ ପ୍ରଚଳିତ ହେଲା ତାହା କହିବା ବର୍ତ୍ତମାନ ସମ୍ଭବ ନୁହେଁ । ବୌଦ୍ଧଗ୍ରନ୍ଥମାନଙ୍କରୁ ଜଣାଯାଏ ଯେ ଲକ୍ଷ୍ମୀଦେବୀ ବୌଦ୍ଧମାନଙ୍କ ଦ୍ୱାରା ସମ୍ମାନିତା ହେଉଥିଲେ । ବରହୁତ ଓ ସାଞ୍ଚି ସ୍ତୂପରେ ଗଜଲକ୍ଷ୍ମୀମୂର୍ତ୍ତି ଦେଖାଯାଏ । ଏଗୁଡ଼ିକ ଭାରତର ପ୍ରାଚୀନତମ କୀର୍ତ୍ତି । ଖ୍ରୀଷ୍ଟପୂର୍ବ ୩ୟ ଶତାବ୍ଦୀ ବେଳକୁ ପଦ୍ମାସନାସୀନା ଲକ୍ଷ୍ମୀଙ୍କ ଦୁଇପାର୍ଶ୍ୱରେ ଗଜମୂର୍ତ୍ତି ଖୋଦନ କରିବା କଥା ପ୍ରଚଳିତ ହୋଇଥିଲା ।

ଖଣ୍ଡଗିରିର ଅନନ୍ତଗୁମ୍ଫା ଖ୍ରୀ.ପୂ. ୨ୟ ଶତାବ୍ଦୀର କୀର୍ତ୍ତି ବୋଲି ନିର୍ଦ୍ଧାରିତ ହୋଇଅଛି । ଅନନ୍ତଗୁମ୍ଫାର ଦ୍ୱାରରେ ଗୋଟିଏ ଅତିରମଣୀୟ ଗଜଲକ୍ଷ୍ମୀ ମୂର୍ତ୍ତି ଖୋଦିତ ହୋଇଛି । ଉପରେ ମହାଲକ୍ଷ୍ମୀ ସମାସୀନା । ଉଭୟପାର୍ଶ୍ୱରେ- କଳସଧାରୀ ଦୁଇଟି ହସ୍ତୀମୂର୍ତ୍ତି ପଦ୍ମପୁଷ୍ପ ଉପରେ ଖୋଦିତ ହୋଇଅଛି । ଗଜଲକ୍ଷ୍ମୀ ମୂର୍ତ୍ତି ବୌଦ୍ଧ, ଜୈନ ଓ ପରବର୍ତ୍ତୀକାଳରେ ହିନ୍ଦୁମାନଙ୍କର ଦେବମନ୍ଦିରମାନଙ୍କରେ ଖୋଦିତ ହୋଇଅଛି । ଖ୍ରୀଷ୍ଟୀୟ ପଞ୍ଚମ ଶତାବ୍ଦୀ ବେଳକୁ ମହାଲକ୍ଷ୍ମୀ ନବୋହିତ ବ୍ରାହ୍ମଣ୍ୟଧର୍ମରେ ବିଶିଷ୍ଟ ସ୍ଥାନ ଅଧିକାର କରିଥିଲେ । ତେଣୁ ହିନ୍ଦୁମାନଙ୍କର ଦେବମନ୍ଦିରମାନଙ୍କରେ ଗଜଲକ୍ଷ୍ମୀମୂର୍ତ୍ତି ଖୋଦିତ କରିବା କାଳକ୍ରମେ ଶିଳ୍ପଶାସ୍ତ୍ରାନୁମୋଦିତ

ହୋଇଥିଲା । ଆମ୍ଭେମାନେ ଭୁବନେଶ୍ୱରର ଅଧିକାଂଶ ମନ୍ଦିରରେ ଗଜଲକ୍ଷ୍ମୀମୂର୍ତ୍ତି ଦେଖିବାକୁ ପାଉ । କାଳକ୍ରମେ ଉତ୍କଳୀୟମାନଙ୍କ ମଧ୍ୟରେ ମହାଲକ୍ଷ୍ମୀମୂର୍ତ୍ତି ଲୌକିକ ଦେବତା ରୂପେ ପୂଜିତ ହେଲେ । ହିନ୍ଦୁମନ୍ଦିରର ପ୍ରତ୍ୟେକ ଦେବଦେବୀ ଓ ଶିଳ୍ପର ସ୍ୱତନ୍ତ୍ର ଇତିହାସ ଅଛି । ମହାଲକ୍ଷ୍ମୀପୂଜା ବୌଦ୍ଧଯୁଗରେ ପ୍ରଥମେ ପ୍ରବର୍ତ୍ତିତ ହୋଇ କାଳକ୍ରମେ ସମଗ୍ର ହିନ୍ଦୁ ସମାଜରେ ପ୍ରଚଳିତ ହୋଇଥିଲା ।

**କାର୍ତ୍ତିକ ପୂଜା** - ବୈଦିକ ଯୁଗରେ କାର୍ତ୍ତିକେୟ ପୂଜିତ ହେଉଥିବାର ଜଣାଯାଏ ନାହିଁ । ବୌଦ୍ଧଧର୍ମର ଲୋପ ସାଧନକରିବା ନିମିତ୍ତ ଖ୍ରୀଷ୍ଟପୂର୍ବ ୨ୟ ଶତାବ୍ଦୀରେ ବ୍ରାହ୍ମଣ୍ୟଧର୍ମର ପୁନରୁତ୍ଥାନ ଯୁଗରେ କାର୍ତ୍ତିକେୟ ହିନ୍ଦୁମାନଙ୍କର ଆରାଧ୍ୟ ଦେବତା ରୂପେ ପରିଗଣିତ ହେଲେ । ଗ୍ରନ୍ଥରେ ସ୍କନ୍ଦମୂର୍ତ୍ତିର ଉଲ୍ଲେଖ ଅଛି । ମହାକବି କାଳିଦାସଙ୍କ 'କୁମାରସମ୍ଭବ' ଗ୍ରନ୍ଥ ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀର ଶେଷ ଭାଗରେ ଲିଖିତ । ସେଥିରେ କୁମାର ବା କାର୍ତ୍ତିକେୟଙ୍କ ଜନ୍ମବୃତ୍ତାନ୍ତ ଅତି ସୁବିସ୍ତୃତ ଭାବରେ ବର୍ଣ୍ଣିତ ହୋଇଅଛି । କାଳିଦାସ ପୁରାଣମାନଙ୍କରୁ ହରପାର୍ବତୀତନୟ କାର୍ତ୍ତିକଙ୍କ ବିଷୟ ସଂଗ୍ରହ କରିଥିଲେ । ତାହାହେଲେ ନିଃସନ୍ଦେହରେ କୁହାଯାଇପାରେ ଯେ, ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀ ବେଳକୁ କାର୍ତ୍ତିକେୟ ହିନ୍ଦୁମାନଙ୍କର ଆରାଧ୍ୟ ଦେବତା ରୂପେ ଗୃହୀତ ହୋଇଥିଲେ । ସ୍କନ୍ଦଙ୍କ ଉପାସକମାନେ 'କୌମାର' ନାମରେ ଅଭିହିତ ହୁଅନ୍ତି । କାର୍ତ୍ତିକେୟ ଖ୍ରୀଷ୍ଟୀୟ ପଞ୍ଚମଶତାବ୍ଦୀ ପୂର୍ବରୁ ନିର୍ମିତ ମାର୍କଣ୍ଡେଶ୍ୱର, ପର୍ଶୁରାମେଶ୍ୱର ପ୍ରଭୃତି ଶିବମନ୍ଦିରରେ ପାର୍ଶ୍ୱମୂର୍ତ୍ତି ରୂପେ କଳ୍ପିତ ହୋଇଛନ୍ତି । ବୌଦ୍ଧଧର୍ମ ସହିତ ଘନିଷ୍ଠ ସମ୍ପର୍କ ଥିବାରୁ କାର୍ତ୍ତିକେୟ ଶିବନିକେତନର ବାମପାର୍ଶ୍ୱରେ ନିର୍ମିତ ହେଉଥିଲେ । ପୂର୍ବେ ଭାରତର ଅନେକସ୍ଥାନରେ କାର୍ତ୍ତିକେୟ ପୂଜାନିମିତ୍ତ ସ୍ୱତନ୍ତ୍ର ମନ୍ଦିରମାନ ନିର୍ମିତ ହୋଇଥିଲା । କାଶ୍ମୀରରାଜ ଜୟ ପୀଡ଼ ରାଜତ୍ୱର ଶେଷାଂଶରେ (୭୫୧-୭୮୨) ପୌଣ୍ଡ୍ରବର୍ଦ୍ଧନରେ ସୁବୃହତ୍ କାର୍ତ୍ତିକେୟ ମନ୍ଦିର ଦେଖିଥିଲେ । କାର୍ତ୍ତିକେୟ ମୂର୍ତ୍ତି ଦ୍ୱିଭୁଜ, ଚତୁର୍ଭୁଜ, ଷଡ଼୍ଭୁଜ- ଏହି ତିନିରୂପରେ ପରିକଳ୍ପିତ । ମୟୂରବାହନ କାର୍ତ୍ତିକେୟଙ୍କର ପୂର୍ବକାଳରେ କୁକ୍କୁଟ ବାହନ ଥିଲା । ଦାକ୍ଷିଣାତ୍ୟରେ କାର୍ତ୍ତିକେୟଙ୍କୁ 'ସୁବ୍ରହ୍ମଣ୍ୟ' ବୋଲି କହନ୍ତି । 'ଶାରଦାତିଳକ' ତନ୍ତ୍ରରେ ସୁବ୍ରହ୍ମଣ୍ୟ 'କୁକ୍କୁଟଧା' 'ରକ୍ତାଙ୍ଗବଳାଖ୍ୟା' ବୋଲି

ବର୍ଣ୍ଣିତ ହୋଇଛନ୍ତି । ଚଣ୍ଡେଶ୍ୱରଙ୍କ ମନ୍ଦିରରେ କାର୍ତ୍ତିକେୟଙ୍କର କୁକ୍କୁଟ ବାହନ ବିଦ୍ୟମାନ । ମେଘେଶ୍ୱର ମନ୍ଦିରର ପଶ୍ଚିମଭାଗରେ ଥିବା କାର୍ତ୍ତିକେୟମୂର୍ତ୍ତି ନିକଟରେ କୁକ୍କୁଟ ଓ ମୟୂର ଉଭୟଙ୍କର ପ୍ରତିମୂର୍ତ୍ତି ଦେଖାଯାଏ । ପରବର୍ତ୍ତୀକାଳରେ କାର୍ତ୍ତିକେୟ କେବଳ ମୟୂରବାହନ ରୂପେ କଳ୍ପିତ ହୋଇଥିଲେ । ଭୁବନେଶ୍ୱରରେ କାର୍ତ୍ତିକେୟଙ୍କ ନିମିତ୍ତ ସ୍ୱତନ୍ତ୍ର ମନ୍ଦିର ନିର୍ମିତ ହୋଇଥିବାର ଜଣାଯାଏ ନାହିଁ । କେବଳ ଶିବମନ୍ଦିରମାନଙ୍କରେ ପାର୍ଶ୍ୱମୂର୍ତ୍ତି ରୂପେ କାର୍ତ୍ତିକ ମୂର୍ତ୍ତି ନିର୍ମିତ ହେଉଥିଲେ ।

**ଗଣେଶପୂଜା** : ବୈଦିକ ଯୁଗରେ ଗଣେଶପୂଜାର କୌଣସି ଆଭାସ ମିଳେ ନାହିଁ । କାର୍ତ୍ତିକେୟଙ୍କ ପରି ଶିବପୁତ୍ର ଗଣେଶଙ୍କର ମଧ୍ୟ ଶୈବଧର୍ମ ସହିତ ଘନିଷ୍ଠ ସମ୍ପର୍କ ବିଦ୍ୟମାନ ଅଛି । ଏହା କିପରି ବ୍ରାହ୍ମଣ୍ୟଧର୍ମରେ ପ୍ରବେଶ ଲାଭ କରିଥିଲା ତାହା କହିବା ସହଜ ନୁହେଁ । ଆଚାର୍ଯ୍ୟ ଫୁଚସ ତାଙ୍କର ମୂର୍ତ୍ତିତତ୍ତ୍ୱ ବିଷୟକ ଗ୍ରନ୍ଥରେ ଲେଖିଛନ୍ତି ଯେ ବୁଦ୍ଧଦେବଙ୍କ ମହାପରିନିର୍ବାଣର ଗୋଟିଏ ପ୍ରସ୍ତରଖୋଦିତ ଚିତ୍ରରେ ସ୍କନ୍ଦ ଓ ଗଣେଶ ଇନ୍ଦ୍ରଙ୍କ ସହିତ ଦଣ୍ଡାୟମାନ ରହିଥିବାର ଦେଖାଯାଏ । ଏକ ସମୟରେ ଗଣେଶ ମୂର୍ତ୍ତିପୂଜା ସୁଦୂର ମେକ୍‌ସିକୋ ଓ ଜାପାନ ଦେଶରେ ପ୍ରଚଳିତ ଥିଲା । ମେକ୍‌ସିକୋ(Mexico) ଦେଶରେ ଗଣେଶଙ୍କର ନାନାବିଧ ମୂର୍ତ୍ତି ଆବିଷ୍କୃତ ହୋଇଅଛି । Grandwellଙ୍କ ମତରେ ବିନାୟକ ବା ଗଣେଶ ଜାପାନରେ ଦେବତାରୂପେ ବହୁକାଳ ପୂଜିତ ହେଉଥିଲେ । ଅଶୋକଙ୍କ କନ୍ୟା ଚାରୁମତୀ ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀରେ ନେପାଳରେ ଗଣେଶମନ୍ଦିର ପ୍ରତିଷ୍ଠା କରିଥିବାର କଥିତ ହୁଏ । ଗଣେଶପୂଜା ପ୍ରଥମେ ବୌଦ୍ଧଧର୍ମର ପ୍ରଧାନଶାଖା ମହାଯାନ ଧର୍ମରେ ବିଶିଷ୍ଟ ସ୍ଥାନ ଅଧିକାର କରିଥିବା ବୌଦ୍ଧଗ୍ରନ୍ଥ ଓ ଶିଳ୍ପରୁ ଜଣାଯାଏ । ପୁରାଣ ଓ ତନ୍ତ୍ରରେ ୫୪ ପ୍ରକାର ଗଣେଶମୂର୍ତ୍ତିର ବର୍ଣ୍ଣନା ଦିଆଯାଇଛି । କାର୍ତ୍ତିକେୟଙ୍କ ପରି ବହୁପ୍ରାଚୀନ କାଳରୁ ଗଣେଶ ଶିବମନ୍ଦିରରେ ପାର୍ଶ୍ୱମୂର୍ତ୍ତି ରୂପେ କଳ୍ପିତ ହେଉଥିଲେ । ଲିଙ୍ଗରାଜ ମନ୍ଦିରର ଦକ୍ଷିଣପାର୍ଶ୍ୱରେ ଥିବା ଦଣ୍ଡାୟମାନ ଗଣେଶଙ୍କ ବିରାଟମୂର୍ତ୍ତି ଦର୍ଶକମାନଙ୍କ ମନରେ ବିସ୍ମୟ ଉତ୍ପାଦନ କରେ । ଉତ୍ତରଭାରତ ଅପେକ୍ଷା ଦକ୍ଷିଣ ଭାରତରେ ଗଣେଶପୂଜା ବିଶେଷଭାବରେ ପ୍ରଚଳିତ ହେଉଥିଲା । ତେଣୁ ସେଠାରେ ଗଣେଶଙ୍କ ନିମିତ୍ତ ବିଶାଳ ମନ୍ଦିରମାନ ନିର୍ମିତ ହେଉଥିଲା । ଭୁବନେଶ୍ୱରରେ ଅନେକ

ଗଣେଶ ମୂର୍ତ୍ତି ଦେଖାଯାଏ । ହିନ୍ଦୁଧର୍ମର ପଞ୍ଚଦେବତା ମଧ୍ୟରେ ଗଣପତି ପ୍ରଧାନ । ହିନ୍ଦୁଧର୍ମର ପଞ୍ଚଶାଖା ମଧ୍ୟରେ ଗଣପତିପୂଜା ବା ଗାଣପତ୍ୟ ଶାଖା ଭାରତର କେତେକ ଅଞ୍ଚଳରେ ବିଶେଷ ପ୍ରଚାରଲାଭ କରିଥିଲା । ଭୁବନେଶ୍ୱରର ମନ୍ଦିରମାନଙ୍କରେ ଗଣେଶଙ୍କର ନାନାବିଧ ମୂର୍ତ୍ତି ଦେଖାଯାଏ । ପର୍ଶୁରାମେଶ୍ୱର ମୋହନର ଦକ୍ଷିଣଦ୍ୱାରରେ ନବଗ୍ରହମୂର୍ତ୍ତି ପରିବର୍ତ୍ତେ ଗଣେଶମୂର୍ତ୍ତି ଖୋଦିତ ହୋଇଥିବାର ଦେଖାଯାଏ ।

**ହରିଦ୍ରାଗଣେଶ** - ହରିଦ୍ରାଭଂ ଚତୁର୍ବାହୁଂ ହରିଦ୍ରବସନଂ ବିଭୁମ୍ ।
ପାଶାକୁଂଶ ଧରଂ ଦେବଂ ମୋଦକଂ ଦନ୍ତମେବଚ ॥
(ପାଶ, ଅଙ୍କୁଶ, ମୋଦକ, ଦନ୍ତ)

**ଉଚ୍ଛିଷ୍ଟଗଣେଶ** : ରକ୍ତବସ୍ତ୍ର, ରକ୍ତପଦ୍ମାସନ, ତ୍ରିନେତ୍ର, ଦ୍ୱିଦନ୍ତ, ଇଷ୍ଟଦନ୍ତ ଜଟାଶୋଭିତ ଦକ୍ଷିଣ ହସ୍ତ ଉପରତଳ, ପାଶ-ଅଙ୍କୁଶ ।

**ମହାଗଣେଶ** : ଇକ୍ଷୁଦଣ୍ଡ ଶୁଣ୍ଢ କରାଗ୍ରଧୃତକଳସ ଉପରେ ନ୍ୟସ୍ତଥାଏ ।

**ନବଗ୍ରହମୂର୍ତ୍ତି**

**ସୂର୍ଯ୍ୟ** - ପଦ୍ମହସ୍ତଦ୍ୱୟ, ପୂର୍ବାନନ, ସପ୍ତାଶ୍ୱବାହନ'

**ଚନ୍ଦ୍ର** - ଦ୍ୱିବାହୁ, ଦଶାଶ୍ୱବାହନ, ଶ୍ୱେତପଦ୍ମସ୍ଥ ବିଚିନ୍ତ୍ୟୋମାଧିଦୈବତମ୍

**ମଙ୍ଗଳ** - ମେଷସ୍ଥ, ରକ୍ତମାଲ୍ୟଶୋଭିତ, ଚତୁର୍ଭୁଜ, ଦକ୍ଷିଣ ହସ୍ତର ଉପର (ଶକ୍ତି), ଦକ୍ଷିଣତଳ(ବରଦ), ବାମ ଉପର (ଅଭୟ),ବାମତଳ (ଗଦା)

**ପ୍ରକାରାନ୍ତରେ** - ରକ୍ତମାଲ୍ୟାମ୍ବରଧରଂ ଶୂଳଶକ୍ତିସମନ୍ୱିତଂ ।
ଗଦାପଦ୍ମଧରଂ ଦେବଂ ମେଷାରୂଢଂ ବରପ୍ରଦମ୍ ॥

**ବୁଧ**- ସ୍ଥିତ ଚତୁର୍ଭୁଜ, ସିଂହଗ, ବାମୋର୍ଦ୍ଧ୍ୱ-ଚକ୍ର, ବାମନିମ୍ନ-ଗଦା, ଦକ୍ଷିଣଉର୍ଦ୍ଧ୍ୱ-ବରଦ, ଦକ୍ଷିଣନିମ୍ନ-ଖଡ୍ଗ, ବୈଶ୍ୟ

**ବୃହସ୍ପତି**- ଦ୍ୱିଜ, ସରୋଜସ୍ଥ, ଚତୁର୍ଭୁଜ, ଦକ୍ଷୋର୍ଦ୍ଧ୍ୱାଦକ୍ଷଭେଦ ଶରକୋଦଣ୍ଡ ମାହ୍ୱୟେତ୍ ।

**ଶୁକ୍ର**- ଦ୍ୱିଜ, ପଦ୍ମସ୍ଥ, ଚତୁର୍ଭୁଜ,ସଦାକ୍ଷବର ଶରକୋଦଣ୍ଡହସ୍ତଂ ସିତାମ୍ବର

**ଶନି** - ଗୃଧ୍ରଗତଂ, ଶୂଦ୍ର, ଚତୁର୍ଭୁଜ, "ଦଧତ୍‌ବାଣଂ ବରଂ ଶୂଳଂ

ଧନୁର୍ହସ୍ତଂ ସମାହୃୟେତ୍ ।"

**ରାହୁ -** ସିଂହାସନ, କୃଷ୍ଣାମ୍ବରଂ, ଚତୁର୍ବାହୁଂ, "ଖଡ୍ଗବରଶୂଳଚର୍ମକରସ୍ତଥା"

**କେତୁ -** ଗୃଧ୍ରଗତଂ, ବିକୃତାନନଂ, ଧୂମ୍ରବସନଂ, ଶୂଦ୍ର, ଗଦିନଂ ।

ଉତ୍କଳର ମନ୍ଦିରମାନଙ୍କର ଦ୍ୱାରଦେଶରେ ନବଗ୍ରହମୂର୍ତ୍ତି ଖୋଦିତ ହୋଇଥାଏ । ଉତ୍ତରଭାରତରେ ଆବିଷ୍କୃତ କେତେକ ପ୍ରାଚୀନ ମନ୍ଦିରର ଦ୍ୱାରଦେଶରେ ନବଗ୍ରହମୂର୍ତ୍ତି ମଧ୍ୟ ଦେଖାଯାଏ । ପ୍ରାଚୀନ ଭାରତୀୟ ଜ୍ୟୋତିଃଶାସ୍ତ୍ରବିତ୍ ପଣ୍ଡିତମାନେ ଆକାଶମଣ୍ଡଳରେ ଏହି ନବଗ୍ରହମୂର୍ତ୍ତି ଆବିଷ୍କାର କରିଥିଲେ । ବୈଦିକ ଋଷିମାନେ ମଧ୍ୟ ସୂର୍ଯ୍ୟ ଓ ଚନ୍ଦ୍ରଙ୍କର ସ୍ତୁତିଗାନ କରୁଥିଲେ । କେଉଁ ସମୟରେ ଆକାଶର ଏହି ନବଗ୍ରହ ହିନ୍ଦୁଧର୍ମରେ ପୂଜିତ ହେଲେ ତାହା କହିବା ସହଜସାଧ୍ୟ ନୁହେଁ । ଭୁବନେଶ୍ୱରର କେତେକ ମନ୍ଦିରର ବିମାନ ବା ଜଗମୋହନର ଦ୍ୱାରରେ ନବଗ୍ରହମୂର୍ତ୍ତି ଖୋଦିତ ହେବାର ଦେଖାଯାଏ । ପର୍ଶୁରାମେଶ୍ୱର, ମାର୍କଣ୍ଡେଶ୍ୱର, ଉତ୍ତରେଶ୍ୱର ପ୍ରଭୃତି କେତେକ ମନ୍ଦିରରେ କେବଳ ବିମାନଦ୍ୱାରରେ ନବଗ୍ରହମୂର୍ତ୍ତି ଖୋଦିତ ହୋଇଅଛି । ଜଗମୋହନ ଦ୍ୱାରରେ ସ୍ଥାନେ ସ୍ଥାନେ ଗଜଲକ୍ଷ୍ମୀ ବା ଗଣେଶମୂର୍ତ୍ତି (ପର୍ଶୁରାମେଶ୍ୱର ମନ୍ଦିରର ଦକ୍ଷିଣଦ୍ୱାର) ଖୋଦିତ ହୋଇଅଛି । ହିନ୍ଦୁଧର୍ମ ମତରେ ଦେବପୂଜକ ବା ଦେବଦର୍ଶକମାନେ ମନ୍ଦିର ମଧ୍ୟରେ ପ୍ରବେଶକରି ଅଧିଷ୍ଠାତ୍ରୀ ଦେବ-ଦେବୀଙ୍କ ପୂଜା କରିବା ପୂର୍ବରୁ ନିଜର ରିଷ୍ଟଖଣ୍ଡନ ନିମିତ୍ତ ନବଗ୍ରହମାନଙ୍କୁ ପୂଜା କରିବା ଆବଶ୍ୟକ । ତେଣୁ ପ୍ରତ୍ୟେକ ଯାତ୍ରୀ ପ୍ରଥମେ ନବଗ୍ରହ ନିକଟରେ ମସ୍ତକ ନତ କରିଥାନ୍ତି । ଅନନ୍ତ ନୀଳିମାମୟ ଗଗନ ମଣ୍ଡଳରେ ବିରାଜିତ ଗ୍ରହ ଓ ନକ୍ଷତ୍ରମାନେ ମନୁଷ୍ୟର ଭାଗ୍ୟ ନିର୍ଣ୍ଣୟ କରିଥାନ୍ତି ବୋଲି ହିନ୍ଦୁର ଅଟଳ ବିଶ୍ୱାସ । ଗ୍ରହପୂଜା ହିନ୍ଦୁଧର୍ମର ଗୋଟିଏ ପ୍ରଧାନ ଅଂଶରୂପେ ଗୃହୀତ ହୋଇଥିଲା । ତେଣୁ ହିନ୍ଦୁର ଧର୍ମପୀଠ ମନ୍ଦିରମାନଙ୍କରେ ନବଗ୍ରହମୂର୍ତ୍ତି ସ୍ଥାପନ ନିମିତ୍ତ ହିନ୍ଦୁଶିଳ୍ପଶାସ୍ତ୍ରରେ ନିୟମ ବିଧିବଦ୍ଧ ହୋଇଅଛି । ଚାଲୁକ୍ୟ ମନ୍ଦିରମାନଙ୍କର ଦ୍ୱାରଦେଶରେ ନବଗ୍ରହମୂର୍ତ୍ତି ଖୋଦିତ ହୋଇ ନ ଥାଏ । ସେଗୁଡ଼ିକ ମନ୍ଦିରର ଅଭ୍ୟନ୍ତରରେ ଛାତଦେଶରେ ଖୋଳା ହୋଇଥାଏ । ମନ୍ଦିରଦ୍ୱାରରେ ନବଗ୍ରହମୂର୍ତ୍ତି ଖୋଳିବା ଉତ୍ତରଭାରତୀୟ ବିଶେଷତଃ ଉତ୍କଳୀୟ ଶିଳ୍ପର ବିଶେଷତ୍ୱ ।

ଦିକ୍‌ପାଳ ମୂର୍ତ୍ତି : ଉତ୍କଳର ଅଧିକାଂଶ ମନ୍ଦିରରେ ଦିକ୍‌ପାଳମୂର୍ତ୍ତି ଦେଖାଯାଏ । ଅଷ୍ଟଦିକ୍‌ପାଳମାନେ ମନ୍ଦିରର ଚାରିପାଖର ତଳ ବରାଣ୍ଡିରେ ଖୋଦିତ ହୋଇଥାନ୍ତି ।

ଅଗ୍ନିପୁରାଣରେ ଅଷ୍ଟଦିକ୍‌ପାଳଙ୍କର ବର୍ଣ୍ଣନା ଦିଆଯାଇଛି । ମନ୍ଦିରାଭ୍ୟନ୍ତରରେ ପ୍ରବେଶ କରିବା ପୂର୍ବରୁ ପ୍ରତ୍ୟେକ ଦର୍ଶକଙ୍କର ଏମାନେ ପ୍ରଥମେ ଦର୍ଶନୀୟ । ଅଷ୍ଟଦିକ୍‌ପାଳମାନଙ୍କ ମଧ୍ୟରୁ ଇନ୍ଦ୍ର, ଅଗ୍ନି, ଯମ, ନୈରିତ, ବରୁଣ, ପବନ ଏହି ଛଅଟି ବୈଦିକ ଦେବତା ।

ବରୁଣଙ୍କର ଦୁଇପାର୍ଶ୍ୱରେ ମକରବାହିନୀ ଗଙ୍ଗା ଓ କୂର୍ମବାହିନୀ ଯମୁନା ମଧ୍ୟ ଖୋଦିତ ହୋଇଥାନ୍ତି ।

"ପୂର୍ବେ ଇନ୍ଦ୍ରଃ ଦେବରାଜଃ ବଜ୍ରହସ୍ତଃ ଗଜସ୍ଥିତଃ ।
ଅଗ୍ନିକୋଣେ ଚତୁରଗ୍ନି ଛାଗସ୍ଥଃ ଶକ୍ତିଯୁତଃ ବୈ ॥
ତତ୍ର ଯମଃ ଦକ୍ଷିଣସ୍ୟାଂ ଦଣ୍ଡପାଣିଃ ମହିଷସ୍ଥଃ
ନୈରିତଂ ପଶ୍ୟ ଖଡ୍ଗାଢ୍ୟଂ ନର ବାହନସଂଯୁତଃ ॥
ମକରାରୂଢଂ ବରୁଣଂ ପାଶହସ୍ତଂ ତତଃ ବ୍ରଜେତ୍
ଆଗଛ ବାୟୁଂ ସବଳଂ ଧ୍ୱଜହସ୍ତଂ ସବାହନମ୍ ॥
ବିଲୋକ୍ୟ ସୋମ ମୌତ୍ତରଂ ଗଦାହସ୍ତଂ ସବାହନଂ (କୁବେର)
ଗଛେତ୍ ତତଃ ମହାଦେବଂ ଶୂଳହସ୍ତଂ ବୃଷସ୍ଥିତମ୍ ॥
ଇତି ସଂପୂଜ୍ୟ ଦିକ୍‌ପାଳାନ୍ ମନ୍ଦିରାଭ୍ୟନ୍ତରଂ ବ୍ରଜେତ୍ ॥"(ଅଗ୍ନିପୁରାଣ)

ମୂର୍ତ୍ତିମାନଙ୍କ ନିମ୍ନଦେଶରେ ଯଥାକ୍ରମେ ଇନ୍ଦ୍ରଙ୍କର ବାହନ ଐରାବତ, ବହ୍ନିଙ୍କର ମେଣ୍ଢା ବା ଛେଳି, ଯମଙ୍କର ମହିଷ, ନୈରିତଙ୍କର ମନୁଷ୍ୟ, ବରୁଣଙ୍କର ମଗର, ବାୟୁଙ୍କର ହରିଣ ବା ମୃଗ, କୁବେରଙ୍କର ୭ଟି ମାଠିଆ ଓ ଇଶାନଙ୍କର ବୃଷଭ ବାହନମାନ କଳ୍ପିତ ହୋଇଥାଏ ।

ନୈରିତ ପଦ୍ମାସନରେ ଉପବିଷ୍ଟ ହୋଇଥିବାର ମଧ୍ୟ ଦେଖାଯାନ୍ତି । ଦାକ୍ଷିଣାତ୍ୟ ମନ୍ଦିରମାନଙ୍କରେ ଏହି ଅଷ୍ଟଦିକପାଳମୂର୍ତ୍ତି ଖୋଦିତ, କିନ୍ତୁ ସେମାନଙ୍କର କ୍ରମ ରକ୍ଷା ହୋଇ ନ ଥାଏ ଓ ବାହନମାନଙ୍କରେ ସାମାନ୍ୟ ପରିବର୍ତ୍ତନ ଦେଖାଯାଏ । ଦାକ୍ଷିଣାତ୍ୟ ବା ଚାଲୁକ୍ୟ ମନ୍ଦିରମାନଙ୍କରେ ବହ୍ନି

ଯୋଡ଼ା, କୁବେର ରଥ ବା ଛେଳି ନୈରତ ଭୂତ ବା କୁମ୍ଭୀର, ବରୁଣ ମୃଗ ବା ହରିଣ, ମରୁତ ଭୂତ ବାହନ ବ୍ୟବହାର କରିଥିବା ଦେଖାଯାଏ ।

ତେବେ ଦିକ୍‌ପତି ନିର୍ଦ୍ଦେଶରେ ମଧ୍ୟ କେତେକ ମନ୍ଦିରରେ ସାମାନ୍ୟ ବିଶେଷତ୍ୱ ଲକ୍ଷିତ ହୁଏ ।

ଅନନ୍ତ ବାସୁଦେବ, ସାରୀଦେଉଳ, ସପ୍ତମାତୃକା ମନ୍ଦିରର ଉପରବ ରାଣ୍ଡିମାନଙ୍କରେ ଦିକ୍‌ପତିମାନଙ୍କର ସ୍ତ୍ରୀମାନେ ସ୍ୱ ସ୍ୱ ପତିଙ୍କର ବାହନାରୂଢ଼ା ହେବାର ଦେଖାଯାଏ ।

ବିଶାଳ ଧରିତ୍ରୀର ଦଶଟି ଦିଗ ବୋଲି ପ୍ରାଚୀନ ହିନ୍ଦୁ ମନୀଷୀମାନେ ନିର୍ଣ୍ଣୟ କରିଛନ୍ତି । ପ୍ରତ୍ୟେକ ଦିଗରେ ଗୋଟିଏ ଅଧିଷ୍ଠାତ୍ରୀ ଦେବତା ଥିବାର ମଧ୍ୟ ସେମାନେ କଳ୍ପନା କରିଥିଲେ । ଊର୍ଦ୍ଧ୍ୱ ଓ ଅଧଃ ଦୁଇଟି ଦିଗ ବୋଲି ଧରାଗଲେ ମଧ୍ୟ ସାଧାରଣତଃ ଲୋକମାନେ 'ଅଷ୍ଟଦିଗ' ବୋଲି ଗ୍ରହଣ କରିଥାନ୍ତି । ଅଗ୍ନିପୁରାଣରେ ଏ ଦୁଇଦିଗ ପାଇଁ ଦୁଇଟି ଦିକ୍‌ପତିଙ୍କର ବ୍ୟବସ୍ଥା ଅଛି । ସେମାନେ ଅନନ୍ତ ଓ ବ୍ରହ୍ମା । ଅନନ୍ତ ଅଧଃ ପ୍ରଦେଶର ପାଳକ ଓ ବ୍ରହ୍ମା ଊର୍ଦ୍ଧ୍ୱ ପ୍ରଦେଶର ରକ୍ଷକ । ତେଣୁ ପୂର୍ବେ ମନ୍ଦିର ନିର୍ମାଣ ସମୟରେ ସୁନା ବା ରୂପାର ସାପଟାଏ ମନ୍ଦିର ନିର୍ମାଣପୂର୍ବରୁ ମୂଳ ପତ୍ତନରେ ପୋତା ହେଉଥିଲା ।

ଗୋଟିଏ ପଦ୍ମପୁଷ୍ପଖୋଦିତ ପ୍ରସ୍ତରଖଣ୍ଡ ମନ୍ଦିରାଭ୍ୟନ୍ତରର ଅଗ୍ରଭାଗରେ ରଖାଯାଏ ତାହା ବ୍ରହ୍ମାଙ୍କ ପ୍ରତିନିଧିସ୍ୱରୂପ । ତାହାର ନାମ ଗର୍ଭମୁଦ୍ରା । କିନ୍ତୁ ଅଷ୍ଟଦିକ୍‌ପାଳମାନଙ୍କ ପରି ଏମାନଙ୍କ ପୂଜା ବିଧାନ ନିମିତ୍ତ କୌଣସି ସ୍ୱତନ୍ତ୍ର ବିଧାନ ନ ଥିଲା । 'ମାନସାର' ଗ୍ରନ୍ଥରେ ଦିକ୍‌ପତିମାନଙ୍କ ଉଦ୍ଦେଶ୍ୟରେ ବଳିପ୍ରଦାନର କଥା ଉଲ୍ଲିଖିତ ହୋଇଛି । ଯଥା- ଦିକ୍‌ପାଳାନ୍ ବଲିଂ ଦଦ୍ୟାତ୍ ସମ୍ୟକ୍ ବ୍ରହ୍ମପ୍ରଦେଶକେ । ଅଷ୍ଟଦିକ୍‌ପାଳ ସ୍ଥାପନ ପ୍ରଥା ହିନ୍ଦୁମାନେ ବୌଦ୍ଧମାନଙ୍କଠାରୁ ଗ୍ରହଣ କରିଥିଲେ । ସାଞ୍ଚୀର ବୌଦ୍ଧସ୍ତୂପରେ ଅଷ୍ଟଦିକ୍‌ପାଳ ପରିବର୍ତ୍ତେ ଚାରୋଟି ତୋରଣରେ ଲୋକପାଳ ଚତୁଷ୍ଟୟ ଦେଖାଯାନ୍ତି । ଉତ୍ତରରେ ବୈଶ୍ରବଣ, ଦକ୍ଷିଣରେ କୁଷ୍ମାଣ୍ଡମାନଙ୍କ ଅଧିପତି ବିରୂଢ଼କ, ପଶ୍ଚିମରେ ନାଗରାଜ ବିରୂପାକ୍ଷ, ପୂର୍ବରେ ଗନ୍ଧର୍ବରାଜ ଧୃତରାଷ୍ଟ୍ର । (Guide to Sanchi)

**ଇନ୍ଦ୍ର**- ଇନ୍ଦ୍ର ଏକ ବୈଦିକ ଦେବତା । ତାଙ୍କର ଲାଞ୍ଛନ ବଜ୍ର । ଇନ୍ଦ୍ରଙ୍କର ହସ୍ତୀବାହନଟି ବୌଦ୍ଧଯୁଗର ପରବର୍ତ୍ତୀକାଳରେ କଳ୍ପିତ । ପରବର୍ତ୍ତୀକାଳରେ ବୌଦ୍ଧମାନଙ୍କ ମଧ୍ୟରେ 'ବଜ୍ର' ଇନ୍ଦ୍ରଙ୍କର ଚିହ୍ନରୂପେ ପ୍ରଚଳିତ ହେବାରୁ ଏହା ହିନ୍ଦୁମାନଙ୍କ ଦ୍ୱାରା ପରିତ୍ୟକ୍ତ ହୋଇଥିଲା । ବୌଦ୍ଧଶିଳ୍ପରେ ମଧ୍ୟ ଇନ୍ଦ୍ରଙ୍କ ପ୍ରତିମୂର୍ତ୍ତି ଦେଖାଯାଏ । ଗାନ୍ଧାରଶିଳ୍ପରେ ବଜ୍ରପାଣିଇନ୍ଦ୍ର ଶତ୍ରୁ-ବୁଦ୍ଧଦେବଙ୍କ ନିକଟରେ ବିନୟାବନତ ଭାବରେ ଦଣ୍ଡାୟମାନ ହୋଇଥିବାର ଦେଖାଯାନ୍ତି । ହିନ୍ଦୁ ପୁରାଣରେ ଇନ୍ଦ୍ର ଦେବରାଜ ବୋଲି ବର୍ଣ୍ଣିତ ହୋଇଅଛନ୍ତି ।

**ବହ୍ନି(ଅଗ୍ନି)** ଆଦିମ ବୈଦିକ ଯୁଗରେ ମଧ୍ୟ ଆର୍ଯ୍ୟମାନଙ୍କଦ୍ୱାରା ଅଗ୍ନି ଏକ ପ୍ରଧାନ ଦେବତାରୂପେ ଗୃହୀତ ହୋଇଥିଲେ । ଅଗ୍ନିର ତୁଷ୍ଟିବିଧାନ ନିମିତ୍ତ ବୈଦିକ ଆର୍ଯ୍ୟଋଷିମାନେ ନାନାବିଧ ଯଜ୍ଞ କରୁଥିଲେ । କିନ୍ତୁ ସେ ସମୟରେ ଅଗ୍ନିଙ୍କର ମୂର୍ତ୍ତିପୂଜା ନ ଥିଲା । ପରବର୍ତ୍ତୀ କାଳରେ ଅଗ୍ନିଦେବ ବିଗ୍ରହ ରୂପେ ସ୍ୱୀକୃତ ହେଲେ ଓ ମନ୍ଦିରରେ ଦିକ୍‌ପାଳରୂପେ ପୂଜିତ ହେଲେ ।

**ଯମ**: ବେଦରେ ସ୍ୱର୍ଗ ବା ନରକର ବିବରଣ ମିଳେନାହିଁ । ଅଶୋକାନୁଶାସନରେ ସ୍ୱର୍ଗର କଳ୍ପନା ଦେଖାଯାଏ । ପୌରାଣିକ ଯୁଗରେ ସ୍ୱର୍ଗ ଓ ନରକର କଳ୍ପନା କରାଗଲା । ତତ୍ ସଙ୍ଗେ ସଙ୍ଗେ ଯମ ନରକର ରାଜା ରୂପେ ଗୃହୀତ ହେଲେ ଓ ହିନ୍ଦୁଧର୍ମରେ ବିଶିଷ୍ଟ ସ୍ଥାନ ଅଧିକାର କରିଥିଲେ । ତେଣୁ ହିନ୍ଦୁଧର୍ମର ମନ୍ଦିରରେ ତାଙ୍କପାଇଁ ସ୍ୱତନ୍ତ୍ର ସ୍ଥାନ ରଖାଗଲା ।

**କୁବେର** - ଧନଦ କୁବେର ବା ବୈଶ୍ରବଣ ବୌଦ୍ଧମାନଙ୍କ ମଧ୍ୟରେ ଉତ୍ତରାଶାର ଅଧିପତି ବୋଲି ପରିଗଣିତ । ତାଙ୍କର ଲାଞ୍ଛନ ନକୁଳ । ଏହା ସାଧାରଣତଃ କୋଳ ଉପରେ ବା ପାର୍ଶ୍ୱଦେଶରେ ବସିଥାଏ । ଅର୍ଥଶାସ୍ତ୍ରରୁ କୁବେର ଗ୍ରାମ୍ୟ ଦେବତା ରୂପେ ପୂଜିତ ହେଉଥିବାର ଜଣାଯାଏ । ହିନ୍ଦୁଧର୍ମରେ ମଧ୍ୟ କୁବେର ଉତ୍ତର ଦିକ୍‌ପାଳରୂପେ ପୂଜିତ ହୁଅନ୍ତି । କିନ୍ତୁ ବାହନରେ ସାମାନ୍ୟ ପାର୍ଥକ୍ୟ ଦେଖାଯାଏ । ହିନ୍ଦୁ କୁବେରଙ୍କ ନକୁଳ ପରିବର୍ତ୍ତେ ୭ଟି ମାଠିଆ ବାହନରୂପେ କଳ୍ପିତ ହୋଇଛି ।

**ଇଶାନ**– ଇଶାନ ଓ ବୃଷଭବାହନ ମହେଶ୍ୱରଙ୍କ ମଧ୍ୟରେ କୌଣସି ପ୍ରଭେଦ ଦେଖାଯାଏ ନାହିଁ । ଇଶାନପୂଜା ଭାରତର ଅତି ଆଦିମକାଳରୁ ପ୍ରଚଳିତ ।

ବୌଦ୍ଧଶିଳ୍ପର ଅନୁକରଣରେ ହିନ୍ଦୁଶିଳ୍ପୀମାନେ ହିନ୍ଦୁଧର୍ମର ସଂସ୍କାର ଯୁଗରେ ଏହି ମନ୍ଦିରଗାତ୍ରରେ ଅଷ୍ଟଦିକ୍‌ପାଳମୂର୍ତ୍ତି ନିର୍ମାଣ ପ୍ରଥା ପ୍ରଚଳନ କରିଥିବାର ଅନୁମିତ ହୁଏ । ଅଷ୍ଟମଠାରୁ ଦଶମ ଶତାବ୍ଦୀ ମଧ୍ୟରେ ନିର୍ମିତ ରାଜପୁତନା ଅନ୍ତର୍ଗତ 'ଓସିୟା' ଗ୍ରାମର ପଞ୍ଚାୟତନ ମନ୍ଦିରରେ ଅଷ୍ଟଦିକ୍‌ପାଳ ମୂର୍ତ୍ତି ଦେଖାଯାଏ । ତାହାହେଲେ ଅଷ୍ଟଦିକ୍‌ପାଳମୂର୍ତ୍ତି ସ୍ଥାପନ ଗୋଟିଏ ପ୍ରଥାରୂପେ ପ୍ରଚଳିତ ହୋଇଥିଲା ।

**ଅଷ୍ଟଶକ୍ତି ମୂର୍ତ୍ତି** – କେତେକ ଉତ୍କଳୀୟ ମନ୍ଦିରରେ ଅନୁରଥ(ଅନର୍ଥ) ପାଗର ବରାଣ୍ଡିରେ ଅଷ୍ଟଶକ୍ତିମୂର୍ତ୍ତି ଖୋଦିତ ହୋଇଥିବାର ଦେଖାଯାଏ । ଏମାନଙ୍କ ପଛରେ ପତ୍ରଗହଳ ଗଛ ଖୋଳା ହୋଇଥାଏ । ଅଗ୍ନିପୁରାଣର ୨୬ ଅଧ୍ୟାୟରେ ଏମାନଙ୍କ ସମ୍ବନ୍ଧରେ ବର୍ଣ୍ଣନା ଦିଆଯାଇଛି । କେତେକ ଐତିହାସିକ ଏହି ଅଷ୍ଟଶକ୍ତିଙ୍କୁ ଉଜ୍ଜ୍ୱଳନୀଳମଣି ନାମକ ପରବର୍ତ୍ତୀକାଳରେ ରଚିତ ବୈଷ୍ଣବ ଗ୍ରନ୍ଥରେ ଦିଆହୋଇଥିବା ଶ୍ରୀରାଧିକାଙ୍କ ଅଷ୍ଟସଖୀ ଚିତ୍ରା, ଚମ୍ପକଲତା, ତୁଙ୍ଗବିଦ୍ୟା, ଇନ୍ଦୁଲେଖା, ରଙ୍ଗଦେବୀ, ସୁଦେବୀ, ଲଳିତା ଓ ବିଶାଖା ବୋଲି କହନ୍ତି । ଏହି ଆଠଜଣ ସର୍ବଗୁଣଭୂଷିତା ବୋଲି ଉଲ୍ଲିଖିତ ହୋଇଅଛି ।

କିନ୍ତୁ ଏହା ଆଦୌ ସମୀଚୀନ ନୁହେଁ । ରାଧାକୃଷ୍ଣ-ଧର୍ମର ପ୍ରଚାରର ବହୁକାଳ ପୂର୍ବରୁ ନିର୍ମିତ-ମନ୍ଦିରମାନଙ୍କରେ ଏହି ଅଷ୍ଟଶକ୍ତିମୂର୍ତ୍ତି ଦେଖାଯାଏ । ଏମାନଙ୍କୁ 'ଅଷ୍ଟାଷ୍ଟକ ଶକ୍ତି' ମଧ୍ୟ କୁହାଯାଏ । ସାରନାଥ ବୌଦ୍ଧକୀର୍ତ୍ତିରେ ଅଷ୍ଟସଖୀ ମୂର୍ତ୍ତି ଦେଖାଯାଏ । ହିନ୍ଦୁ ଶିଳ୍ପୀମାନେ ବୌଦ୍ଧମାନଙ୍କୁ ଅନୁକରଣ କରି ନିଜରଧର୍ମ ମନ୍ଦିରର ସୌଷ୍ଠବ ବର୍ଦ୍ଧନ ନିମିତ୍ତ ଏହି ଅଷ୍ଟମୂର୍ତ୍ତି ଖୋଦନ ପ୍ରଥା ପ୍ରଚଳନ କରିଥିଲେ ।

## ଦ୍ୱାରପାଳ, କୀର୍ତ୍ତିମୁଖ, ବେତାଳ, ଗନ୍ଧର୍ବ ଓ କିନ୍ନର

ଦ୍ୱାରପାଳ – ମନ୍ଦିରମାନଙ୍କ ଦ୍ୱାରରେ ଦ୍ୱାରପାଳମୂର୍ତ୍ତି ନିର୍ମାଣ କରିବା

ଧର୍ମଶାସ୍ତ୍ର ଓ ଶିଳ୍ପଶାସ୍ତ୍ରାନୁମୋଦିତ । ଶିବ, ବିଷ୍ଣୁ, ଦେବୀ ପ୍ରଭୃତି ମନ୍ଦିରରେ ଭିନ୍ନଭିନ୍ନ ଦ୍ୱାରପାଳ ଦେଖାଯାନ୍ତି । ଶିବଙ୍କ ଦ୍ୱାରପାଳ ନନ୍ଦୀ ଓ ମହାକାଳ ।

ଅଗ୍ନିପୁରାଣର ୨୨୧ ଅଧ୍ୟାୟରେ ଏହା ବର୍ଣ୍ଣିତ ହୋଇଅଛି । 'କାଳିକା ପୁରାଣ'ରେ ଅଛି-

'ଯଦାତ୍ମା ନର୍ମ୍ମଣେ ଯାତା ଗୌରୀ ସ୍ମରହରାନ୍ତିକମ୍ ।
ତଦା ଭୃଙ୍ଗିମହାକାଳୌ ଦ୍ୱାସ୍ଥୌ ଦ୍ୱାରି ପ୍ରତିଷ୍ଠିତୌ ।।

ନନ୍ଦୀର ଅପର ନାମ ଭୃଙ୍ଗୀ ।

ଅନ୍ୟତ୍ର - 'ଭୁବଂ ଗତେ ମହାକାଳେ ମାନୁଷତ୍ତ୍ୱେ ଚ ଭୃଙ୍ଗିଣି
ବୈତାଳଭେରବାଖ୍ୟୋଚ ତଥାଭୂତେ ଦ୍ୱିଜୋତ୍ତମାଃ' ।

ନନ୍ଦୀ ଓ ମହାକାଳଙ୍କୁ ବୈତାଳଭୈରବ ମଧ୍ୟ କୁହାଯାଏ । ଏହା ବ୍ୟତୀତ ଗଙ୍ଗା, ଯମୁନା ମୂର୍ତ୍ତି ମଧ୍ୟ କେତେକ ମନ୍ଦିରଦ୍ୱାରରେ ଦେଖାଯାଏ । ବାମ ପାର୍ଶ୍ୱରେ ନନ୍ଦୀ ଓ ଯମୁନା ଏବଂ ଦକ୍ଷିଣ ପାର୍ଶ୍ୱରେ ଗଙ୍ଗା ଓ ମହାକାଳମୂର୍ତ୍ତି ଦେଖାଯାଏ । ଗଙ୍ଗାଙ୍କ ବାହନ ମଗର ଓ ଯମୁନାଙ୍କର କଚ୍ଛପ । ବିଷ୍ଣୁମନ୍ଦିରର ଦ୍ୱାରପାଳ ଜୟ ଓ ବିଜୟ । ପୁରାଣମାନଙ୍କରେ ବ୍ରହ୍ମା-ବିଷ୍ଣୁ-ଶିବ ପ୍ରଭୃତି ଦେବତାମାନଙ୍କର ଭିନ୍ନ ଭିନ୍ନ ଦ୍ୱାରପାଳ ଥିବାର ବର୍ଣ୍ଣନା ଅଛି ।

**କୀର୍ତ୍ତିମୁଖ** - ଏମାନଙ୍କୁ 'ରାହୁର ମୁଖରେ ମାଳ' ବୋଲି ଶିଳ୍ପୀମାନେ କହନ୍ତି । ଚାଲୁକ୍ୟ ଶିଳ୍ପରେ ମଧ ଏଗୁଡ଼ିକ ଖୋଦିତ ହୋଇଥିବାର ଦେଖାଯାଏ । ବୁଦ୍ଧଗୟାର ବୌଦ୍ଧଶିଳ୍ପରେ ମଧ୍ୟ ଏହାର ଆଭାସ ମିଳେ ।

ହିନ୍ଦୁଶିଳ୍ପୀମାନେ ବୌଦ୍ଧମାନଙ୍କଠାରୁ ଏହା ଅନୁକରଣ କରି ମନ୍ଦିରମାନଙ୍କର ସୌନ୍ଦର୍ଯ୍ୟ ବୃଦ୍ଧି କରିବା ନିମିତ୍ତ ଏହା ଖୋଦନ କରୁଥିଲେ । ଏହାକୁ 'ରାହୁଗ୍ରାସ' ବୋଲି ମଧ କୁହାଯାଏ । ସ୍କନ୍ଦପୁରାଣର ଦ୍ୱିତୀୟ ଖଣ୍ଡରେ ଏହାର ବର୍ଣ୍ଣନା ଦିଆଯାଇଛି । ଶୈବୋପାସନା ସହିତ ଏହାର ସଂପର୍କ ଖ୍ରୀଷ୍ଟପୂର୍ବ ୪ର୍ଥ ଶତାବ୍ଦୀର ପୂର୍ବବର୍ତ୍ତୀ ହେବା ସମ୍ଭବ । କେବଳ ଭୁବନେଶ୍ୱର ମନ୍ଦିରରେ ଦ୍ୱିହସ୍ତବିଶିଷ୍ଟ କୀର୍ତ୍ତିମୁଖର ପରିକଳ୍ପନା ନିଜଦେହ ଭକ୍ଷଣ ନିରତ । ଏହା ସ୍କନ୍ଦପୁରାଣର ଭୀଷଣ ସହାସ୍ୟ ପୁରୁଷର କଥା ସ୍ମରଣ

କରାଇଥାଏ ।

କୀର୍ତ୍ତିମୁଖ ନାମରେ ପରିଚିତ ସଦା ଖାଦିତବଦନ ଯେ ଏକପ୍ରକାର ବିକଟଦଂଷ୍ଟ୍ରାବିଶିଷ୍ଟ 'ଗ୍ରାସମୁଖ' ଭୁବନେଶ୍ୱରର ଶୈବ ମନ୍ଦିରେ ଖୋଦିତ ହୋଇଅଛି । ତାହାର ଧାରାବାହିକ ଇତିହାସ ଶ୍ରୀ ଅର୍ଦ୍ଧେନ୍ଦୁ କୁମାର ଗାଙ୍ଗୁଲି 'ରୂପମ୍' ନାମକ ଇଂରାଜୀ ମାସିକ ପତ୍ରିକାରେ ତାହାର ଧାରାବାହିକ ଇତିହାସ ପ୍ରଦାନ କରିଥିଲେ ।

ସ୍କନ୍ଦପୁରାଣରେ ବିଷ୍ଣୁଖଣ୍ଡର 'କାର୍ତ୍ତିକମାସ ମାହାତ୍ମ୍ୟ' ନାମକ ସପ୍ତଦଶ ଅଧ୍ୟାୟରେ ଲିଖିତ ହୋଇଛି ଯେ ଦୈତ୍ୟରାଜ ଜଳନ୍ଧର ତ୍ରିଜଗତର ଅଧିପତି ହୋଇ ଗର୍ବାନ୍ଧ ହୋଇଥିଲା । ସେ ଶିବପାର୍ବତୀଙ୍କ ବିବାହସଭାକୁ ରାହୁକୁ ଦୂତସ୍ୱରୂପ ପ୍ରେରଣ କରି ବାର୍ତ୍ତା ଜ୍ଞାପନ କଲା ଯେ 'ଶିବ ଭିକ୍ଷୁକ ମାତ୍ର । ସେ ସୁନ୍ଦରୀ ରାଜକୁମାରୀର ପତି ହେବାର ଯୋଗ୍ୟ ନୁହନ୍ତି । ପାର୍ବତୀଙ୍କ ଅଦୃଷ୍ଟେ ଜଳନ୍ଧରର ରାଜ୍ଞୀ ହେବାର ଲିଖିତ ଅଛି ।' ରାହୁ ଏହି ଅପମାନଜନକ କଥା ଉଚ୍ଚାରଣ ନ କରୁଣୁଁ ଶିବଙ୍କ ଭ୍ରୂଯୁଗ୍ମ ମଧ୍ୟଦେଶରୁ ସିଂହବଦନ, ଊର୍ଦ୍ଧ୍ୱକେଶ, ଲୋଳଜିହ୍ୱ, ଜ୍ୱଳନ୍ନୟନ ଏକ ଅତି କୃଶକାୟ ଭୀଷଣଦର୍ଶନ ମୂର୍ତ୍ତି ନୃସିଂହ ପ୍ରାୟ ଆବିର୍ଭୂତ ହୋଇ ବଜ୍ରନାଦ କରି କରି ରାହୁକୁ ଗ୍ରାସ କରିବାପାଇଁ ବେଗରେ ପଶ୍ଚାତଗମନ କରି ତାଙ୍କୁ ଧରି ପକାଇଲା । ରାହୁ ପ୍ରାଣଭୟେ ଭୀତ ହୋଇ ଶିବଙ୍କ ଶରଣାପନ୍ନ ହେବାରୁ ଆଶୁତୋଷ ଅବଧ୍ୟ ଦୂତପ୍ରତି କୃପା ପରବଶ ହୋଇ ଏହି ଅଭୂତପୂର୍ବ ମୂର୍ତ୍ତିକୁ ନିବୃତ୍ତ ହେବାକୁ କହିଲେ । ସେ ଅତ୍ୟନ୍ତ କ୍ଷୁଧାତୁର ବୋଲି ପ୍ରକାଶ କରିବାରୁ ମହାଦେବ ତାହାକୁ ତା' ନିଜର ହସ୍ତ ପଦାଦିର ମାଂସ ଆହାର କରିବାପାଇଁ ଅନୁମତି ଦେଲେ । ମୂର୍ତ୍ତି ତତ୍‌କ୍ଷଣାତ୍ ତାହାର ସମଗ୍ର ଦେହର ମାଂସ ଭକ୍ଷଣ କରିପକାଇଲା । କେବଳ ତାହାର ମସ୍ତକମାତ୍ର ଅବଶିଷ୍ଟ ରହିଲା । ଶିବ ତାହାପ୍ରତି ସନ୍ତୁଷ୍ଟ ହୋଇ ବରପ୍ରଦାନ କଲେ, "ଆଜିଠାରୁ ତୁମ୍ଭର ନାମ କୀର୍ତ୍ତିମୁଖ ହେବ ଓ ତୁମ୍ଭେ ମୋ ମନ୍ଦିରର ଦ୍ୱାରଦେଶରେ ଅବସ୍ଥାନ କରିବ । ଯେ ପୂଜା ପୂର୍ବରୁ ତୁମ୍ଭର ଅର୍ଚ୍ଚନା ନ କରିବ ସେ ମୋର କୃପାଲାଭରୁ ବଞ୍ଚିତ ହେବ । (ତ୍ୱଦର୍ଚ୍ଚନଂ ଯେ ନ କୁର୍ବନ୍ତି ନୈବ ତେ ମେ ପ୍ରିୟଙ୍କରଃ) ସେମାନଙ୍କର ଅର୍ଚ୍ଚନା ବୃଥା ହେବ(ତେଷାମର୍ଚ୍ଚା ବୃଥା ଭବେତ -ସ୍କନ୍ଦପୁରାଣ,

ଦ୍ୱିତୀୟଖଣ୍ଡ, ପୃ.-୮୨,୮୩) । କେତେକଙ୍କ ମତରେ ଶିବୋପାସନା ସହିତ କୀର୍ତ୍ତିମୁଖର ଏହି ସମ୍ପର୍କ ୪ର୍ଥ ଶତାବ୍ଦୀର ପୂର୍ବବର୍ତ୍ତୀ ହେବା ସମ୍ଭବ । ଶୈବମନ୍ଦିର ସରଜାଲର ଉପରେ ଏହା ଖୋଦିତ ହୁଏ । କ୍ରମେ ଏହା ଶୁଭସୂଚକ ଭାସ୍କର୍ଯ୍ୟ ଅଳଙ୍କାରରେ ପରିଣତ ହୋଇଥିଲା ଏବଂ ଶୈବ, ବୈଷ୍ଣବ ଓ ଜୈନ ପ୍ରଭୃତି ବିଭିନ୍ନ ସଂପ୍ରଦାୟର ମନ୍ଦିରରେ ସ୍ଥାନ ପାଇଛି । ଦେବମୂର୍ତ୍ତି ନିର୍ମାଣକାରୀମାନେ ଅନେକ ସ୍ଥଳେ ବିଗ୍ରହର ଉପରିଭାଗରେ ପ୍ରଭାମଣ୍ଡଳରେ ବା ପ୍ରଭାତୋରଣ ସ୍ଥାନରେ କୀର୍ତ୍ତିମୁଖର ବ୍ୟବହାର କରିଥାନ୍ତି । କୋଣାର୍କର ସୂର୍ଯ୍ୟମନ୍ଦିର ଉପରିଭାଗରେ ଓ ଭୁବନେଶ୍ୱରର ଅନେକମୂର୍ତ୍ତିର ଶିରୋଦେଶରେ କୀର୍ତ୍ତିମୁଖ ଲକ୍ଷିତ ହୁଏ । ଉତ୍କଳରେ ପ୍ରାପ୍ତ କୀର୍ତ୍ତିମୁଖଗୁଡ଼ିକ ପ୍ରାୟତଃ ଭାରତୀୟ ଶିଳ୍ପଧାରାରେ ବନ୍ଧାଛାଞ୍ଚର ନମୁନା । ଭାରତବର୍ଷର ବାହାରେ ସିଂହଳ ଓ ପ୍ରାଚୀନ କମ୍ବୋଜ ରାଜ୍ୟର ସ୍ଥାପତ୍ୟ ଦେହରେ କୀର୍ତ୍ତିମୁଖ ଆବିଷ୍କୃତ ହୋଇଅଛି ।

**ବେତାଳ** – ଏହା ବୌଦ୍ଧସମ୍ମତ ଓ ବୌଦ୍ଧ ଅଷ୍ଟଉପମୂର୍ତ୍ତି ମଧ୍ୟରୁ ଗୋଟିଏ । ଏଗୁଡ଼ିକ ଗଡ଼ର ଶେଷାଂଶ ପାର୍ଶ୍ୱମାନଙ୍କରେ ଦ୍ୱାର ଓ ପାର୍ଶ୍ୱମୂର୍ତ୍ତିର ବାଡ଼ମାନଙ୍କରେ ଦେଖାଯାଏ । ଚାଲୁକ୍ୟ ଶିଳ୍ପରେ ଏମାନଙ୍କୁ ଭୂତ କହନ୍ତି ।

**ଗନ୍ଧର୍ବ-କିନ୍ନର-** ଏ ଦୁଇଟି ବୌଦ୍ଧମାନଙ୍କର ଉପଦେବତା । ହିନ୍ଦୁମାନଙ୍କ ମନ୍ଦିରରେ ମଧ୍ୟ ଦେଖାଯାଏ ।

**ଅଁଏଳା ପଥର** – ଅଁଏଳା ଫଳର ମଞ୍ଜି ପରି ଏହା ଦେଖାଯାଉଥିବାରୁ ଏହାକୁ ଅଁଏଳା ପଥର କହନ୍ତି । ଅର୍ଦ୍ଧାମଳକ ଚରମ ଦାନର ଚିହ୍ନବୋଲି ଗୃହୀତ ହୋଇଥାଏ । ଅଶୋକଙ୍କର ଶେଷଦାନ ଅର୍ଦ୍ଧାମଳକ ବିଷୟ ବୌଦ୍ଧଗ୍ରନ୍ଥମାନଙ୍କରୁ ଜଣାଯାଏ । ହାଭେଲ ସାହେବ ଶିଖର ପ୍ରବନ୍ଧରେ ଲେଖିଛନ୍ତି ଯେ, ଆମଳକନ୍ୟାୟ ଆକୃତି ଯୁକ୍ତ ଅଳଙ୍କାର ଅଶୋକସ୍ତମ୍ଭର ଶିରୋଦେଶରେ ଦୃଷ୍ଟହୁଏ । ପଦ୍ମବନ୍ଧ ବା ଚିତ୍ର ଘଣ୍ଟିଶିଳାରେ ଏପରି ସରି ସରି ପଥର ଦେଖାଯାଏ ।

**ଭଦ୍ରଘଟ-** ଭୁବନେଶ୍ୱରର କପାଳିନୀ, ମାର୍କଣ୍ଡେଶ୍ୱର, ପର୍ଶୁରାମେଶ୍ୱର ପ୍ରଭୃତି ମନ୍ଦିରରେ 'ଭଦ୍ରଘଟ'ର ପ୍ରତିକୃତି ଦେଖାଯାଏ । ବୁଦ୍ଧଙ୍କ ଜୀବନରେ ଜନ୍ମ,

ଜ୍ଞାନଲାଭ, ଧର୍ମଚକ୍ରପ୍ରବର୍ତ୍ତନ ଓ ମହାପରିନିର୍ବାଣ ଆଦି ୪ଟି ପ୍ରଧାନ ଘଟଣା । ଭଦ୍ରଘଟଦ୍ୱାରା ଏହି ମହାପୁରୁଷଙ୍କର ଜନ୍ମ ସୂଚିତ ହୁଏ । ସାଞ୍ଚୀ, ବରହୂତ ଓ ସାରନାଥର ବୌଦ୍ଧଶିଳ୍ପରେ ବୌଦ୍ଧ ଭଦ୍ରଘଟ ବହୁଳଭାବରେ ଖୋଦିତ ହୋଇଥିବାର ଦେଖାଯାଏ । ହିନ୍ଦୁଶିଳ୍ପୀମାନେ ବୌଦ୍ଧଶିଳ୍ପର ଅନୁକରଣରେ ଏହାକୁ ମନ୍ଦିରଗାତ୍ରରେ ନିର୍ମାଣ କରୁଥିଲେ । କପାଳିନୀ ମନ୍ଦିରର ଦକ୍ଷିଣ ଓ ବାମପାର୍ଶ୍ୱରେ ଏଗୁଡ଼ିକ ଅତିସୁନ୍ଦର ଭାବରେ ଖୋଦିତ ହୋଇଅଛି ।

**ଭୋ-ଚିତ୍ର** - ବୌଦ୍ଧ ଯୁଗରେ ବହୁଳଭାବରେ ବ୍ୟବହୃତ ହେଉଥିଲା । ଏଗୁଡ଼ିକ ମଧ୍ୟରେ ପୁରାଣବର୍ଣ୍ଣିତ କଥାମାନ ଚିତ୍ରିତ ହୋଇଥାଏ । କପାଳିନୀ ବିମାନର ପୂର୍ବଭାଗର ତଳେ 'ନାରାୟଣ ଭୋ', ଉପରେ 'ତାଣ୍ଡବନୃତ୍ୟ ଭୋ', ପର୍ଶୁରାମେଶ୍ୱରରେ 'ଗଣେଶ ଭୋ' 'ପଦ୍ମ ଭୋ' 'ସିଂହ ଭୋ' 'ପର୍ଶୁରାମ ଭୋ' ବିଶେଷ ଉଲ୍ଲେଖ ଯୋଗ୍ୟ । ପର୍ଶୁରାମେଶ୍ୱରଜାତୀୟ ମନ୍ଦିର ମାନଙ୍କରେ ଥିବା ପ୍ରତ୍ୟେକ ଚିତ୍ର ଦର୍ଶକର ଦୃଷ୍ଟି ଆକର୍ଷଣ କରିଥାଏ । ଏଗୁଡ଼ିକ ଦେଖିବାକୁ ଅତି ସୁନ୍ଦର । ଦୁଇପାର୍ଶ୍ୱରେ ଅର୍ଦ୍ଧୋପବିଷ୍ଟା ରମଣୀମୂର୍ତ୍ତିଦ୍ୱୟଙ୍କୁ କେହି କେହି ଉଡ୍ଡୀୟମାନ ଗନ୍ଧର୍ବବାଳୀ ବୋଲି ବିବେଚନା କରନ୍ତି । ପରବର୍ତ୍ତୀକାଳରେ ନିର୍ମିତ ମନ୍ଦିରମାନ ବା ଲିଙ୍ଗରାଜ ଜାତୀୟ କେତେକ ମନ୍ଦିରର ରାହାପାଗର ମଧ୍ୟଭାଗରେ ଗୋଟିଏ 'ଭୋ' ରେ 'ଅଧାକପାଳୀ ମୂର୍ତ୍ତି' ଦେଖାଯାଏ । ଏହା ମନ୍ଦିରର ଠିକ୍ ମଧ୍ୟଭାଗରେ ଖୋଦିତ ହୋଇଥାଏ ବୋଲି ଶିଳ୍ପୀମାନଙ୍କର ମତ । ଲିଙ୍ଗରାଜ ମନ୍ଦିରର 'ଅଧାକପାଳୀ' ମୂର୍ତ୍ତିଗୁଡ଼ିକ ବିଶେଷ ଦ୍ରଷ୍ଟବ୍ୟ ।

କେତେକ ମନ୍ଦିରର ଜଗମୋହନର ଦୁଇପାଖରେ ଦୁଇଟି ମେଢ଼ଭଳି ପଥରର କାମ ହୋଇଥାଏ । ସେଥିରେ ସାଧାରଣତଃ ଭୋ ଦେହରେ କାରୁକାର୍ଯ୍ୟ ହୋଇଥିବାର ଦେଖାଯାଏ । ମନ୍ଦିରର କେତେକ କାମ ପରିଷ୍କାର 'ଭୋ' ନ ହେଲେ ମଧ୍ୟ 'ଭୋ' ପରି ଦେଖାଯାଏ । ଶିଳ୍ପୀମାନେ 'ଭୋ'ର ଉପଯୁକ୍ତ ବ୍ୟବହାର କରି ମନ୍ଦିରକୁ ବିଶେଷ ଶୋଭନୀୟ କରୁଥିଲେ ।

ଭୁବନେଶ୍ୱରର ମନ୍ଦିରମାନଙ୍କରେ ସିଂହମୂର୍ତ୍ତି ସଦୃଶ ଅଶ୍ୱଉପରେ ଆରୂଢ଼ ପୁରୁଷମାନଙ୍କ ଆଣ୍ଠୁପର୍ଯ୍ୟନ୍ତ ଯୋତାଥିବାର ଦେଖାଯାଏ । ସାଞ୍ଚୀସ୍ତୂପର

ପଶ୍ଚିମ ତୋରଣରେ ଦକ୍ଷିଣଦିଗସ୍ଥ ସ୍ତମ୍ଭର ବହିର୍ଭାଗରେ ଏ ସକଳ କାରୁକାର୍ଯ୍ୟ ଓ ଖୋଦିତ ଚିତ୍ର ଅଛି । ସେଥିରେ ସିଂହାକୃତି ଲିଓଗ୍ରାଫ ଆରୂଢ଼ ମନୁଷ୍ୟମୂର୍ତ୍ତି ମଧ୍ୟ ଦେଖାଯାଏ । Sir John Markhamଙ୍କ ମତରେ ଏଇ ସକଳ ଲିଓଗ୍ରାଫ ଓ ପକ୍ଷବିଶିଷ୍ଟ ଜନ୍ତୁମୂର୍ତ୍ତିସକଳ ପଶ୍ଚିମ ଏସିଆରୁ ଆମଦାନି । ଖଣ୍ଡଗିରି ଗୁହାରେ ପକ୍ଷଯୁକ୍ତ ହରିଣମୂର୍ତ୍ତି ଦେଖାଯାଏ । ଏ ସକଳ ବ୍ୟାବିଲୋନ ଓ ନିନେଭ ପ୍ରଭୃତି ସ୍ଥାନରୁ କିପରି ଏଠାକୁ ଆସିଥିଲା ତାହା କହିବା ସହଜ ନୁହେଁ ।

**ପ୍ରାଣୀ ଓ ଉଦ୍ଭିଦ ଚିତ୍ର**

ଭୁବନେଶ୍ୱରର ବିଭିନ୍ନ ମନ୍ଦିରରେ ବରାହ, ମୃଗୀ, ମୟୂର, ଗଧ, ମୂଷିକ, ଶୁକ, ରାଜହଂସ, ଅନ୍ୟାନ୍ୟ ପଶୁପକ୍ଷୀ ଓ ସରୀସୃପର ଚିତ୍ର ଦେଖାଯାଏ । ଲତାପୁଷ୍ପ ଓ ନାନାବିଧ ପଦ୍ମପୁଷ୍ପ, ବୋରଝାଙ୍ଗି ପ୍ରଭୃତିର ଖୋଦିତ ଚିତ୍ର ମଧ୍ୟ ଏଥିରେ ଦେଖିବାକୁ ମିଳେ । ଡକ୍ଟର ମିତ୍ରଙ୍କ ମତରେ "ଓଡ଼ିଆ ଶିଳ୍ପୀଗଣ ଉଦ୍ଭିଦାଦି ଚିତ୍ରଣ ପରିପାଟ୍ୟରେ ମିଶରୀୟ ଓ ଆସିରୀୟ ଶିଳ୍ପୀମାନଙ୍କ ଅପେକ୍ଷା ଅନେକାଂଶରେ ଭଲ ଓ କୌଣସି ଅଂଶରେ ନ୍ୟୂନ ନ ଥିଲେ । ଉତ୍କଳୀୟ ଶିଳ୍ପୀଗଣ ଉଦ୍ଭିଦାଦିର ଖୋଦିତ ପ୍ରତିରୂପଗୁଡ଼ିକ ଶିଳ୍ପସୌନ୍ଦର୍ଯ୍ୟର ସହାୟକ ବୋଲି ମନେ ନ କରି ମୁଖ୍ୟ ଅଙ୍ଗବୋଲି ବିବେଚନା କରୁଥିଲେ ଏବଂ ଅନ୍ୟ ପ୍ରାଚୀନ ଜାତି ଅପେକ୍ଷା ଏମାନେ ଏହି ଶ୍ରେଣୀୟ ଅଳଙ୍କାର ସ୍ଥାପତ୍ୟଶିଳ୍ପ ଅନେକ ଅଧିକ ପରିମାଣରେ ବ୍ୟବହାର କରୁଥିଲେ ।"(ମନ୍ଦିର କଥା, ପୃ-୭୧)

**କଦଶ୍ୱ (କଦାକାର ଅଶ୍ୱ ବା HIppogryph)**

ଏମାନଙ୍କର ଦେହ ଅଶ୍ୱପରି କିନ୍ତୁ ମୁଖରେ ଅନେକ ପାର୍ଥକ୍ୟ ଦେଖାଯାଏ । ମୁଖଟି ଅଶ୍ୱମୁଖଠାରୁ ବଡ଼ । ଗୁପ୍ତଶିଳ୍ପରେ କଦାକାର ଅଶ୍ୱମୂର୍ତ୍ତି ଦେଖାଯାଏ । ଖ୍ରୀଷ୍ଟପୂର୍ବ ୪ର୍ଥ-୫ମ ଶତାବ୍ଦୀର ପାରସିକ ଶିଳ୍ପରେ ମଧ୍ୟ କଦାକାର ଅଶ୍ୱମୂର୍ତ୍ତି ଦେଖାଯାଏ । ଭୁବନେଶ୍ୱର ଲିଙ୍ଗରାଜ ମନ୍ଦିରର ପାଗର ମଧ୍ୟଭାଗରେ ଦଣ୍ଡାୟମାନ କଦାକାର ଅଶ୍ୱମୂର୍ତ୍ତି ଖୋଦିତ ହୋଇଥିବାର ଦେଖାଯାଏ । ସ୍ଥାନେ ସ୍ଥାନେ କଦାକାର ଅଶ୍ୱଉପରେ ଅଶ୍ୱାରୋହୀମୂର୍ତ୍ତି ମଧ୍ୟ ଦେଖାଯାଏ । Elephanta ଗୁହାରେ ଏରସ୍କିନ୍ ଏହିପ୍ରକାର ସ୍ଥାପତ୍ୟ ଅଳଙ୍କାର

ଲକ୍ଷ୍ୟ କରିଥିଲେ ।

**ଦ୍ୱାରକାମ ଓ ଲତାକାମ:**

ମନ୍ଦିରର ପ୍ରବେଶଦ୍ୱାରରେ ଶୋଭାବୃଦ୍ଧି କରିବା ନିମିତ୍ତ ଦ୍ୱାରର ତିନି ପାଖରେ (ତଳପାଖକୁ ଛାଡ଼ି) ନାନାପ୍ରକାର କାମ ହୋଇଥାଏ । ଗୁପ୍ତଯୁଗର ପ୍ରାଚୀନତମ କେତେକ ମନ୍ଦିରର ପ୍ରବେଶଦ୍ୱାରରେ ଏପରି ନାନାବିଧ କାମ ଦେଖାଯାଏ । ସାଧାରଣତଃ ଡାଳି, ବୋରଝାଞ୍ଜି, ନଟିଲତା, ବନଲତା, ଗୋଲବାଇ ପ୍ରଭୃତି କାମ ମନ୍ଦିରର ଦ୍ୱାର ଚାରିପାଖରେ ଦେଖାଯାଏ । ପର୍ଶୁରାମେଶ୍ୱରଜାତୀୟ ମନ୍ଦିର ଦ୍ୱାରମାନଙ୍କରେ ପ୍ରାୟ ସରଳ, ଅଥଚ ପରବର୍ତ୍ତୀକାଳର ଲିଙ୍ଗରାଜଜାତୀୟ ମନ୍ଦିରମାନଙ୍କ ଦ୍ୱାରରେ କାର୍ଯ୍ୟବଦ୍ଧ କାମ (ତିନିକାମ, ପାଞ୍ଚକାମ) ଦେଖାଯାଏ । ଏଥିରେ ମଧ୍ୟ ଶିଳ୍ପୀ କେତେକ ବିଧିବଦ୍ଧ ନିୟମ ପାଳନ କରୁଥିଲା । କିନ୍ତୁ କେତେକ ମନ୍ଦିରର ଦ୍ୱାରର କାମ ଅତୀବ ରମଣୀୟ । ଲିଙ୍ଗରାଜ ଜଗମୋହନରେ କଳାହାଟଦ୍ୱାର କୋଣାର୍କର ଜଗମୋହନ ତୁଲ୍ୟ । ସମଗ୍ରଭାରତ ବର୍ଷରେ ଏଭଳି ଶିଳ୍ପ କ୍ୱଚିତ୍ ଦେଖାଯାଏ । ଏଥିପାଇଁ ଶିଳ୍ପୀମାନେ ଅକ୍ଳାନ୍ତ ପରିଶ୍ରମ କରୁଥିଲେ । ଏଗୁଡ଼ିକ ମଧ୍ୟରୁ ଅଧିକାଂଶ ଲତା କାମ । ଭାରତରେ ହରପ୍ପା ଓ ମହେଞ୍ଜୋଦାରୋଯୁଗରୁ ଲତା ଜ୍ଞାନ ଚିତ୍ରକଳା ଗୋଟିଏ ବିଶେଷାଙ୍ଗରୂପେ ଗୃହୀତ ହୋଇଥିଲା । ଖ୍ରୀ.ପୂର୍ବ ୫ମ ଶତାବ୍ଦୀର ପିପାଓ୍ୱାରରୁ ପ୍ରାପ୍ତ ପ୍ରସ୍ତରରେ ଖୋଦିତ ଲତା କାର୍ଯ୍ୟ ଅତୀବ ଆଶ୍ଚର୍ଯ୍ୟଜନକ ।

ଏହି ଜାଲି ଓ ଲତା କାମରେ ଓଡ଼ିଆ ସ୍ଥପତି ଦେଶୀୟ ସ୍ଥାପତ୍ୟ ପ୍ରଣାଳୀର ବୈଶିଷ୍ଟ୍ୟ ପାଇଁ ନିଜ ପ୍ରତିଭାର ସମ୍ୟକ ବିକାଶଲାଭରେ ସମର୍ଥ ହୋଇଅଛି । ଭାସ୍କର୍ଯ୍ୟରେ ମଧ୍ୟ ତାହା ଅପେକ୍ଷା କମ ପାରଦର୍ଶିତା ପ୍ରଦର୍ଶନ କରିନାହିଁ ।

'ସ୍ଥାପତ୍ୟ ଅଳଙ୍କାର'ରୂପେ ବ୍ୟବହୃତ ସେ ଅପୂର୍ବ କାରୁକାର୍ଯ୍ୟ ଓ କାର୍ଯ୍ୟକୌଶଳକୁ ସ୍ତମ୍ଭଗାତ୍ରରେ ମାଲ୍ୟାକୃତି ଜାଲି ଏବଂ ଫୁଲଲତା, ବନଲତା, ନଟୀଲତା ପ୍ରଭୃତି ଲତାର ଆବର୍ତ୍ତନରେ ପ୍ରକାଶ କରି ସେଥିରେ ଅଭିଜ୍ଞ ସମାଲୋଚକମାନଙ୍କର ମତରେ ଚାରୁଶିଳ୍ପର ଏ ଶାଖାରେ ଗ୍ରୀକ୍ ଶିଳ୍ପୀ ଅପେକ୍ଷା ଓଡ଼ିଆ ଶିଳ୍ପୀ କାରୁକରର କୃତିତ୍ୱ ସମଧିକଭାବେ ପ୍ରକଟ

ହୋଇଅଛି ।

ଅପୂର୍ବ ସୌନ୍ଦର୍ଯ୍ୟବୋଧ ଓ ଆଭା ସମ୍ପାଦନ କୁଶଳତା ଉତ୍କଳୀୟ ଶିଳ୍ପରେ ପ୍ରଥମରୁ ଶେଷ ପର୍ଯ୍ୟନ୍ତ ବିଦ୍ୟମାନ । ଜଳା କବାଟିର ଚାରିପାଖରେ ଥିବା ଲତା ଆବର୍ତ୍ତନ ମଧ୍ୟରେ ଜାନ୍ତବ ଚିତ୍ରାଦି ଲିଙ୍ଗରାଜମନ୍ଦିର ଶିଖରରେ ବିଦ୍ୟମାନ । ରାଜାରାଣୀମନ୍ଦିରର ସମସ୍ତ ଦେହରେ ଲତା ଆବର୍ତ୍ତନ, ପଦ୍ମପୀଠ ଦେହରେ ଲତା ଆବର୍ତ୍ତନ, ବଡ଼ଦେଉଳର ଖୋଦିତ ପାଦପୀଠର ଲତା ଆବର୍ତ୍ତନ ଅତୀବ ଆଶ୍ଚର୍ଯ୍ୟଜନକ । ବୌଦ୍ଧଗ୍ରନ୍ଥମାନଙ୍କରୁ ଜଣାଯାଏ ଯେ ନିଜେ ବୁଦ୍ଧଦେବ ବିହାର ସ୍ତୂପ ପ୍ରଭୃତିରେ ନାନାବିଧ ଲତାର କାର୍ଯ୍ୟ କରିବାକୁ ଆଦେଶ ଦେଇଥିଲେ । ସାଞ୍ଚୀ, ବରହୁତ, ସାରନାଥ ପ୍ରଭୃତି ବୌଦ୍ଧକୀର୍ତ୍ତିରେ ଓ ଖଣ୍ଡଗିରି, ଉଦୟଗିରିର ଗୁମ୍ଫାମାନଙ୍କରେ ଅତି ସୁନ୍ଦରଲତା କାର୍ଯ୍ୟ ଦେଖାଯାଏ । ଅଶୋକଙ୍କ ସମୟରୁ ଉତ୍କଳରେ ଶିଳ୍ପର ଚର୍ଚ୍ଚା ବିଶେଷ ଭାବରେ ପ୍ରଚଳିତ ଥିଲା । ତେଣୁ ଉତ୍କଳୀୟ ଶିଳ୍ପକଳାର ଚରମୋନ୍ନତି ସମୟ ମଧ୍ୟଯୁଗରେ ଉତ୍କଳୀୟ ଶିଳ୍ପୀମାନେ ମନ୍ଦିରମାନଙ୍କରେ ବହୁବିଧ ଲତାର ଚିତ୍ର ଦେଇଛନ୍ତି । ସେଗୁଡ଼ିକ ବିଷୟରେ ବର୍ଣ୍ଣନା କରିବା ଅସମ୍ଭବ । ଆଜି ବିଂଶଶତାବ୍ଦୀର ସଭ୍ୟଯୁଗରେ ପୃଥିବୀବିଖ୍ୟାତ ପ୍ରଧାନ ପ୍ରଧାନ ଚିତ୍ରକରମାନେ କାଗଜଦେହରେ ଏପରି ଲତାର କାର୍ଯ୍ୟ କରିପାରିବେ କି ନାହିଁ ସନ୍ଦେହ । ମୁକ୍ତେଶ୍ୱର ମନ୍ଦିରର ଗୋଟିଏ ଗୋଟିଏ ଲତାରେ ହଂସ, ମୟୂର, ମର୍କଟ ପ୍ରଭୃତିର ପ୍ରତିମୂର୍ତ୍ତି ଏପରିଭାବରେ ଖୋଳାଯାଇଛି ଯେ, ବହୁସମୟ ନିରୀକ୍ଷଣ କଲାପରେ ସେଗୁଡ଼ିକ ବାହାର କରିବା ମଧ୍ୟ ସହଜ ନୁହେଁ । ଭୁବନେଶ୍ୱରର କେତେକ ମନ୍ଦିରର ଲତା କାମ ଦେଖି ପାଶ୍ଚାତ୍ୟ ମନୀଷୀମାନେ ମଧ୍ୟ ବିସ୍ମିତ ହୁଅନ୍ତି । ବାସ୍ତବିକ ମୁଁ ସହସ୍ର ସହସ୍ରବାର ଗୋଟିଏ ଗୋଟିଏ ମନ୍ଦିର ଦେଖିଛି । କିନ୍ତୁ ଲତାମାନଙ୍କରେ ବି ଉତ୍କଳୀୟଶିଳ୍ପୀ ଯେ ଅଭୁତପୂର୍ବ ଓ ଅଶ୍ରୁତପୂର୍ବ ବହୁଯୁଗବ୍ୟାପୀ ସାଧନାର ଫଳ ଦେଖାଇଛି ତାହା ଭାବିଲେ ଆଶ୍ଚର୍ଯ୍ୟ ନ ହୋଇ ରହିହେବନାହିଁ । ଲତାକାବ୍ୟ ସବୁଠାରୁ କଠିନ ଓ ବହୁ ସମୟସାପେକ୍ଷ । ଲେଖକ ନିଜେ ଦେଖିଛି, ଗୋଟିଏ ଗୋଟିଏ ଲତାକାମ କରିବାପାଇଁ ସିଦ୍ଧହସ୍ତ ବୈରାଗୀ ମହାରଣା ପ୍ରଭୃତିଙ୍କୁ ମଧ୍ୟ ୯-୧୦ ଦିନ ଲାଗିଯାଏ । ଏ କାର୍ଯ୍ୟ କରିବାକୁ ହେଲେ ଶିଳ୍ପୀ ପକ୍ଷେ

ଧୈର୍ଯ୍ୟ ହିଁ ଏକମାତ୍ର ଅବଲମ୍ବନ । ସାଧାରଣତଃ ଏହି କେତେକ ଲତାର କାମ ମିଳେ । ଯଥା- ପତ୍ରଲତା, ନଟିଲତା, ବନଲତା, ଫୁଲଲତା । ପତ୍ରଲତା - ୩ ପ୍ରକାର, ଫୁଲଲତା ୪ ପ୍ରକାର, ନଟିଲତା - ଗୋଟିଏ ପ୍ରକାର, ବନଲତା-ଗୋଟିଏ ପ୍ରକାର । ବାସୁଦେବଙ୍କର ମୋହନର ଦକ୍ଷିଣରେ 'ହନୁମନ୍ତଲତା' ନାମକ ଗୋଟିଏ ଲତାକାମ ଅତିସୁନ୍ଦର ଓ ସ୍ୱାଭାବିକ ଭାବରେ ଖୋଦିତ ହୋଇଛି । ଏହା ବ୍ୟତୀତ ମନ୍ଦିର ଦ୍ୱାରମାନଙ୍କରେ ବୋରଝାଞ୍ଜି ଗୋଟିଏ ଭଲକାମ । ସ୍ଥାନେ ସ୍ଥାନେ ଗୋଟିଏ କାର୍ଯ୍ୟକୁ 'ମଲ୍ଲୀଫୁଲପଦିକ' ବୋଲି କହନ୍ତି । ଏହା ବ୍ୟତୀତ ଆହୁରି ଅନେକ ପ୍ରକାର ଲତାର ନାମପର୍ଯ୍ୟନ୍ତ ମିଳେନାହିଁ । ଲତା କାମରେ ଶିଳ୍ପୀର ବିଶେଷତ୍ୱ ଦେଖାଯାଏ । ଏଠାରେ ସେ କୌଣସି ବିଧିବଦ୍ଧ ନିୟମ ପାଳନ କରି କାର୍ଯ୍ୟ କରିବାକୁ ବାଧ ନୁହେଁ । ତେଣୁ ମୁକ୍ତେଶ୍ୱର ବାସୁଦେବ ପ୍ରଭୃତି ମନ୍ଦିରର ଲତାକାମ ସମଗ୍ର ଭାରତରେ ଦୁର୍ଲଭ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । ଲେଖକ ଲତାମାନଙ୍କର ସୌନ୍ଦର୍ଯ୍ୟ ବର୍ଣ୍ଣନା କରିବାକୁ ଅକ୍ଷମ । ପାଠକ ନିଜେ ଦେଖିଲେ ସୌନ୍ଦର୍ଯ୍ୟ ଉପଭୋଗ କରି ପାରିବେ ।

**ଦେଉଳଚାରିଣୀ** - ଘଡ଼ି ଚକଡ଼ା ଓ ଅଁଏଳା ପଥର ମଧ୍ୟରେ ସାଧାରଣତଃ ଦେଉଳଚାରିଣୀ ମୂର୍ତ୍ତି ଦେଖାଯଏ । ଏହା ପରବର୍ତ୍ତୀ କାଳରେ ମନ୍ଦିରମାନଙ୍କରେ ଗୋଟିଏ ବିଶେଷ 'କାମ' ରୂପେ ପରିଗଣିତ ହୋଇଥିଲା । ତେଣୁ ଅତିନଗଣ୍ୟ କ୍ଷୁଦ୍ରମନ୍ଦିରରେ ମଧ 'ଦେଉଳଚାରିଣୀ' ମୂର୍ତ୍ତି ଦେଖାଯାଏ । ଏଗୁଡ଼ିକ ବେକର ଶୋଭାବର୍ଦ୍ଧନ କରନ୍ତି । ଦେଉଳଚାରିଣୀ ନିକଟରେ ଦ୍ୱି-ପିଣ୍ଡାଣୀ ଗଜସିଂହମୂର୍ତ୍ତି ଦେଖାଯାଏ । ଏପରି ସିଂହର ଗୋଟିଏ ମୁଖ, ଦୁଇଟି ପିଠା ବା ଦୁଇଟି ଦେହ, ଦି' ପିଠା ସିଂହ ମୁହଁ ସାଧାରଣତଃ ସିଂହଠାରୁ ବଡ଼ ହୋଇଥାଏ ।

**ମଗର ବା ମକର** - ବୌଦ୍ଧଶିଳ୍ପରେ ମଗରମୂର୍ତ୍ତି ଗୋଟିଏ ପ୍ରଧାନ କାମ ଥିଲା । ମୁକ୍ତେଶ୍ୱର ମନ୍ଦିର ପୂର୍ବରେ ଖିଲାଣ ଦୁଇପାଖରେ ପ୍ରସ୍ଫୁଟିତ ପଦ୍ମର ଦୁଇଦିଗକୁ ଦୁଇଟି ବିଶାଳ ମକର ମୁଣ୍ଡ ବାହାରିଅଛି । ପୂର୍ବେ - ଖିଲାଣମାନଙ୍କ ଆରମ୍ଭରେ ଓ ଖମ୍ଭର ଉପରିଭାଗରେ ମନ୍ଦିରମାନଙ୍କ ନଳାମାନଙ୍କ ମୁହଁରେ

ଓ ଦେଉଳର ସ୍ଥାନେ ସ୍ଥାନେ ମଗର ମୁଣ୍ଡଖୋଦିତ ହେଉଥିଲା । ପ୍ରାଚୀନ ବୌଦ୍ଧମୂର୍ତ୍ତିମାନଙ୍କରେ ମଗର ମୂର୍ତ୍ତି ଦେଖାଯାଏ । ହିନ୍ଦୁଧର୍ମରେ ମଗର ଅନନ୍ତ ସାଗରାଧିପତି ବରୁଣଙ୍କର ବାହନ ବୋଲି କଳ୍ପିତ ହୋଇଅଛି । ବୌଦ୍ଧଖିଲାଣ ମାନଙ୍କ ଆଦ୍ୟରେ ମଗରମୁଣ୍ଡ ଓ ଖିଲାଣର ମୁଣ୍ଡରେ ଅସୁରମୁଣ୍ଡର ଚିତ୍ର ଦିଆ ହେଉଥିଲା (Lion's or dragon's mark gaping mouth as if swallowing the whole arch was carved at the crown) । ଖିଲାଣ ଦେଖିଲେ ମନେହୁଏ, ଅସୁର ଯେପରି ମୁଖ ବ୍ୟାଦାନ କରି ସମଗ୍ର ଖିଲାଣକୁ ଖାଇଦେବାକୁ ଉଦ୍ୟତ ।

ମୁକ୍ତେଶ୍ୱରର ଦ୍ୱାରରେ ଥିବା ଖିଲାଣ ଓ ଲିଙ୍ଗରାଜଙ୍କ ଭୋଗମଣ୍ଡପ ପୂର୍ବଦ୍ୱାର ଖିଲାଣଗୁଡ଼ିକ ବୌଦ୍ଧ ଖିଲାଣର ଅବିକଳ ପ୍ରତିମୂର୍ତ୍ତି ।

**ସିଂହ ଓ ଗଜସିଂହ -**

**ସିଂହ** - ଉତ୍କଳୀୟ ମନ୍ଦିରମାନଙ୍କରେ ସିଂହ ଓ ଗଜସିଂହ ମୂର୍ତ୍ତି ବହୁଳଭାବରେ ଦେଖାଯାଏ । ଗଜସିଂହର ପ୍ରତିମୂର୍ତ୍ତି ନିର୍ମାଣ ଉତ୍କଳୀୟ ଶିଳ୍ପର ଗୋଟିଏ ପ୍ରଧାନ ବିଶେଷତ୍ୱ । ସିଂହମୂର୍ତ୍ତି ନାନାପ୍ରକାରର ।

(୧) ଉଡ଼ାସିଂହ - ଏହା ଦୁତି କେଦାରେଶ୍ୱର ମନ୍ଦିରରେ ଦେଖାଯାଏ ।

(୨) ଝପାସିଂହ (Rampant Lion)-ଏହା କେଦାରେଶ୍ୱର ମନ୍ଦିରରେ ଅଛି ।

(୩) ଖୋପାସିଂହ (Mad-Lion)-ମୁକ୍ତେଶ୍ୱର ମନ୍ଦିରରେ ଏହି ମୂର୍ତ୍ତି ଦେଖାଯାଏ ।

(୪) ଦିପିଚାସିଂହ -ଲିଙ୍ଗରାଜଙ୍କ ମନ୍ଦିର ଅଁଏଳା ପଥର ତଳେ ଏହା ଦେଖାଯାଏ ।

**ଗଜସିଂହ-** ଉତ୍କଳୀୟ ଶିଳ୍ପଶାସ୍ତ୍ର ମତରେ ଗଜସିଂହ ମୂର୍ତ୍ତି ତିନି ପ୍ରକାର ।

(୧) ଓଲଟା ଗଜବିଡାଳସିଂହ - କୋଣକ ଓ ଅନର୍ଥ ପାଗର ମଧ୍ୟବର୍ତ୍ତୀ ସ୍ଥାନରେ ଦେଖାଯାଏ ।

(୨) ଓଲଟା ଗଜସିଂହ - ଏହା ଅନର୍ଥ ଓ ରାହା ପାଗର ମଧ୍ୟବର୍ତ୍ତୀ ସ୍ଥାନରେ ଦେଖାଯାଏ ।

(ଗ) ଛିଡ଼ା-ଉଡ଼ା ଗଜସିଂହ – ଏହା ବିମାନରେ ବା ମୋହନରେ ଦେଖାଯାଏ ନାହିଁ । ଏ ଦୁହିଁଙ୍କର ମଧ୍ୟବର୍ତ୍ତୀ ସ୍ଥାନରେ ଦେଖାଯାଏ ।

'ଗଜସିଂହମୂର୍ତ୍ତି' ସମ୍ବନ୍ଧରେ ଅନେକ ଐତିହାସିକ ଭ୍ରମପୂର୍ଣ୍ଣ ମତ ପ୍ରଦାନ କରିଥାନ୍ତି । କେତେକ ଐତିହାସିକ ସିଂହମୂର୍ତ୍ତି ଉତ୍କଳୀୟ କେଶରୀ ବଂଶର ସ୍ମାରକ ରୂପେ ମନ୍ଦିରଦେହରେ ଖୋଦିତ ହୋଇଥିବା କହନ୍ତି । କେଶରୀ ଅର୍ଥ ସିଂହ । ଗଜ ବୌଦ୍ଧମାନଙ୍କ ମଧ୍ୟରେ ପୂଜିତ ହେଉଥିଲା । ତେଣୁ ଗଜ ଉପରେ ସିଂହମୂର୍ତ୍ତିକୁ ବା ଗଜସିଂହମୂର୍ତ୍ତିକୁ ବୌଦ୍ଧଧର୍ମର ପ୍ରାଧାନ୍ୟ ଲୋପ ହେବାପରେ ହିନ୍ଦୁଧର୍ମର ପୁନଃ ପ୍ରତିଷ୍ଠାର ସ୍ମାରକ ବୋଲି ସେମାନେ ମତ ଦେଇଥାନ୍ତି । କିନ୍ତୁ ଏହା ଆଦୌ ସତ୍ୟ ନୁହେଁ । 'ଗଜସିଂହ ମୂର୍ତ୍ତି' ଭାରତୀୟ ଶିଳ୍ପର ଗୋଟିଏ ବିଶିଷ୍ଟ କାମ(Motiff) । ଏହା ବହୁକାଳରୁ ଭାରତୀୟ ବିହାର, ସ୍ତୂପ, ଦେବାଳୟ ଓ ପ୍ରାସାଦ ଦେହରେ ପ୍ରକଟିତ ହୋଇ ଆସୁଛି । କେତେକ ଏହାକୁ ପାରସୀୟ ଶିଳ୍ପର ଅନୁକରଣ ବୋଲି କହନ୍ତି । କିନ୍ତୁ ପାରସ୍ୟ ଶିଳ୍ପରେ ଗଜସିଂହ ମୂର୍ତ୍ତି ଦେଖାଯାଏ ନାହିଁ । ଉତ୍କଳୀୟ ଶିଳ୍ପରେ ଗଜସିଂହର ଚିତ୍ରପରି ପାରସ୍ୟ ଶିଳ୍ପରେ ସିଂହ, ବୃଷଭ, ଯୁଦ୍ଧଚିତ୍ର ବିଶେଷଭାବରେ କଳ୍ପିତ ହେଉଥିଲା । ପାରସ୍ୟର ବିଚିତ୍ରନଗରୀ ପର୍ସିପୋଲିସ ଓ ଅମରାବତୀ ବିନିନ୍ଦ କ୍ଷରସ ନଗରୀରେ ସିଂହ ବୃଷଭ ଯୁଦ୍ଧଚିତ୍ର ସର୍ବତ୍ର ପ୍ରଦତ୍ତ ହୋଇଛି । ପାରସ୍ୟରେ ଗଜ ନ ଥିଲେ; ତେଣୁ ପାରସ୍ୟ ଶିଳ୍ପରେ ଗଜମୂର୍ତ୍ତିର ଅଭାବ ପରିଲକ୍ଷିତ ହୁଏ । ଅଶୋକଙ୍କ ସମୟରେ ପାରସିକ ସଭ୍ୟତା ଭାରତୀୟ ସଭ୍ୟତାକୁ ବିଶେଷତଃ ଶିଳ୍ପକଳାକୁ ବିଶେଷ ଭାବରେ ପ୍ରଭାବିତ କରିଥିଲା, କିନ୍ତୁ ପାରସ୍ୟରେ 'ଗଜସିଂହ ମୂର୍ତ୍ତି' ବିରଳ । ତେଣୁ ଭାରତୀୟ ଶିଳ୍ପୀମାନେ ପାରସିକ ଶିଳ୍ପୀମାନଙ୍କଠାରୁ ଏହି କାମ ଅନୁକରଣ କରି ନ ଥିଲେ । ଏ ଦୃଷ୍ଟିରୁ ଭାରତୀୟ ଶିଳ୍ପୀ ପାରସିକ ଶିଳ୍ପୀର ଅନୁକରଣରେ ଏହି ମୂର୍ତ୍ତି ନିର୍ମାଣ କରିଥିବା ଆଦୌ ସମୀଚୀନ ନୁହେଁ । ଏହା ଭାରତୀୟ ଶିଳ୍ପର ଗୋଟିଏ ବିଶିଷ୍ଟ ଅଙ୍ଗରୂପେ ପରିଗଣିତ ହେଉଥିଲା । ଚିରପ୍ରଚଳିତ କବିଗଣସମାଦୃତ ଘୋର ଅରଣ୍ୟାନୀ ସଂଘଟିତ ବିଶାଳକାୟ ମୁକ୍ତାଧାରୀ ଗଜ ସହିତ ପଶୁରାଜ ସିଂହର ଭୟାବହ ଯୁଦ୍ଧର ଚିତ୍ରର କଳ୍ପନା ଭାରତୀୟ ଶିଳ୍ପୀର ଉର୍ବର ମସ୍ତିଷ୍କ ନିଃସୃତ । ଏହା ସେ ନିର୍ମମ ପାଷାଣ ବକ୍ଷରେ ଅତିସୁନ୍ଦର ରୂପେ ବୁଝାଇ ପାରିଥିଲା । ଭାରତର ପ୍ରାଚୀନ କାବ୍ୟମାନଙ୍କରେ ଗଜସିଂହ ମଧ୍ୟରେ ଯୁଦ୍ଧର ନାନାବିଧ ବର୍ଣ୍ଣନା ପ୍ରଦତ୍ତ ହୋଇଅଛି ।

ସିଂହଶିଶୁର୍ବିନିପତତି ମଦମଳିନକପୋଳଭିତ୍ତିଷୁ-ଗଜେଷୁ'
ପ୍ରକୃତିରିୟଂ ସତ୍ତ୍ବବତାଂ ନ ଖଲୁ ବୟଃ ତେଜସାଂ ହେତୁଃ ॥ (ଭର୍ତ୍ତୃହରିଃ)
ପଦଂ ତୁଷାରସ୍ରୁତିଧୌତରକ୍ତଂ ଯସ୍ମିନ୍ନ ଦୃଷ୍ଟ୍ୱାପି ହତଦ୍ୱିପାନାଂ
ବିଦନ୍ତି ମାର୍ଗଂ ନଖରନ୍ଧ୍ରମୁକ୍ତୈର୍ମୁକ୍ତାଫଳୈଃ କେଶରିଣାଂ କିରାତାଃ ॥
(କୁମାର ସମ୍ଭବ - ପ୍ରଥମ ସର୍ଗ)

କାଳିଦାସଙ୍କ ବର୍ଣ୍ଣନାରୁ ଜଣାଯାଏ ଯେ ହିମାଚଳ ଅରଣ୍ୟାନୀବିହାରୀ ସିଂହମାନେ ହସ୍ତୀମାନଙ୍କୁ ଭୀଷଣ ଭାବରେ ଆକ୍ରମଣ କରି ସେମାନଙ୍କ ମୁଣ୍ଡରେ ଥିବା ମୁକ୍ତାଫଳଗୁଡ଼ିକ ରକ୍ତାକ୍ତକରି ତୁଷାରାଚ୍ଛନ୍ନ ହିମାଳୟ ପଥରେ ପକାଇଥାନ୍ତି । ଭୁବନେଶ୍ୱରର କେତେକ ମନ୍ଦିରରେ ଗଜସିଂହଙ୍କର ଚିତ୍ରରୁ ସିଂହର ଭୀଷଣ ଆକ୍ରମଣ କଳ୍ପିତ ହୋଇପାରେ । ଗଜସିଂହ ଚିତ୍ର ସମ୍ପୂର୍ଣ୍ଣ ଭାରତୀୟ କଳ୍ପନା ହେଲେ ମଧ୍ୟ କେଉଁ ସମୟରେ ଏହା ଭାରତୀୟ ଶିଳ୍ପରେ ପ୍ରବେଶଲାଭ କରିଥିଲା ତାହା କହିହେବ ନାହିଁ । ଖ୍ରୀଷ୍ଟୀୟ ପ୍ରଥମ ବା ଦ୍ୱିତୀୟ ଶତାବ୍ଦୀରେ ନିର୍ମିତ ଅଜନ୍ତାର ଚୈତ୍ୟ ଗୁମ୍ଫାରେ ଗଜସିଂହମୂର୍ତ୍ତିର ନିଦର୍ଶନ ଦେଖାଯାଏ । ଏଲୋରାର ଜୈନ ଇନ୍ଦ୍ରସଭା ଗୁମ୍ଫାର ଦ୍ୱାରରେ ଗଜସିଂହମୂର୍ତ୍ତି ଅଙ୍କିତ ହୋଇଛି ।

ଡାକ୍ତର ସ୍ପୁନ୍‌ସରଙ୍କ ଦ୍ୱାରା ନାଳନ୍ଦାରୁ ଆବିଷ୍କୃତ ପିତଳ ନିର୍ମିତ ସ୍ତମ୍ଭରେ ଗଜସିଂହର ମୂର୍ତ୍ତି ଖୋଦିତ ହୋଇଅଛି । ଅଜନ୍ତାର ୨୬ନମ୍ବର ଗୁମ୍ଫାରେ ଥିବା ସ୍ତୂପ ଦେହରେ ଗୋଟିଏ ସିଂହାସନାସୀନ ବୁଦ୍ଧମୂର୍ତ୍ତି ଦେଖାଯାଏ । ନିମ୍ନକୁ ଲମ୍ବମାନ ବୁଦ୍ଧଙ୍କର ଚରଣଦ୍ୱୟର ଦୁଇପାର୍ଶ୍ୱରେ ଗଜସିଂହମୂର୍ତ୍ତି ଖୋଦିତ ହୋଇଅଛି । ଗଜଟି ସୁନ୍ଦର କିନ୍ତୁ ସିଂହଟି ବିଡାଳସଦୃଶ, ଗଜଉପରେ ସିଂହଟି ବସିଅଛି । ସିଂହ ଗୋଟିଏ ଆଗଗୋଡ଼ ଟେକିଛି । ଏହାର ଶିଳ୍ପ ଉଚ୍ଚ ଧରଣର ନୁହେଁ ।

ବଙ୍ଗର ପାଳରାଜଙ୍କ ନିର୍ମିତ କୀର୍ତ୍ତିହର ମନ୍ଦିରରେ ମଧ୍ୟ ଏହା ଖୋଦିତ ହୋଇଛି । ହୟଶାଳ ବଂଶର କୌଣସି ରାଜାଙ୍କ ଦ୍ୱାରା ଏକାଦଶ ଶତାବ୍ଦୀରେ ନିର୍ମିତ କଦମ୍ବେଶ୍ୱର ମନ୍ଦିରରେ ଗଜସିଂହମୂର୍ତ୍ତି ନିର୍ମିତ ହୋଇଥିଲା । ସପ୍ତମ ଶତାବ୍ଦୀରେ ନିର୍ମିତ ମୋଗଲୁ ରାଜପୁରରେ ପଲ୍ଲବରାଜ ନିର୍ମିତ ଗୋଟିଏ ମନ୍ଦିରର ବାହାର ପାଖରେ ଗୋଟିଏ ଧାଡ଼ି ଗଜସିଂହ ମୂର୍ତ୍ତି ଖୋଦିତ

ହୋଇଅଛି । ଏଥିରେ ହାତୀଗୁଡ଼ିକ ଶୁଣ୍ଢ ଟେକିଛନ୍ତି, ସିଂହଗୁଡ଼ିକ ଗଜଉପରେ ବସି ଲାଙ୍ଗୁଡ଼ ବାଡ଼ଉଛନ୍ତି । ଏଥିରୁ ଜଣାଯାଏ ଯେ, ସମଗ୍ର ଭାରତବର୍ଷରେ ଗଜସିଂହ ମୂର୍ତ୍ତି ନିର୍ମିତ ହେଉଥିଲା । ତେଣୁ ଏହା କେଶରୀବଂଶୀୟ ରାଜତ୍ୱର ସ୍ମାରକ ବୋଲି କହିବା ସମ୍ପୂର୍ଣ୍ଣ ଅଯୌକ୍ତିକ । କେଶରୀବଂଶର ପରବର୍ତ୍ତୀ ଗଙ୍ଗବଂଶ ଓ ସୂର୍ଯ୍ୟବଂଶର ରାଜାମାନଙ୍କଦ୍ୱାରା ନିର୍ମିତ ଭୁବନେଶ୍ୱରର ବାସୁଦେବ, ରାମେଶ୍ୱର ଓ ମେଘେଶ୍ୱର ଏବଂ କୋଣାର୍କର ସୂର୍ଯ୍ୟମନ୍ଦିରରେ ବିଭିନ୍ନ ପ୍ରକାର ଗଜସିଂହ ମୂର୍ତ୍ତି ଦେଖାଯାଏ । ତେଣୁ ଏହା ନିଃସନ୍ଦେହରେ କୁହାଯାଇପାରେ ଯେ, କେଶରୀବଂଶ ବା ହିନ୍ଦୁଧର୍ମ ଓ ବୌଦ୍ଧଧର୍ମର ଯୁଦ୍ଧସହିତ ଏହାର କୌଣସି ସମ୍ପର୍କ ନାହିଁ । ହିନ୍ଦୁ-ବୌଦ୍ଧ-ଜୈନ ପ୍ରଭୃତି ବିଭିନ୍ନ ଧର୍ମାବଲମ୍ବୀ ମାନଙ୍କ ଧର୍ମ-ମନ୍ଦିରରେ ଗଜସିଂହମୂର୍ତ୍ତି ଦେଖାଯାଏ । ତେଣୁ ଏହା କୌଣସି ଧର୍ମର ନିଜସ୍ୱ ବୋଲି କୁହାଯାଇପାରିବ ନାହିଁ । ଏହା ସମଗ୍ର ଭାରତର ଗୋଟିଏ ଶିଳ୍ପାଙ୍ଗ ।

**ଗଜଶାର୍ଦ୍ଦୂଳମୂର୍ତ୍ତି** : ଗଜସିଂହମୂର୍ତ୍ତି ପରି ଗଜଶାର୍ଦ୍ଦୂଳମୂର୍ତ୍ତି ମଧ୍ୟ ଭାରତୀୟ ଶିଳ୍ପର ଗୋଟିଏ କାମ (Motiff) । ଶାର୍ଦ୍ଦୂଳର ଆକାର ସିଂହସଦୃଶ । କିନ୍ତୁ ଏହାର ମୁଣ୍ଡରେ ଦୁଇଟି ଶୃଙ୍ଗ ଥାଏ । ବୁଦ୍ଧଙ୍କ ସିଂହାସନରେ ଗଜଶାର୍ଦ୍ଦୂଳ ମୂର୍ତ୍ତି ଖୋଦିତ ହୋଇଅଛି । ଖ୍ରୀଷ୍ଟପୂର୍ବ ୩୦୦୦ ବର୍ଷର ସିନ୍ଧୁନଦୀ ଉପତ୍ୟକାସ୍ଥ ହରପ୍ପା ଓ ମହେଞ୍ଜୋଦାରୋର ଶିଳ୍ପରେ ଶାର୍ଦ୍ଦୂଳମୂର୍ତ୍ତି ଦେଖାଯାଏ । ସେହି ଆଦିମଯୁଗରୁ ଆରମ୍ଭ କରି ମୌର୍ଯ୍ୟ, ଆନ୍ଧ୍ର, ସୁଙ୍ଗ, ଗାନ୍ଧାର ଓ ପରବର୍ତ୍ତୀ କାଳର ହିନ୍ଦୁଶିଳ୍ପରେ ମଧ୍ୟ ଶାର୍ଦ୍ଦୂଳ ମୂର୍ତ୍ତି ଦେଖାଯାଏ । ଭୁବନେଶ୍ୱରର କେତେକ ମନ୍ଦିରରେ ଶାର୍ଦ୍ଦୂଳମୂର୍ତ୍ତି ଦେଖାଯାଏ ।

ଗଜସିଂହ ଓ ଗଜଶାର୍ଦ୍ଦୂଳମୂର୍ତ୍ତି ସର୍ବଭାରତୀୟ ହେଲେ ମଧ୍ୟ ଉତ୍କଳୀୟ ଶିଳ୍ପୀମାନେ ଏହାର ନାନାବିଧ ଚିତ୍ର ମନ୍ଦିର ଦେହରେ ନିର୍ମାଣ କରିଥିଲେ । ଉତ୍କଳୀୟଶିଳ୍ପୀ ହସ୍ତରେ ଏହା ପୂର୍ଣ୍ଣାଙ୍ଗ ହୋଇଥିଲା । ଭୁବନେଶ୍ୱର ଲିଙ୍ଗରାଜଙ୍କ ଗଜସିଂହମୂର୍ତ୍ତି ସମଗ୍ର ଭାରତପ୍ରସିଦ୍ଧ । ଖ୍ରୀଷ୍ଟୀୟ ପଞ୍ଚମ ଶତାବ୍ଦୀଠାରୁ ଖ୍ରୀଷ୍ଟୀୟ ତ୍ରୟୋଦଶ ଶତାବ୍ଦୀ ପର୍ଯ୍ୟନ୍ତ ନିର୍ମିତ ମନ୍ଦିରମାନଙ୍କରେ ଗଜସିଂହମୂର୍ତ୍ତି ବହୁଳଭାବରେ ଖୋଦିତ ହୋଇଥିବାର ଦେଖାଯାଏ । ଭାରତର ଅନ୍ୟପ୍ରଦେଶର ଶିଳ୍ପରେ ଗଜସିଂହମୂର୍ତ୍ତି ବ୍ୟବହାର ସୀମାବଦ୍ଧ କିନ୍ତୁ ଉତ୍କଳରେ ଏହାର ବହୁଳ ବ୍ୟବହାର ଦେଖିଲେ ଏହା କେବଳ

ଉତ୍କଳରେ ପ୍ରଚଳିତ ଥିବାର ମନେହୁଏ ।

ଖ୍ରୀଷ୍ଟୀୟ ୫ମ ଶତାବ୍ଦୀ ବେଳକୁ ଗଜସିଂହମୂର୍ତ୍ତି ସମଗ୍ର ଭାରତରେ . G.C. Ganguli କହନ୍ତି । ଏହି ଯୁକ୍ତି କେତେଦୂର ସତ୍ୟ ତାହା ଜଣାଯାଇନାହିଁ । ଭୁବନେଶ୍ୱରର ପ୍ରାଚୀନତମ ଶତ୍ରୁଘ୍ନେଶ୍ୱର ଶିବ ମନ୍ଦିରରେ ଏହି କାମ ଦେଖାଯାଏ ନାହିଁ । ପର୍ଶୁରାମେଶ୍ୱର ମନ୍ଦିର ବିମାନ ଦେହରେ ଏହା ପ୍ରଥମେ ଦେଖାଯାଏ । ପର୍ଶୁରାମେଶ୍ୱର ମନ୍ଦିର ନିର୍ମାଣ ସମୟକୁ ସମଗ୍ର ଭାରତବର୍ଷରେ ଗଜ-ସିଂହ ନିର୍ମାଣପ୍ରଥା ପ୍ରଚଳିତ ହୋଇଥିଲା । ଭୂମିରେ ଶାୟିତ ହସ୍ତୀ ଉପରେ ୯ପା ଶାର୍ଦ୍ଦୂଳର ଚିତ୍ର (Rampant lion) ବାଡ଼ର ରାହାପାଖରେ ଥିବା 'ଭୋ'ର ଉପରି ଭାଗରେ ଖୋଦିତ ହୋଇଛି । ଏହି ଗଜସିଂହମୂର୍ତ୍ତି ପ୍ରାଥମିକ ଅବସ୍ଥାରେ ରଚିତ । ତେଣୁ ଏହାର ବିଶେଷ ସୌନ୍ଦର୍ଯ୍ୟ ବା କଳାକୌଶଳ ନାହିଁ । ଆନୁମାନିକ ପଞ୍ଚମ ଶତାବ୍ଦୀର ଖୋଦିତ ନାଳନ୍ଦା ଚିତ୍ରଘଣ୍ଟି (Capital Bell) ଓ ସୋନାରଗାଁ (ଢାକା)ରୁ ଆବିଷ୍କୃତ ଚଣ୍ଡୀଙ୍କ ସିଂହାସନରେ ଏହିପରି ନାତିରମଣୀୟ ମୂର୍ତ୍ତି ଖୋଦିତ ହୋଇଥିବାର ଦେଖାଯାଏ ।

ବୈତାଳମନ୍ଦିରରେ ପ୍ରତ୍ୟେକ ରଥର ବାଡ଼ର ଉପରିଭାଗରେ ଯୋଡ଼ା ଗଜସିଂହମୂର୍ତ୍ତି ଖୋଦିତ ହୋଇଥିବା ଦେଖାଯାଏ । ଏଥିରେ ହାତୀ ଓ ସିଂହମାନଙ୍କର ପଛପଟ ପିଚା ଏକାଠି ଲଗାଲଗି ଓ ମୁଖ ବିପରୀତ ଦିଗକୁ ହୋଇଥାଏ । ଏଗୁଡ଼ିକ ଅତୀବ ସୁନ୍ଦର ଓ ରମଣୀୟ ଶିଳ୍ପକଳା ଶୋଭିତ (of remarkable architectural skill and unique of their kind) । ଏଗୁଡ଼ିକ ମୌର୍ଯ୍ୟ ଓ ଗୁପ୍ତଯୁଗର ଚିତ୍ରଘଣ୍ଟି ଉପରେ ନିର୍ମିତ ସିଂହ-ମୂର୍ତ୍ତିର ଅନୁକରଣରେ ନିର୍ମିତ । ତେବେ ଏଥିରେ ସାମାନ୍ୟ ଦୋଷ ଅଛି । ଦୂରରୁ ଦେଖିଲେ ମନେହୁଏ ହାତୀ ସହିତ ସିଂହର କୌଣସି ସମ୍ପର୍କ ନାହିଁ ଓ ସିଂହଗୁଡ଼ିକ ଉଡ଼ିଲା ପରି ଦେଖାଯାଆନ୍ତି ।

ମୁକ୍ତେଶ୍ୱର ମନ୍ଦିରର ମକର-ତୋରଣରେ ଖୋଦିତ ଦିପିଚାଗଜସିଂହମୂର୍ତ୍ତିରେ ଏହି ଦୋଷ ସଂଶୋଧିତ ହୋଇଅଛି । ନାଗ-ନାଗିଣୀସ୍ତମ୍ଭମାନଙ୍କର ନିମ୍ନଦେଶରେ ଯେଉଁ ଗଜସିଂହମୂର୍ତ୍ତି ଖୋଦିତ ହୋଇଅଛି, ଏହା ଶିଳ୍ପକଳାପୂର୍ଣ୍ଣ ଓ ଅନବଦ୍ୟ । ରାଜାରାଣୀ ମନ୍ଦିରର ଦ୍ୱାରର ଦୁଇପାର୍ଶ୍ୱରେ ଥିବା ନାଗସ୍ତମ୍ଭର ନିମ୍ନଦେଶରେ ତିନିଯୋଡ଼ା

ଗଜସିଂହମୂର୍ତ୍ତି ଖୋଦିତ ହୋଇଛି । ଭୁବନେଶ୍ୱର ମନ୍ଦିରମାନଙ୍କରେ ଗଜସିଂହମୂର୍ତ୍ତିର ନାନାବିଧ ପ୍ରତିକୃତି ଦେଖାଯାଏ । ସେ ସମସ୍ତ ଆଲୋଚନା କରିବାପାଇଁ ଏ କ୍ଷୁଦ୍ର ପୁସ୍ତକରେ ସ୍ଥାନର ଅଭାବ ।

ଉତ୍କଳୀୟ ମନ୍ଦିରମାନଙ୍କର ବିଶେଷତ୍ୱ ଏହି ଯେ, ବିମାନର ଚାରିପାଖରେ ରାହାପାଗରେ ଥିବା 'ଭୋ'ମାନଙ୍କ ଉପରେ ଗଜସିଂହମୂର୍ତ୍ତି ମନ୍ଦିରଦେହରୁ ବାହାରିଥାଏ । କିନ୍ତୁ ପ୍ରାଚୀନ ମନ୍ଦିରମାନଙ୍କରେ 'ଭୋ' ଉପରିସ୍ଥ ଗଜସିଂହ ମୂର୍ତ୍ତି ଦେଖାଯାଏ ନାହିଁ । ମୁକ୍ତେଶ୍ୱର ମନ୍ଦିରରେ ମଧ୍ୟ ଏହାର ଅଭାବ ପରିଲକ୍ଷିତ ହୁଏ । ପରବର୍ତ୍ତୀକାଳର ମନ୍ଦିରମାନଙ୍କରେ ଏହା ଗୋଟିଏ ବିଶିଷ୍ଟ କାମରୂପେ ପରିଣତ ହୋଇଥିଲା । ବ୍ରହ୍ମେଶ୍ୱର ମନ୍ଦିରରେ ସିଂହ କୀର୍ତ୍ତିମୁଖର ଭାରବହନ କରିଅଛି । ରାଜାରାଣୀମନ୍ଦିରରେ ମଧ୍ୟ ଏ ମୂର୍ତ୍ତି ଦେଖାଯାଏ ନାହିଁ । ସମ୍ଭବତଃ ମରାମତି ସମୟରେ ଗଜସିଂହମୂର୍ତ୍ତିଟି ଯଥାସ୍ଥାନରେ ସ୍ଥାପିତ ହୋଇପାରି ନାହିଁ । ସପ୍ତମ ଶତାବ୍ଦୀର ମଧ୍ୟଭାଗରେ ନିର୍ମିତ ହୋଇଥିବା ଲିଙ୍ଗରାଜ ମନ୍ଦିରର ବିମାନର ରାହାପାଗରେ 'ଭୋ' ଉପରେ ଥିବା ଗଜସିଂହ ମୂର୍ତ୍ତି ଅତିବିରାଟ ଓ ଅତି ରମଣୀୟ । ଏଥିରେ ଭାରତୀୟ ଶିଳ୍ପର କାନ୍ତ ଉନ୍ନତି ପରିଲକ୍ଷିତ ହୁଏ । ଏହାକୁ ଶିଳ୍ପତତ୍ତ୍ୱବିଦ୍‌ମାନେ ଭୂରି ଭୂରି ପ୍ରଶଂସା କରିଛନ୍ତି । ସେହି ପ୍ରାଚୀନ ଯୁଗରେ ଓଡ଼ିଆ ଶିଳ୍ପୀର କୃତିତ୍ୱ ବିଷୟ ଚିନ୍ତାକଲେ ମନରେ ଅପାର ଆନନ୍ଦ ଓ ବିସ୍ମୟ ଜାତ ହୁଏ । ଗଜସିଂହ ମୂର୍ତ୍ତିବିଷୟ ଆଲୋଚନା କଲେ ଭୁବନେଶ୍ୱର ମନ୍ଦିରମାନଙ୍କରେ ଉତ୍କଳୀୟ ଶିଳ୍ପର କ୍ରମବିକାଶ ଲକ୍ଷିତ ହୁଏ ।

ବ୍ରହ୍ମେଶ୍ୱର ମନ୍ଦିରର ଚାରିପାଖର ରାହାପାଗରେ ଗଜସିଂହମୂର୍ତ୍ତି - ପରିବର୍ତ୍ତେ ରାହୁ-ସିଂହ ମୂର୍ତ୍ତି ଖୋଦିତ ହୋଇଛି । ବ୍ରହ୍ମେଶ୍ୱର ମନ୍ଦିର ନିର୍ମାଣ ସମୟକୁ ରାହାପାଗରେ ଗଜସିଂହ ଖୋଦନପ୍ରଥା ପ୍ରଚଳିତ ନ ଥିଲା ପରି ବୋଧହୁଏ । ଜଗମୋହନର ପୀଢର ଚାରିପାଖର ବୈଠକରେ ଚାରୋଟି ଖାଲି ସିଂହ ମୂର୍ତ୍ତି ଦେଖାଯାଏ । ବର୍ତ୍ତମାନ ଉତ୍ତରପାଖରେ ସିଂହ ଅଛି । ଅନ୍ୟ ତିନିପାଖର ସିଂହ ତିନୋଟି ନଷ୍ଟ ହୋଇଯାଇଛି । ବ୍ରହ୍ମେଶ୍ୱର ବିମାନ ଓ ଜଗମୋହନରେ ଛିଡ଼ା-ଉଡ଼ା ଗଜସିଂହମୂର୍ତ୍ତି ଦେଖାଯାଏ । ମେଘେଶ୍ୱର ମନ୍ଦିରର ପଶ୍ଚିମ ଦିଗରେ ଗଜସିଂହ ଓ ଅନ୍ୟ ତିନି ପାଖରେ ରାହୁସିଂହମୂର୍ତ୍ତି

ଦେଖାଯାଏ । ବରହୂତ ସ୍ତୂପ ପ୍ରତିଷ୍ଠାକାଳରୁ ଏହି କଳାପଦ୍ଧତି ଅନୁସୃତ ହୋଇ ମଥୁରାରେ ପ୍ରତିଷ୍ଠାଲାଭ କରିଥିଲା । ବହୁ ଶତାବ୍ଦୀପରେ ଭୁବନେଶ୍ୱରର ବା କୋଣାର୍କର ମନ୍ଦିର ଗାତ୍ରରେ ସମୟରେ ପରିବର୍ତ୍ତିତ ସେହି ସକଳ ପକ୍ଷୀମୂର୍ତ୍ତି 'ଅଳସ ନାୟିକା' ପ୍ରଭୃତି ପୂର୍ବକାଳ ପରି ଏକ ଉଦ୍ଦେଶ୍ୟରେ ବ୍ୟବହୃତ ହୋଇନାହିଁ । ଏକଥା ସମ୍ପୂର୍ଣ୍ଣ ଅସ୍ୱୀକାର କରିବା ସହଜକନୁହେଁ । ଭାରତୀୟ ଶିଳ୍ପର ପ୍ରାଚୀନ ଆଦର୍ଶଗୁଡ଼ିକ ଅନେକ ପରିମାଣରେ ଅଦ୍ୟାବଧି ରକ୍ଷିତ ହୋଇଅଛି ।

Vagil ଓ କନିଙ୍ଗହାମଙ୍କ ମତରେ ବୌଦ୍ଧଶିଳ୍ପରେ ମଥୁରାର ଶିଳ୍ପ ବିଶେଷ ଭାବରେ ପ୍ରକଟ ଓ ମଥୁରାରେ ନିର୍ମିତ ବୌଦ୍ଧମୂର୍ତ୍ତିଗୁଡ଼ିକ ଉତ୍ତରଭାରତର ବିଭିନ୍ନ ସ୍ଥାନକୁ ନୀତ ହୋଇଥିଲା । ଶିଳ୍ପୀଦ୍ୱାରା ଭାରତର ଏକ ପ୍ରଖର ଚିତ୍ରପଦ୍ଧତିର ବନ୍ଧାଛାଞ୍ଚଗୁଡ଼ିକ ଯେବେ ଅନ୍ୟପ୍ରଦେଶକୁ ନିଆହୋଇଥିଲା ତେବେ ମଥୁରା ଶିଳ୍ପ ଯେ ଉତ୍କଳପ୍ରଦେଶକୁ ଆମଦାନି ହୋଇଥିଲା ତାହାର କୌଣସି ସାକ୍ଷାତ ପ୍ରମାଣ ମିଳିନାହିଁ ।

ମଥୁରାମୂର୍ତ୍ତିଗୁଡ଼ିକ ପ୍ରାୟଶଃ ରମଣୀମୂର୍ତ୍ତିଉପରେ ଦଣ୍ଡାୟମାନ । ମାରବା ଏହାକୁ ବୌଦ୍ଧ ସୟତାନର ସଙ୍ଗିନୀମାନଙ୍କର ପ୍ରତିମୂର୍ତ୍ତି ବୋଲି କହନ୍ତି । ବରହୂତରେ ଏହି ପ୍ରତିମୂର୍ତ୍ତି ଦେଖାଯାଏ । ଯକ୍ଷିଣୀ ସୁଦର୍ଶନା ନୃତ୍ୟପରା ରମଣୀ ପରି ଗୋଟିଏ ପତିର ଦେହ ଉପରେ ଦଣ୍ଡାୟମାନ । ସ୍ତ୍ରୀ ଦେବତା ଚୁଳକୋକ ହସ୍ତୀ ଉପରେ ଲଳିତ ଭଙ୍ଗୀରେ ଠିଆ ହୋଇଛି ।

ଏହି ଚିତ୍ରମାନଙ୍କ ସହିତ ମଥୁରାର ପିଲ୍ଲା ଗାତ୍ରସ୍ଥ ଚିତ୍ର ଗୁଡ଼ିକର ଯେ ଘନିଷ୍ଠ ସମ୍ପର୍କ ତାହା ସହଜରେ ବୁଝାଯାଏ । ଏହି ପତିମୂର୍ତ୍ତିଗୁଡ଼ିକ ସ୍ଥାପତ୍ୟକୀର୍ତ୍ତିକୁ ସୁରକ୍ଷା କରନ୍ତି । ଭୟ ଦେଖାଇ କାମଜନିତ ମୋହ ଉତ୍ପାଦନ କରାଇ ବିରୁଦ୍ଧବାଦୀ ଅନିଷ୍ଟକାରୀଙ୍କୁ ସ୍ତମ୍ଭିତ କରିପାରିଲେ ଏହାର ଉଦ୍ଦେଶ୍ୟ ସାଧିତ ହେଉଥିଲା । ଏହା ସେ କାଳର ଲୋକମାନଙ୍କର ବିଶ୍ୱାସ ଥିଲା । ଏହି ପ୍ରକାରର ମୂର୍ତ୍ତି ଅସ୍ତ୍ର ଧାରଣ କରିବାର ଦେଖାଯାଏ ।

## ନାନାବିଧ ନାରୀମୂର୍ତ୍ତି

**ନାରୀ ଓ ବୃକ୍ଷମୂର୍ତ୍ତି** ଭୁବନେଶ୍ୱରର କେତେକ ମନ୍ଦିର ଦେହରେ ବୃକ୍ଷର

ନିମ୍ନଭାଗରେ ଦଣ୍ଡାୟମାନ ନାରୀମୂର୍ତ୍ତି ଖୋଦିତ ହୋଇଥିବାର ଦେଖାଯାଏ । ମୂର୍ତ୍ତିଗୁଡ଼ିକର ଭାବଭଙ୍ଗୀ ଭିନ୍ନ ଭିନ୍ନ ପ୍ରକାରର ।

**ମାୟା ଦେବୀଙ୍କ ପ୍ରସବକାଳୀନ ମୂର୍ତ୍ତି :** ମାୟାଦେବୀ ଗଛଦେହରେ ଗୋଟିଏ ଗୋଡ଼ ଠେଲା ଦେଇଛନ୍ତି । ଶିଶୁ ଶାକ୍ୟସିଂହନିର୍ଗତ ହେଉଛନ୍ତି । ବୃକ୍ଷତଳେ ଜନ୍ମଗ୍ରହଣ କରୁଛନ୍ତି । ବରହୁତର 'ଛନ୍ଦା' ନାମକ ଯକ୍ଷିଣୀ ମୂର୍ତ୍ତି ବୃକ୍ଷକାଣ୍ଡ ସହିତ ସଂଯୁକ୍ତ । ଗୋଟିଏ ଯୁବତୀ ମୂର୍ତ୍ତି ଅଶୋକଶାଖା ଧରିଅଛି ଓ ବାମପାଦରେ ବୃକ୍ଷକାଣ୍ଡର ଅଧୋଦେଶ ସ୍ପର୍ଶ କରୁଛି ।

**ସୁନ୍ଦରୀ ତରୁଣୀ ଓ ଅଶୋକବୃକ୍ଷ :** ଭୁବନେଶ୍ୱର ମନ୍ଦିରଗାତ୍ରସ୍ଥ ତରୁଣ ଓ ତରୁଣୀମୂର୍ତ୍ତି - ଅଳ୍ପବୟସ୍କା ତରୁଣୀଟିଏ ଅଶୋକକାଣ୍ଡର ନିକଟରେ ଦଣ୍ଡାୟମାନ, ବାମହସ୍ତରେ ଗୋଟିଏ ପୁଷ୍ପିତ ପ୍ରଶାଖା ଧାରଣ କରିଛି ।

ସୁନ୍ଦରୀ ନାରୀର ପଦାଘାତରେ ଅଶୋକତରୁର ପୁଷ୍ପୋଦ୍‌ଗମର କଳ୍ପନା ଭାରତୀୟ କବିସମାଜରେ ସୁପରିଚିତ । କାଳିଦାସଙ୍କ 'ମାଳବିକାଗ୍ନିମିତ୍ର' ନାଟକରେ ମାଳବିକା ଯେତେବେଳେ ରାଣୀଙ୍କ ଆଦେଶରେ ଅଶୋକକାଣ୍ଡରେ ବାମପାଦ ସ୍ପର୍ଶକରି ଅଶୋକବୃକ୍ଷର ଦୋହଦକ୍ରିୟା ନିଷ୍ପନ୍ନ କରିଥିଲା, ସେହି ସମୟରେ ବିଦୂଷକଙ୍କ ସହ ଅନ୍ତରାଳରେ ଅଗ୍ନିମିତ୍ର ତାକୁ ଏହି ଅବସ୍ଥାରେ ଦେଖିବାର ସୁଯୋଗ ପାଇଥିଲେ । ରାଜଶେଖରଙ୍କ ପ୍ରାକୃତ ନାଟକରେ କର୍ପୂର ମଞ୍ଜରୀର ଚରଣାଘାତରେ ଅଶୋକତରୁ ପୁଷ୍ପିତ ହୋଇଥିଲା । ଭୁବନେଶ୍ୱରର ଅନେକ ମନ୍ଦିରଗାତ୍ରସ୍ଥ ତରୁ ଓ ତରୁଣୀମୂର୍ତ୍ତି ଦେଖିଲେ କବିସମାଜରେ ସୁପରିଚିତ ଏହି କଳ୍ପନା ମାନସପଟରେ ଉଦିତ ହୁଏ । ମଥୁରା କୁମ୍ଭକୋଣମ୍‌ରେ ମଧ୍ୟ ଏହିପ୍ରକାର ଚିତ୍ର ଦେଖାଯାଏ । ମିଶର, ଇଉରୋପର ଗ୍ରୀସ୍, ସିରିୟା ବା ଏସିୟା ମାଇନରରେ ମଧ୍ୟ ନାନାପ୍ରକାର ତରୁ ଓ ତରୁଣୀମୂର୍ତ୍ତି ଦେଖାଯାଏ । ସିଂହଳରେ 'ନାରୀଲତା' ଓ ମକର ମୁଖରୁ 'ବିନିର୍ଗତା ବଲ୍ଲରୀସମୂହେ ସମବେଷ୍ଟିତା ଯକ୍ଷିଣୀ ନାରୀମୂର୍ତ୍ତି ପରିଲକ୍ଷିତ ହୋଇଥାଏ ।' ଏକସମୟରେ ଏବିୟାନ ସମୁଦ୍ରଠାରୁ ସୁଦୂର ଚୀନ ପର୍ଯ୍ୟନ୍ତ ଏ ପ୍ରକାର ବୃକ୍ଷ ଓ ନାରୀଚିତ୍ର ପ୍ରଚଳିତ ଥିଲା । ଖ୍ରୀଷ୍ଟପୂର୍ବ ୨୦୦୦ ବର୍ଷ ପୂର୍ବେ ଏ ପ୍ରକାର ଆଦର୍ଶ ଚୀନ ଦେଶରେ ପ୍ରଚାରିତ ହୋଇଥିବାର ଜଣାଯାଏ ।

ମଥୁରାର ଶିଳ୍ପୀଗଣ ନୃତ୍ୟନିରତା ବିଳାସିନୀମାନଙ୍କର ମୂର୍ତ୍ତି ବୌଦ୍ଧ ଓ ଜୈନ ମନ୍ଦିରାଦିର ଚତୁଷ୍ପାର୍ଶ୍ୱରେ ସଂସ୍ଥାପନ କରିବାକୁ ଭଲପାଉଥିଲେ । ଭୁବନେଶ୍ୱର ଦର୍ପଣଧାରିଣୀ ମୂର୍ତ୍ତି ସହିତ ମଥୁରାର ଦର୍ପଣଧାରିଣୀ ଗୋଟିଏ ନାରୀମୂର୍ତ୍ତିର ଅନେକ ସାଦୃଶ୍ୟ ଅଛି । ଉତ୍କଳର ମନ୍ଦିରଗାତ୍ରରେ ମନୋବିମୋହନ ଭଙ୍ଗୀରେ ଯେ ସକଳ ଏକକ ରମଣୀମୂର୍ତ୍ତି ଦଣ୍ଡାୟମାନ ଦେଖାଯାଏ, ତାହାର କୌଣସି କୌଣସି ମୂର୍ତ୍ତିର ଅନୁରୂପ ସ୍ତ୍ରୀ ମୂର୍ତ୍ତି ମଥୁରା ଭାସ୍କର୍ଯ୍ୟରେ ଲକ୍ଷିତ ହୁଏ ।

ହିନ୍ଦୁ ଓ ବୌଦ୍ଧ ଭାସ୍କର୍ଯ୍ୟ ପରିଲକ୍ଷିତ ନାରୀଦେହରେ ନିତମ୍ବର ପୃଥୁଳତା ଓ ବକ୍ଷୋଦେଶର ପୀବରତା ଭାରତୀୟ ଶିଳ୍ପର ବିଶେଷତ୍ୱ ବୋଲି ପରିଗଣିତ । G.C. Ganguliଙ୍କ ମତରେ ଉତ୍କଳର ମଧ୍ୟଯୁଗର ବ୍ରାହ୍ମଣ୍ୟ ମନ୍ଦିରର ପ୍ରସାଧକ ଅନେକ ନାରୀମୂର୍ତ୍ତିର ଆଦର୍ଶ ଦ୍ୱିତୀୟ ଓ ତୃତୀୟ ଶତାବ୍ଦୀର ଜୈନ ଓ ବୌଦ୍ଧ ପ୍ରାକାରର ନକ୍ସାରୁ ଗୃହୀତ ।

ଭୁବନେଶ୍ୱରର ଅଳସ ନାୟିକା 'ଶିରୋଦେଶେ ସଂନ୍ୟସ୍ତହସ୍ତା ଦଣ୍ଡାୟମାନାମୂର୍ତ୍ତି' । ବିବୃତଯୌବନା ଓ ପ୍ରଗଲ୍‌ଭା ନାୟିକା । ଉତ୍କଳର ନର୍ତ୍ତକୀମୂର୍ତ୍ତିଗୁଡ଼ିକ କୌଣସି ଗଣମୂର୍ତ୍ତି ବା ଛୀବମୂର୍ତ୍ତି ଉପରେ ଦଣ୍ଡାୟମାନା ସ୍ତ୍ରୀ ମୂର୍ତ୍ତି ପରି ଦେଖାଯାଏ ନାହିଁ । ମଥୁରାର ଗୋଟିଏ ବା ଦୁଇଟି ନର୍ତ୍ତକୀମୂର୍ତ୍ତି ସହିତ ଏହି ଅଳସନାୟିକାମାନଙ୍କର ସାମଞ୍ଜସ୍ୟ ଅଛି ।

ଉତ୍କଳର ନାରୀମାନଙ୍କର ଯେଉଁ ବର୍ଣ୍ଣନା ବ୍ରହ୍ମପୁରାଣରେ ଦିଆଯାଇଛି, ତାହାର ଆଲୋଚନା ଏଠାରେ ଆବଶ୍ୟକ । ଚନ୍ଦ୍ରିକା ଦେବୀଙ୍କ ଲିପି ମଧ୍ୟ ଆଲୋଚ୍ୟ । ଉତ୍କଳର ମନ୍ଦିରଗାତ୍ରସ୍ଥ ରମଣୀ ମୂର୍ତ୍ତିମାନଙ୍କର ଉଦ୍ଦାମ ଯୌବନଶ୍ରୀ ଓ ସୁଠାମଭଙ୍ଗୀ ଦେଖିଲେ ମନରେ ଅପାର ଆନନ୍ଦ ଜାତ ହୁଏ । ଉତ୍କଳଭାସ୍କର୍ଯ୍ୟରେ ପୁରୁଷମୂର୍ତ୍ତି ଅପେକ୍ଷା ସ୍ତ୍ରୀମୂର୍ତ୍ତିଗୁଡ଼ିକ ଅଧିକ ସୁନ୍ଦର । ପୁରୁଷ ମୂର୍ତ୍ତିଗୁଡ଼ିକର ଅନେକ ସ୍ଥଳରେ ଶ୍ଲଥ ଶିଥିଳଭାବ, ଗୁମ୍ଫ ଓ ଶ୍ମଶ୍ରୁ ପ୍ରଭୃତିର ବିନ୍ୟାସ ଏକାବେଳକେ ଅସ୍ୱାଭାବିକ ନ ହେଲେ ମଧ୍ୟ ଅଶୋଭନ ବୋଲି କୁହାଯାଇ ପାରେ । କିନ୍ତୁ ଲିଙ୍ଗରାଜ ମନ୍ଦିର ଗାତ୍ରସ୍ଥ କାର୍ତ୍ତିକମୂର୍ତ୍ତି ଭାରତୀୟ ପୂର୍ଣ୍ଣ ସୌନ୍ଦର୍ଯ୍ୟର ଶ୍ରେଷ୍ଠନିଦର୍ଶନ ବୋଲି କୁହାଯାଇପାରେ ।



ଜାଲି କବାଟ



ଲତା କାମ



ମହିଷାମର୍ଦ୍ଦିନୀ



ବାସୁକୀ



ଦ୍ୱାରବନ୍ଧର ଉପର ପାର୍ଶ୍ୱ



ଶିଶିରେଶ୍ୱର ମନ୍ଦିରର **ଯୁଦ୍ଧଯାତ୍ରା ଦୃଶ୍ୟ**



**ଗଜବିଡ଼ାଳ**



**କଦଶ୍ୱ**



ନାଗିଣୀ ମୂର୍ତ୍ତି



ଦ୍ୱିପିଉ ସିଂହ



ଗଜ ସିଂହ



ନଟରାଜ ଓ ସୂର୍ଯ୍ୟ ଭୋ ଭିତରେ



କୀର୍ତ୍ତିମୁଖ



ଧୂମ୍ର ନିର୍ଗମନ ପଥ



ଭୋ

ପୂର୍ବବର୍ଣ୍ଣିତ ମୂର୍ତ୍ତିଗୁଡ଼ିକ ହିନ୍ଦୁଧର୍ମଶାସ୍ତ୍ରର ନିୟମ ଅନୁସାରେ ମନ୍ଦିରଦେହରେ ଖୋଦିତ ହୋଇଥାଏ । ଶିଳ୍ପୀ ଶାସ୍ତ୍ରାନୁମୋଦିତ ନିୟମ ପାଳନକରି ମୂର୍ତ୍ତିଗୁଡ଼ିଏ ନିର୍ମାଣ କରିଥାଏ । ସେ ଏଗୁଡ଼ିକରେ ତା ହୃଦୟର ପରିପକ୍ୱ ଗଭୀର କଳାଜ୍ଞାନ ସ୍ୱାଧୀନ ଭାବରେ ବ୍ୟକ୍ତ କରିପାରେ ନାହିଁ । ତା ମନର ଉଦ୍ଭୁତ କଳ୍ପନା ବାସ୍ତବମୂର୍ତ୍ତି ପରିଗ୍ରହଣ କରିପାରେ ନାହିଁ । ହିନ୍ଦୁମାନଙ୍କର ବର୍ଣ୍ଣାଶ୍ରମଧର୍ମ ପରି ଶିଳ୍ପୀ ପରମ୍ପରାଗତ ନିୟମ ପାଳନ କରିବାକୁ ବାଧ୍ୟ ହୁଏ । ତାହାର କାର୍ଯ୍ୟ ସୀମାବଦ୍ଧ । ସେ ନିର୍ଦ୍ଦିଷ୍ଟ ବେଷ୍ଟନୀ ଅତିକ୍ରମ କଲେ ଧର୍ମଶାସ୍ତ୍ରର ନିୟମାନୁସାରେ ମୂର୍ତ୍ତିଟି ଦୋଷଦୁଷ୍ଟହେବାର ଆଶଙ୍କା ତା ମନରେ ସର୍ବଦା ଥାଏ । ତେଣୁ ତା ହୃଦୟରେ କଳା ପରିସ୍ଫୁଟନ ପାଇଁ ଗଭୀର ପିପାସା ଏଥିରେ ନିବାରିତ ହୁଏନାହିଁ ।

ପାଠକମାନଙ୍କର ଅବଗତି ନିମିତ୍ତ ମୁଁ ପ୍ରତ୍ୟେକଟିର ସଂକ୍ଷିପ୍ତ ଇତିହାସ ଦେଇଛି । ଏଥିରୁ ସ୍ପଷ୍ଟ ଜଣାଯାଏ ଯେ, ହିନ୍ଦୁଧର୍ମର ପୁନରୁତ୍ଥାନ ଯୁଗରେ ହିନ୍ଦୁ ଶିଳ୍ପୀମାନେ ବୌଦ୍ଧ ଶିଳ୍ପକଳାକୁ ନିଜସ୍ୱ କରିଥିଲେ । ହିନ୍ଦୁଶିଳ୍ପ ବୌଦ୍ଧଶିଳ୍ପର ଅବିକଳ ଅନୁକରଣ ନୁହେଁ । ହିନ୍ଦୁଶିଳ୍ପୀ ଅତି ଚତୁର ଭାବରେ ବୌଦ୍ଧଶିଳ୍ପକଳାକୁ ନିଜସ୍ୱ କରିଥିଲେ । ବୌଦ୍ଧଶିଳ୍ପକଳାର ବିଭିନ୍ନ ମୂର୍ତ୍ତି ପରିବର୍ତ୍ତିତ, ପରିବର୍ଦ୍ଧିତ ଓ ସଂଶୋଧିତ ହୋଇ ହିନ୍ଦୁଧର୍ମରେ ସ୍ଥାନପାଇଛି । ଏଥିରେ ହିନ୍ଦୁଶିଳ୍ପୀର ଯଥେଷ୍ଟ ବାହାଦୁରି ଅଛି । ଭାରତୀୟ ଶିଳ୍ପକଳା ସମ୍ବନ୍ଧରେ ହାଭେଲଙ୍କର ମତ ସର୍ବାଦୌ ଗ୍ରହଣୀୟ । ଆଧୁନିକ ହିନ୍ଦୁଧର୍ମ ବୌଦ୍ଧ ମହାଯାନ ପନ୍ଥାର ସ୍ୱରୂପାନ୍ତର ମାତ୍ର । ମହାଯାନ ଧର୍ମ ପୌତ୍ତଳିକ ହିନ୍ଦୁଧର୍ମର ମୂଳଭିତ୍ତି । ମହାଯାନ ସଂପ୍ରଦାୟର ଇତିହାସ ଅଦ୍ୟାପି ସ୍ପଷ୍ଟ ହୋଇନାହିଁ । କିନ୍ତୁ ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀବେଳକୁ ମହାଯାନଧର୍ମ ଗୋଟିଏ ବିଶିଷ୍ଟ ଧର୍ମମତରୂପେ ଏସିୟାଖଣ୍ଡର ଅଧିକାଂଶ ସ୍ଥାନରେ ପ୍ରଚଳିତ ଥିଲା । ଗୁପ୍ତଯୁଗରେ ଉତ୍ତରଭାରତର ଶିଳ୍ପ ଉତ୍କଳରେ ପ୍ରବେଶ ଲାଭ କରିଥିଲା । ଶୈଳୋଦ୍ଭବ, କର ଓ କେଶରୀ ବଂଶର ନରପତିମାନେ ଗୁପ୍ତ ଯୁଗର ମନ୍ଦିରମାନଙ୍କ ଅନୁକରଣରେ ଉତ୍କଳପ୍ରଦେଶରେ ଅସଂଖ୍ୟ ଦେବମନ୍ଦିର ନିର୍ମାଣ କରିଥିଲେ । କିନ୍ତୁ ଭାରତର ଅନ୍ୟାନ୍ୟ ପ୍ରଦେଶ ଅପେକ୍ଷା ଉତ୍କଳଦେଶରେ ଉତ୍ତର ଭାରତୀୟ ଶିଳ୍ପକଳା କେଶରୀ, ଭଞ୍ଜ, କରବଂଶର

ମହଦାଶ୍ରୟ ଲାଭକରି ଉନ୍ନତିର ଚରମ ସୀମାରେ ପହଞ୍ଚିଥିଲା । ଉତ୍ତରଭାରତର ରାଜାମାନେ ମଧ୍ୟ ସିନ୍ଧୁଠାରୁ ବ୍ରହ୍ମପୁତ୍ର ଓ ହିମାଳୟଠାରୁ ଗୋଦାବରୀ ପର୍ଯ୍ୟନ୍ତ ବିଶାଳ ଆର୍ଯ୍ୟାବର୍ତ୍ତ ବକ୍ଷରେ ସହସ୍ର ସହସ୍ର ମନ୍ଦିର ନିର୍ମାଣ କରିଥିଲେ । କିନ୍ତୁ ସେଗୁଡ଼ିକ ମୁସଲମାନଙ୍କ ଶତ ଶତ ବର୍ଷର ଅତ୍ୟାଚାରଯୋଗୁ ଚିରକାଳ ପାଇଁ ଲୋପ ପାଇଯାଇଛି । କେବଳ ରାଜପୁତନା, ପଞ୍ଜାବ, ମଧ୍ୟପ୍ରଦେଶ ଓ ମଧ୍ୟଭାରତର ପାର୍ବତୀୟ ଅଞ୍ଚଳରେ କେତେକ ମନ୍ଦିର ଦେଖାଯାଏ । ସେଗୁଡ଼ିକ ଓଡ଼ିଶାର ମନ୍ଦିରମାନଙ୍କ ପରି । ଆଜିପର୍ଯ୍ୟନ୍ତ ଅନେକ ଉତ୍କଳୀୟ ଉତ୍କଳ ବ୍ୟତୀତ ଉତ୍ତରଭାରତର ଅନ୍ୟ କୌଣସି ସ୍ଥାନରେ ମନ୍ଦିର ଅଛି ବୋଲି ଜାଣିନଥିଲେ । କିନ୍ତୁ ବଙ୍ଗଳାର ବିକ୍ରମପୁର, ଗୌଡ଼, ଲକ୍ଷ୍ନାବତୀ, ରାମାବତୀ, ପାହାଡ଼ପୁର ଓ ବୀରଭୂମଜିଲ୍ଲାରେ ଏବଂ ବିହାର ଓ ଯୁକ୍ତ ପ୍ରଦେଶର ଅନେକ ସ୍ଥାନରେ ଅଦ୍ୟାପି ମନ୍ଦିରମାନଙ୍କର ଭଗ୍ନାବଶେଷ ଦେଖାଯାଏ । ସେଗୁଡ଼ିକ ଦେଖିଲେ ସ୍ପଷ୍ଟ ଜଣାଯାଏ ଯେ ପୂର୍ବେ ସମଗ୍ର ଉତ୍ତରଭାରତରେ ରେଖ ଓ ପୀଢ ମନ୍ଦିର ନିର୍ମାଣ ପ୍ରଥା ପ୍ରଚଳିତ ଥିଲା । ଉତ୍କଳୀୟ ଶିଳ୍ପ ଭାରତୀୟ ଶିଳ୍ପର ଗୋଟିଏ ଶାଖାମାତ୍ର । କିନ୍ତୁ ଉତ୍କଳର ସ୍ୱାଧୀନତା ବହୁକାଳ ପର୍ଯ୍ୟନ୍ତ ରହିବାରୁ ଏଠାରେ ଶିଳ୍ପକଳା ଅଭୂତପୂର୍ବ ଉନ୍ନତି ଲାଭ କରିଥିଲା ।



## ସପ୍ତମ ଅଧ୍ୟାୟ

# ଭୁବନେଶ୍ୱରର ପ୍ରମୁଖ ମନ୍ଦିରଗୁଡ଼ିକର କାଳ ନିର୍ଣ୍ଣୟ

ଭାରତର ଅଧିକାଂଶ ପ୍ରାଚୀନ କୀର୍ତ୍ତିମାନଙ୍କର ନିର୍ମାଣ ସମୟ ଆଜିପର୍ଯ୍ୟନ୍ତ ନିରୂପିତ ହୋଇପାରିନାହିଁ । ଭାରତୀୟମାନେ ଶତଶତ ଇତିହାସ-ପୁରାଣ, ସାହିତ୍ୟଗ୍ରନ୍ଥ, ଶିଳାଲିପି ଓ ତାମ୍ରଶାସନରେ ପ୍ରାଚୀନକୀର୍ତ୍ତିମାନଙ୍କ ସମ୍ବନ୍ଧରେ ବିସ୍ତୃତ ବିବରଣୀମାନ ଦେଇଛନ୍ତି । କିନ୍ତୁ ଭାରତରେ ନାନାପ୍ରକାର ଅବ୍ଦ (ଶକାବ୍ଦ, ସଂବତ୍ କୃତାବ୍ଦ, କଳିଯୁଗାବ୍ଦ, ଗୁପ୍ତାବ୍ଦ, ଯୁଧିଷ୍ଠିରାବ୍ଦ, ଗଙ୍ଗାବ୍ଦ, ସାଲ, ଅଙ୍କ) ପ୍ରଚଳିତ ଥିବାରୁ ଏମାନଙ୍କର ସମୟ ନିରୂପଣ କରିବା ଅତି କଷ୍ଟ ସାଧ୍ୟ । ତେଣୁ କୌଣସି ଐତିହାସିକ ଭାରତର ପ୍ରାଚୀନ କୀର୍ତ୍ତିମାନଙ୍କର ନିର୍ମାଣସମୟ ନିର୍ଣ୍ଣୟ କରିପାରିନାହାନ୍ତି । ଫ୍ଲିଟ୍ ଗୁପ୍ତାବ୍ଦ ୩୨୦ ଖ୍ରୀଷ୍ଟାବ୍ଦରେ ପ୍ରଚଳିତ ହୋଇଥିବାର ନିର୍ଣ୍ଣୟ କରି ସମଗ୍ର ଭାରତ ଇତିହାସ ଇତସ୍ତତଃ କରିପକାଇଛନ୍ତି । ଗୁପ୍ତାବ୍ଦ ଖ୍ରୀଷ୍ଟପୂର୍ବ ୫୭ ଅବ୍ଦରେ ପ୍ରଚଳିତ ବିକ୍ରମସଂବତ୍‌ର ନାମାନ୍ତର ମାତ୍ର । କିନ୍ତୁ ୟୁରୋପୀୟ ଓ ଭାରତୀୟ ଐତିହାସିକମାନେ କୌଣସି ବିଚାର ନ କରି ଗୁପ୍ତାବ୍ଦକୁ ଗ୍ରହଣ କରି ଆଲୋଚନା କଲେ । ତେଣୁ କୌଣସି କୀର୍ତ୍ତିର ସମୟ ନିର୍ଣ୍ଣୟ ଆହୁରି କଷ୍ଟକର ବ୍ୟାପାର ହୋଇପଡ଼ିଛି ।

ଗୁପ୍ତାବ୍ଦ ପରି ଲିପିତତ୍ତ୍ୱ(Paliography) ମଧ୍ୟ ଭାରତୀୟ ଇତିହାସରେ ଭୀଷଣ ସଂଶୟ ସୃଷ୍ଟି କରିଛି । ଲିପିତତ୍ତ୍ୱ ଅବଶ୍ୟ ପ୍ରତ୍ନତତ୍ତ୍ୱ ଆଲୋଚନାର ଗୋଟିଏ ଉପାଦାନ, କିନ୍ତୁ ମୁଖ୍ୟ ଉପାଦାନ ନୁହେଁ । ଦୁଃଖର ବିଷୟ ସାହେବ ଓ ଅଧାସାହେବ ତଥା କେତେକ ଭାରତୀୟ ଐତିହାସିକ ଅନ୍ଧଭାବରେ ଲିପିତତ୍ତ୍ୱଉପରେ ନିର୍ଭରକରି କିମ୍ଭୂତକିମାକାର ଇତିହାସ ସୃଷ୍ଟି କରୁଛନ୍ତି । କେବଳ ଲିପିତତ୍ତ୍ୱ ବଳରେ ଇତିହାସ ରଚନା କରିବା ଭ୍ରମପୂର୍ଣ୍ଣ ହୁଏ । ଉଦାହରଣସ୍ୱରୂପ, ବାସୁଦେବ ମନ୍ଦିର ବେଢାରେ ଥିବା ଲିପିଦୁଇଟିର ଅକ୍ଷରର ସାଦୃଶ୍ୟ ଦେଖିଲେ ସେ ଦୁଇଟି ସମସାମୟିକ ବୋଲି ମନେହୁଏ । ସେଥିମଧ୍ୟରୁ ଗୋଟିଏ ଭବଦେବ ଭଟ୍ଟଙ୍କର ଲିପି, ଅନ୍ୟଟି ସ୍ୱପ୍ନେଶ୍ୱରଦେବଙ୍କ ଲିପି । ପ୍ରଥମଟି ୧୦୨୦-୨୫ ଖ୍ରୀଷ୍ଟାବ୍ଦରେ ଓ ଦ୍ୱିତୀୟଟି ୧୧୬୭ ଖ୍ରୀଷ୍ଟାବ୍ଦରେ ଲିଖିତ ହୋଇଥିବାର ପ୍ରମାଣିତ ହୋଇଛି । ତେଣୁ ଏମାନଙ୍କ ମଧ୍ୟରେ ପ୍ରାୟ ଦେଢଶତ ବର୍ଷର ବ୍ୟବଧାନ । ଆକ୍ଷରିକ ସାଦୃଶ୍ୟଉପରେ ନିର୍ଭରକରି

ଇତିହାସ ଲେଖିଥିଲେ ଦେଢଶବର୍ଷର ଗୋଳମାଳ ହୋଇ ଯାଇଥାନ୍ତା । ମଥୁରାରୁ ଦ୍ୱିତୀୟ ଚନ୍ଦ୍ରଗୁପ୍ତ (ଗୁପ୍ତବଂଶୀୟ)ଙ୍କ ଗୋଟିଏ ଲିପି କେବଳ ଅକ୍ଷର ସାଦୃଶ୍ୟଯୋଗୁ କୁଶାନ ଯୁଗର ବୋଲି ନିର୍ଦ୍ଧାରିତ ହୋଇଥିଲା । କିନ୍ତୁ ଚନ୍ଦ୍ରଗୁପ୍ତଙ୍କ ନାମ ବାହାରିବାରୁ ଏପରି ଭ୍ରମ ଦୂରୀଭୂତ ହେଲା । ଧଉଳି ଲିପିରେ ପ୍ରାୟ ୧୧ଟି ଅଶୋକାନୁଶାସନ ଓ ଦୁଇଟି କଳିଙ୍ଗ ଲିପି ଲେଖା ହୋଇଛି । ଅନୁଶାସନଗୁଡ଼ିକର ଅକ୍ଷରଗୁଡ଼ିକ ସୁନ୍ଦର ଓ ଅଶୋକଯୁଗର ବୋଲି ସ୍ପଷ୍ଟ ଜଣାଯାଏ । କିନ୍ତୁ କଳିଙ୍ଗାନୁଶାସନଦୁଇଟି ପୂର୍ବୋକ୍ତ ଲିପିମାନଙ୍କର ୩/୪ ବର୍ଷପରେ ଲିଖିତ ହୋଇଥିଲେ ସୁଦ୍ଧା ଅକ୍ଷରଗତ ସାଦୃଶ୍ୟ ଦେଖିଲେ ଆହୁରି ପ୍ରାଚୀନ ବୋଲି ମନେହୁଏ ।

ଲିପିର ଅକ୍ଷର କାଳ ଖୋଦକ ଉପରେ ନିର୍ଭର କରେ । ଖୋଦକ ମନଯୋଗ ସହିତ ନ ଲେଖିଲେ ସମସାମୟିକ ଦୁଇଟିଲିପି ମଧ ବିଭିନ୍ନ ସମୟର ବୋଲି ମନେହୁଏ । ଏହାର ଅନେକ ଉଦାହରଣ ପୁରୀ ଓ ଭୁବନେଶ୍ୱର ଲିପିମାନଙ୍କରୁ ମିଳିବ । ଗୁପ୍ତାବ୍ଦ ଓ ଲିପିତତ୍ତ୍ୱ ଉପରେ ନିର୍ଭର କରି ସାହେବ ଓ ଅଧାସାହେବ ଓ କେତେକ ଉତ୍କଳୀୟ ଐତିହାସିକ ସୋମବଂଶୀୟ ପ୍ରଥମ ଯଯାତିକେଶରୀଙ୍କୁ ନବମ ଶତାବ୍ଦୀର ବୋଲି ନିର୍ଦ୍ଧାରଣ କରିଛନ୍ତି । ଛିନ୍ନମସ୍ତା ଉତ୍କଳଜନନୀଙ୍କ ପରି ତାହାର ପ୍ରାଚୀନ ଗୌରବମୟ ଇତିହାସ ବର୍ତ୍ତମାନ ସାହେବ ଓ ପ୍ରତିବେଶୀମାନଙ୍କଦ୍ୱାରା ଇତସ୍ତତଃ ହେଉଅଛି । କେତେଦିନତଳେ ୮୪ଖ୍ରୀ.ପୂ.ର ଗୋଟିଏ କ୍ଷୁଦ୍ର ବ୍ରାହ୍ମୀ ଲିପି ମିଳିଥିଲା । ତାହାର ଅକ୍ଷରଗୁଡ଼ିକ ଅଶୋକଲିପିର ଅକ୍ଷର ସହିତ ସମାନ କିନ୍ତୁ ଲିପିର ସମୟ ଦିଆ ହୋଇଥିବାରୁ ସାହେବଙ୍କ ଲିପିତତ୍ତ୍ୱ ଯୁକ୍ତିଟି ପଟିଲା ନାହିଁ । ତେଣୁ ମୁଁ ଭାରତୀୟ ଐତିହାସିକମାନଙ୍କଦ୍ୱାରା ଅନୁସୃତ ପାରମ୍ପରିକ ପ୍ରଥା ଅନୁସରଣ ନ କରି ମନ୍ଦିରମାନଙ୍କର ସମୟ ନିରୂପଣ କରିବାକୁ ଚେଷ୍ଟା କରିଛି । ପାଠକମାନେ ଲେଖକଙ୍କୁ ତାହାର ଧୃଷ୍ଟତା ନିମିତ୍ତ କ୍ଷମାଦେବେ । ଏହାର ବିଚାରଭାର ଉତ୍କଳୀୟ ଶିକ୍ଷିତ ସମାଜ ଉପରେ ନ୍ୟସ୍ତକରି ମୁଁ ମନ୍ଦିରମାନଙ୍କର ସମୟ ନିରୂପଣ କରିବାକୁ ଆରମ୍ଭ କରୁଅଛି ।

ଭୁବନେଶ୍ୱରରେ ଅଦ୍ୟାପି ସହସ୍ରାଧିକ ମନ୍ଦିର ବିଦ୍ୟମାନ । କାଳକ୍ରମେ ଅସଂଖ୍ୟ ମନ୍ଦିରଲୁପ୍ତ ହୋଇଗଲାଣି । କେତେକଙ୍କର ଭଗ୍ନସ୍ତୂପ ଉପରେ ନୂତନ ମନ୍ଦିରମାନ ନିର୍ମିତ ହୋଇଅଛି । ତେଣୁ ସେହି ପ୍ରାଚୀନ ମନ୍ଦିରସକଳ ଚିରକାଳ ପାଇଁ ପୃଥିବୀପୃଷ୍ଠରୁ ଲୋପ ପାଇଛି । କେତେକ ବର୍ତ୍ତମାନ ଭୂଗର୍ଭରେ ଲୁକ୍କାୟିତ ।

ଭୁବନେଶ୍ୱରର ନୂତନ ଧର୍ମଶାଳା ନିର୍ମାଣ ସମୟରେ ଭୂଗର୍ଭରୁ ତିନି ଚାରୋଟି ମନ୍ଦିର ଆବିଷ୍କୃତ ହୋଇଥିଲା । ସେହିପରି ଯେ ଆହୁରି କେତେ ମନ୍ଦିର ବିଲୀନ ହୋଇନଥିବ ତାହା କିଏ କହିବ ? ଭୁବନେଶ୍ୱରର କେତେକ ପ୍ରାଚୀନକୀର୍ତ୍ତି ଗୁଳ୍ମ ବୃକ୍ଷାଚ୍ଛାଦିତ ହୋଇ ଓ ବନମଧ୍ୟରେ ରହି ଲୋକମାନଙ୍କ ଦୃଷ୍ଟିର ଅଗୋଚରରେ ରହିଛି । ଅନେକମନ୍ଦିର ମୁସଲମାନ ଓ ସ୍ୱାର୍ଥପର ହିନ୍ଦୁମାନଙ୍କଦ୍ୱାରା ଧ୍ୱସ୍ତବିଧ୍ୱସ୍ତ ହୋଇଛି । କାଳର ସର୍ବବିଧ୍ୱଂସିନୀ ଶକ୍ତି ମଧ୍ୟ କେତେକ ମନ୍ଦିରକୁ ଧ୍ୱଂସ କରିପକାଇଅଛି । ତଥାପି ଭୁବନେଶ୍ୱରରେ ଶତଶତ ରମଣୀୟ କୀର୍ତ୍ତି ବିଦ୍ୟମାନ ଥାଇ ଦର୍ଶକମାନଙ୍କ ମଧ୍ୟରେ ଅପାର ବିସ୍ମୟ ଜନ୍ମାଉଅଛି । ଭୁବନେଶ୍ୱରର ପ୍ରତ୍ୟେକ ମନ୍ଦିର ନିର୍ମାଣକାଳ ନିର୍ଣ୍ଣୟ କରିବା ସାଧାରଣ ମାନବପକ୍ଷେ ଅସମ୍ଭବ । ତେଣୁ କେତୋଟି ପ୍ରଧାନ ପ୍ରଧାନ ମନ୍ଦିରମାନଙ୍କର ସମୟ ନିରୂପଣ କରିବା ଆବଶ୍ୟକ ।

କୌଣସି ଜାତିର ଧର୍ମୀୟ-ସାମାଜିକ-ଆର୍ଥିକ ଇତିହାସ ଜାଣିବା ପୂର୍ବରୁ ରାଜନୈତିକ ଇତିହାସ ଜାଣିବା ଆବଶ୍ୟକ । କିନ୍ତୁ ଅତ୍ୟନ୍ତ ଦୁଃଖର ବିଷୟ ଉତ୍କଳର ଅନେକ ରାଜବଂଶର ରାଜତ୍ୱକାଳ ନିର୍ଦ୍ଧାରିତ ହୋଇନାହିଁ । କେତେକ ବଂଶର ଇତିହାସ ଅଦ୍ୟାପି ଅତୀତର ଅନ୍ଧକାରରେ ଆଚ୍ଛନ୍ନ । ଏପରି ଅବସ୍ଥାରେ ମନ୍ଦିର ନିର୍ମାଣସମୟ ଯେ ଭ୍ରମ ପ୍ରମାଦସଂକୁଳ ହେବ, ଏଥିରେ କୌଣସି ସନ୍ଦେହ ନାହିଁ । ଶିଳାଲିପି ଓ ପୁରାଣମାନ ଲେଖକର ପ୍ରଧାନ ଅବଲମ୍ୱନ । 'କପିଳସଂହିତା' ତ୍ରୟୋଦଶ ଶତାବ୍ଦୀର ଶେଷଭାଗରେ ବା ଚତୁର୍ଦ୍ଦଶ ଶତାବ୍ଦୀର ପ୍ରଥମ ଭାଗରେ ରଚିତ ହୋଇଥିଲା । ଏଥିରେ ଭୁବନେଶ୍ୱର ମନ୍ଦିରମାନଙ୍କର ଯେଉଁ ତାଲିକା ଦିଆଯାଇଛି ସେଥିରୁ ଜଣାଯାଏ ଯେ ତ୍ରୟୋଦଶ ଶତାବ୍ଦୀର ଶେଷବେଳକୁ ଭୁବନେଶ୍ୱରର ଅଧିକାଂଶ ମନ୍ଦିର ନିର୍ମିତ ହୋଇଥିଲା । ତତ୍‌ପରବର୍ତ୍ତୀକାଳରେ ଅବଶ୍ୟ ଅନେକମନ୍ଦିର ନିର୍ମିତ ହୋଇଥିଲା । କିନ୍ତୁ ସେମାନଙ୍କର ଶିଳ୍ପ ଓ ଗଠନ ବିଚାର କଲେ ସେଗୁଡ଼ିକ ନଗଣ୍ୟ ବୋଲି ମନେହୁଏ । ମନ୍ଦିରମାନଙ୍କର ସମୟ ଆଲୋଚନା କରିବାପାଇଁ ଶିଳାଲିପି ଓ ମନ୍ଦିରମାନଙ୍କର ଶିଳ୍ପଗଠନ, ମାଦଳା ପାଞ୍ଜି ଓ ପୁରାଣମାନଙ୍କରେ ଥିବା କତିପୟ ଶ୍ଳୋକ ପ୍ରଧାନ ଉପାଦାନ । ଭୁବନେଶ୍ୱରର ଅଧିକାଂଶ ମନ୍ଦିରରେ ଶତାଧିକ ଶିଳାଲିପି ବିଦ୍ୟମାନ କିନ୍ତୁ ତନ୍ମଧ୍ୟରୁ ଅଧିକାଂଶ ଅଦ୍ୟାବଧି ପଠିତ ହୋଇନାହିଁ । ପଠିତ ଶିଳାଲିପିରୁ କେତୋଟି ମନ୍ଦିରର ନିର୍ମାଣକାଳ ସ୍ପଷ୍ଟ ଜଣାଯାଏ ।

(୧) ବ୍ରହ୍ମେଶ୍ୱର- ଶିଳାଲିପିମାନଙ୍କର ଆଲୋଚନାରୁ ଜଣାଯାଏ ଯେ, ବ୍ରହ୍ମେଶ୍ୱର ମନ୍ଦିର ଭୁବନେଶ୍ୱରର ଗୋଟିଏ ପ୍ରାଚୀନମନ୍ଦିର । ସେଥିରେ ଉଦ୍ୟୋତକେଶରୀଙ୍କ ଗୋଟିଏ ଲିପିଅଛି । ଏହାକୁ ସ୍ୱର୍ଗୀୟ ରାଜା ରାଜେନ୍ଦ୍ରଲାଲ ମିତ୍ର ପାଠ କରିଥିଲେ । *(Antiquities of Orissa, Volume - II)* । ଏଥିରୁ ଜଣାଯାଏ ଯେ, ଉଦ୍ୟୋତ କେଶରୀଙ୍କ ମାତା ରାଣୀ କୋଳାବତୀ ଏହି ମନ୍ଦିର ନିର୍ମାଣ କରିଥିଲେ । ଉଦ୍ୟୋତ କେଶରୀଙ୍କ ସମୟର ଗୋଟିଏ ଶିଳାଲିପି ନରସିଂହପୁର ରାଜ୍ୟରୁ ମିଳିଥିଲା । ତାକୁ ପଣ୍ଡିତ ବିନାୟକ ମିଶ୍ର ପାଠ କରିଥିଲେ । ଏଥିରୁ ଜଣାଯାଏ ଯେ, ଉଦ୍ୟୋତକେଶରୀ ଦ୍ୱିତୀୟ ଯଯାତିଙ୍କର ପୁତ୍ର । ତାଙ୍କ ମତରେ ଦ୍ୱିତୀୟ ଯଯାତି ଖ୍ରୀଷ୍ଟୀୟ ୯୬୦ରୁ ୯୭୦ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ଲିପିରେ ଥିବା ଅବ୍ଦକୁ ସେ ଗୁପ୍ତାବ୍ଦ(୩୨୦ଖ୍ରୀ.) ବୋଲି ମନେକରି ଏପରି ନିର୍ଦ୍ଧାରଣ କରିଛନ୍ତି । କିନ୍ତୁ ଏହି ମତ ଗ୍ରାହ୍ୟ ନୁହେଁ । ଗୁପ୍ତାବ୍ଦ ବିକ୍ରମ ସମ୍ବତ୍‌ର ନାମାନ୍ତର ମାତ୍ର । ତେଣୁ ୯୬୦ରୁ (୩୨୦+୫୭= ୩୭୭) ବିୟୋଗ କଲେ ଦ୍ୱିତୀୟ ଯଯାତିଙ୍କର ପ୍ରକୃତ ରାଜତ୍ୱକାଳ ନିର୍ଣ୍ଣୀତ ହୋଇପାରିବ । ତାହାହେଲେ ସେ (୫୮୩ରୁ୫୯୩ ପର୍ଯ୍ୟନ୍ତ) ରାଜତ୍ୱ କରିଥିଲେ । ବିନାୟକ ମିଶ୍ର ଦ୍ୱିତୀୟ ଯଯାତିଙ୍କର ସମୟ ନିର୍ଦ୍ଧାରଣ କରି ଉତ୍କଳ-ଇତିହାସରେ ଯୁଗାନ୍ତର ଆଣିପାରିଛନ୍ତି । ସେଥିପାଇଁ ଉତ୍କଳୀୟମାନେ ତାଙ୍କଠାରେ ଚିରକୃତଜ୍ଞ ରହିବେ । ଏପରି କାଳ ନିର୍ଣ୍ଣୟ କରିବାଦ୍ୱାରା ଉତ୍କଳ ଓ ବଙ୍ଗଳା ପ୍ରଚଳିତ ସାଲର ସମୟ ସମ୍ପୂର୍ଣ୍ଣରୂପେ ନିର୍ଣ୍ଣୀତ ହୋଇଗଲା । ବର୍ତ୍ତମାନ ୧୯୩୩ ଖ୍ରୀଷ୍ଟାବ୍ଦ ବା ୧୩୪୦ସାଲ (ଏହି ପୁସ୍ତକ ରଚନା ସମୟ) ତାହାହେଲେ ବର୍ତ୍ତମାନ ନିଃସନ୍ଦେହରେ କୁହାଯାଇପାରେ ଯେ (୧୯୩୩-୧୩୪୦)=୫୯୩ରେ ଅର୍ଥାତ୍ ଉଦ୍ୟୋତକେଶରୀଙ୍କ ରାଜତ୍ୱର ପ୍ରଥମ ବର୍ଷ ଉତ୍କଳରେ ସାଲ ପ୍ରଚଳିତ ହୋଇଥିଲା । ଭାରତବର୍ଷରେ ବିକ୍ରମାଦିତ୍ୟ (୫୭ଖ୍ରୀଷ୍ଟାବ୍ଦ) ଆନ୍ଧ୍ରରାଜା ସାତବାହନ ୭୮ ଅବ୍ଦରେ, ଶ୍ରୀହର୍ଷ ୬୦୬ ଅବ୍ଦ ପରି ସୋମବଂଶକୁଳତିଳକ ପ୍ରବଳ-ପରାକ୍ରାନ୍ତ-ଉଦ୍ୟୋତକେଶରୀ ୫୯୩ ଅବ୍ଦରେ ଉତ୍କଳୀୟ ସାଲ ପ୍ରଚଳନ କରିଥିଲେ । ତାଙ୍କ ରାଜତ୍ୱର ଅଷ୍ଟାଦଶ ବର୍ଷରେ (ଅର୍ଥାତ୍ (୫୯୩+୧୮)= ୬୧୧ ଖ୍ରୀଷ୍ଟାବ୍ଦରେ ଭୁବନେଶ୍ୱରର ବ୍ରହ୍ମେଶ୍ୱର ମନ୍ଦିର ନିର୍ମିତ ହୋଇଥିଲା । ଆଜିପର୍ଯ୍ୟନ୍ତ ଅଧିକାଂଶ ବିକ୍ରମ ସମ୍ବତ୍ ଗୁପ୍ତାବ୍ଦ ଅନୁସାରେ ଗଣନା କରି ଏହାକୁ ଦଶମ ଶତାବ୍ଦୀର କୀର୍ତ୍ତି ବୋଲି କହୁଥିଲେ । କିନ୍ତୁ ଏହା ସମ୍ପୂର୍ଣ୍ଣ ଭ୍ରମପୂର୍ଣ୍ଣ । ବ୍ରହ୍ମେଶ୍ୱର ଲିପିରୁ ସ୍ପଷ୍ଟ ଜଣାଯାଏ ଯେ ଉଦ୍ୟୋତକେଶରୀ ଅନେକଦେଶ

ଜୟ କରିଥିଲେ । ତାଙ୍କ ରାଜତ୍ୱର ଅଷ୍ଟାଦଶ ବର୍ଷରେ (ଶ୍ରୀମଦୁଦ୍ୟୋତକେଶରୀ ରାଜଦେବସ୍ୟ ବିଜୟରାଜ୍ୟେ ସଂବତ୍ ୧୮ ଫାଲ୍ଗୁନ ସୁଦି । ସୂତ୍ରଧାର ରାୟଙ୍କ ଫାଲ୍ଗୁନ ଶୁକ୍ଳତୃତୀୟାରେ ବ୍ରହ୍ମେଶ୍ୱରମନ୍ଦିର ନିର୍ମାଣ କାର୍ଯ୍ୟ ସମାପ୍ତ ହୋଇଥିଲା । ତାଙ୍କର ମାତା ଏ କୀର୍ତ୍ତି କରିଥିଲେ । 'ଏକାମ୍ରେ ସିଦ୍ଧତୀର୍ଥେ ଚତୁରମଳକୁଳୀ ନାଟ୍ୟଶାଳାସମେତଃ । କୋଲାବତ୍ୟା ତୟୈଷଃକ୍ଷିତିମୁକୁଟନିଭଃକାରିତଃ କୀର୍ତ୍ତିରାଜଃ

*(ବ୍ରହ୍ମେଶ୍ୱର ମନ୍ଦିର ଶିଳାଲେଖ)*

ରାଜା ବ୍ରହ୍ମେଶ୍ୱରରେ ଅନେକ ରମଣୀ ନିଯୁକ୍ତ କରିଥିଲେ । ଏଥିରୁ ଜଣାଯାଏ ଯେ, ସେ ସମୟରେ ମଧ୍ୟ ଉତ୍କଳରେ ଦେବଦାସୀ ପ୍ରଥା ପ୍ରଚଳିତ ଥିଲା । ଏହାର ସମ୍ମୁଖରେ ଥିବା କୁଣ୍ଡ ମଧ୍ୟ ସେ ଖୋଳାଇଥିଲେ । ପୁରାଣମାନଙ୍କ ବର୍ଣ୍ଣନାନୁସାରେ ଏହା ଭୁବନେଶ୍ୱରର ଆଦ୍ୟମନ୍ଦିର । 'ଏକାମ୍ର ପୁରାଣ'ରୁ ଜଣାଯାଏ ଯେ ବ୍ରହ୍ମେଶ୍ୱର ଏକାମ୍ର କାନନର ଆଦ୍ୟମନ୍ଦିର । ଏହି ମନ୍ଦିର ନିର୍ମାଣ ପାଇଁ ବିନ୍ଧ୍ୟ ପର୍ବତରୁ ପଥର ଅଣା ହୋଇଥିଲା । ମନ୍ଦିର ନିର୍ମାଣରେ ଲୋକମାନଙ୍କ ମଧ୍ୟରେ ନାନାବିଧ ମୂଲ୍ୟବାନ ଦ୍ରବ୍ୟ ବଣ୍ଟନ କରାଯାଇଥିଲା ।

**(୨) ମେଘେଶ୍ୱର -**

ମେଘେଶ୍ୱର ଶିଳାଲିପିରୁ ଜଣାଯାଏ ଯେ ସ୍ୱପ୍ନେଶ୍ୱରଦେବ ଗଙ୍ଗବଂଶୀୟ ରାଜାମାନଙ୍କର ଦିଗ୍‌ବିଜୟରେ ସେନାପତିତ୍ୱ କରିଥିଲେ । ବହୁଧନ ବ୍ୟୟକରି ସେ ମେଘେଶ୍ୱରଙ୍କ ମନ୍ଦିର ଓ ପ୍ରାଚୀର ନିର୍ମାଣ କରାଇଥିଲେ ।

"ଭକ୍ତି ପ୍ରହ୍ୱସୁରାସୁରେନ୍ଦ୍ରବିଲସନ୍ମୌଳିସ୍ଫୁରନ୍ନାବଳୀ
ଛାୟା ଶକ୍ରଧନୂଃ ସ୍ଫୁରତ୍‌ଦଳସନ୍ମେଘେଶ୍ୱରସ୍ୟାମୁନା ।
ଉନ୍ନତ୍ୟାଽପରପର୍ବତୋ ବହୁତର ଦ୍ରବ୍ୟବ୍ୟୟଂ କୁର୍ବତା
ପ୍ରାସାଦୋ ରଚିତସ୍ସୁଧାଚ୍ଛବିହସତ୍‌କୈଳାସଶୈଳେଶ୍ୱର ।୨୨।"

*(ମେଘେଶ୍ୱର ମନ୍ଦିର ଶିଳାଲେଖ)*

ସେ ମେଘେଶ୍ୱରଙ୍କ ସେବାରେ ଅପୂର୍ବ ରୂପଲାବଣ୍ୟସଂପନ୍ନା ଅନେକଯୁବତୀ ନିଯୁକ୍ତ କରିଥିଲେ । ମେଘେଶ୍ୱରଙ୍କ ପାଇଁ ସୁରମ୍ୟ ଉପବନ ନିର୍ମାଣ କରିଥିଲେ । ଶିବଭକ୍ତିପରାୟଣ ସେହି ରାଜା ମେଘେଶ୍ୱରଙ୍କ ମନ୍ଦିରନିକଟରେ ଗୋଟିଏ ପୁଷ୍କରିଣୀ ଖୋଳାଇଥିଲେ । ତାହା ବ୍ୟତୀତ ସେ ଅନେକ କୀର୍ତ୍ତି ରଚନା କରିଥିଲେ ।

ଏହି ଲିପିରୁ ଜଣାଯାଏ, ଚୋଡ଼ଗଙ୍ଗଦେବଙ୍କ ପରେ ରାଜରାଜଦେବ ଓ ତାଙ୍କ ପରେ ଅନିୟଙ୍କ ଭୀମଦେବ ରାଜତ୍ୱ କରିଥିଲେ-

'ବୃଦ୍ଧୋଽନୁଜଂ ମନୁଜରାଜନତାଂଘ୍ରିଯୁଗ୍ମଂ
ରାଜ୍ୟେଽଭିଷିକ୍ତମକରୋଦନିୟଙ୍କଭୀମଂ' ।୧୪।

*(ମେଘେଶ୍ୱର ମନ୍ଦିର ଶିଳାଲେଖ)*

ମେଘେଶ୍ୱର ଶିଳାଲିପିରୁ ଜଣାଯାଏ ଯେ, ଗୌତମ ଗୋତ୍ରୀୟ ଅହିରଶଙ୍କରଙ୍କର ସ୍ୱପ୍ନେଶ୍ୱରଦେବ ନାମକ ଗୋଟିଏ ପୁତ୍ର ଓ ସୁରମାଦେବୀ ନାମକ ଗୋଟିଏ କନ୍ୟାଥିଲା । ଚୋଡ଼ଗଙ୍ଗଙ୍କ ପୁତ୍ର ରାଜରାଜଦେବଙ୍କୁ ସୁରମାଦେବୀ ବିବାହ କରିଥିଲେ । କିନ୍ତୁ ଏହି ଲିପିରୁ ମେଘେଶ୍ୱର ମନ୍ଦିର ନିର୍ମାଣର ପ୍ରକୃତବର୍ଷ ଜଣାଯାଉନାହିଁ । ତେବେ ଏଥିରୁ ଜଣାଯାଏ ଉଦୟନ ଏହି ଲିପି ରଚନା କରିଥିଲେ- ମନମୋହନ ଗାଙ୍ଗୁଲି - ଉଦୟନଙ୍କ ସମୟ ନିର୍ଣ୍ଣୟ କରିଛନ୍ତି । ଭାଦୁଡ଼ିବଂଶାବଳୀରୁ ଜଣାଯାଏ ଯେ ସେ କୁଲ୍ଲୁକଭଟ୍ଟ ଓ ମୟୂରଭଟ୍ଟଙ୍କର ସମସାମୟିକ ଥିଲେ । ସେ 'କୁସୁମାଞ୍ଜଳି' ନାମକ ନ୍ୟାୟଗ୍ରନ୍ଥ ରଚନା କରିଥିଲେ । ଗଙ୍ଗାନାଥ ଝାଙ୍କ ମତରେ ଧାରା ବା ତାତ୍ପର୍ଯ୍ୟକାର ଟୀକା 'ତାତ୍ପର୍ଯ୍ୟପରିଶୁଦ୍ଧି' ରଚୟିତା ଉଦୟନ ଲକ୍ଷ୍ମଣ ସେନଙ୍କ ସମୟରେ ଖ୍ୟାତିଲାଭ କରିଥିଲେ । ପୁନଶ୍ଚ ଗାଙ୍ଗୁଲିଙ୍କ ମତରେ ରାଜରାଜଦେବ ୧୧୭୦-୧୧୯୫ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ତାହାହେଲେ ମେଘେଶ୍ୱର ମନ୍ଦିର ତାଙ୍କର ରାଜତ୍ୱ କାଳରେ ବା ଦ୍ୱାଦଶ ଶତାବ୍ଦୀର ଶେଷ ଭାଗରେ ନିର୍ମିତ ହୋଇଥିଲା । ବର୍ତ୍ତମାନ ନିଃସନ୍ଦେହରେ କୁହାଯାଇପାରେ ଯେ, ମେଘେଶ୍ୱର ମନ୍ଦିର ଦ୍ୱାଦଶ ଶତାବ୍ଦୀର ଶେଷଭାଗର କୀର୍ତ୍ତି । ରାଜରାଜଦେବ ୧୧୭୦ ରୁ ୧୧୯୫ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ମେଘେଶ୍ୱର ମନ୍ଦିର ତାଙ୍କର ରାଜତ୍ୱ କାଳରେ ବା ଦ୍ୱାଦଶ ଶତାବ୍ଦୀର ଶେଷ ଭାଗରେ ନିର୍ମିତ ହୋଇଥିଲା ।

## ୩- ଲିଙ୍ଗରାଜ ମନ୍ଦିର

ଲିଙ୍ଗରାଜ ମନ୍ଦିରର ନିର୍ମାଣକାଳ ସମ୍ବନ୍ଧରେ ଭାରତର ଐତିହାସିକମାନଙ୍କ ମଧ୍ୟରେ ଭିନ୍ନଭିନ୍ନ ମତ ଦେଖାଯାଏ । ରାଖାଲଦାସ ବାନାର୍ଜୀ, ମନମୋହନ ଗାଙ୍ଗୁଲି ଓ ଆହୁରି କେତେକ ଐତିହାସିକ ଓ ସେମାନଙ୍କ ପନ୍ଥାନୁସାରୀ ଉତ୍କଳୀୟ ଐତିହାସିକମାନେ ଏହା ନବମ ବା ଦଶମ ଶତାବ୍ଦୀର କୀର୍ତ୍ତି ବୋଲି କହିଥାନ୍ତି । ଅଧିକାଂଶ ସାହେବ ଐତିହାସିକମାନଙ୍କର ମଧ୍ୟ ଏହିମତ । ତେଣୁ ସେଗୁଡ଼ିକ

ଏଠାରେ ଆଲୋଚନା କରିବା ଅନାବଶ୍ୟକ । କାରଣ ସେମାନେ ସ୍ୱଇଚ୍ଛାରେ ମନ୍ଦିର ନିର୍ମାଣ ସମୟ ନିରୂପଣ କରିଛନ୍ତି । ବର୍ତ୍ତମାନ ଆମ୍ଭମାନଙ୍କୁ ମାଦଳାପାଞ୍ଜି, କିମ୍ବଦନ୍ତୀ, ଶିଳାଳିପି ଓ ପୁରାଣମାନଙ୍କ ଉପରେ ନିର୍ଭର କରି ଏହାର ସମୟ ନିର୍ଦ୍ଧାରଣ କରିବାକୁ ହେବ ।

ମାଦଳାପାଞ୍ଜିରେ ବର୍ଣ୍ଣିତ ଥିବା ବିଷୟ ସନ୍ଦେହମୁକ୍ତ ନୁହେଁ, କିନ୍ତୁ ସେଥିରେ ଉତ୍କଳର ପ୍ରଧାନ ମନ୍ଦିରମାନଙ୍କର ନିର୍ମାଣ ସମ୍ବନ୍ଧରେ ଯେଉଁ ଶ୍ଳୋକମାନ ଦିଆହୋଇଛି ତାହା ବିଶ୍ୱାସଯୋଗ୍ୟ ବୋଲି ମନେହୁଏ । କାରଣ ଏମାନଙ୍କ ସହିତ ଶିଳାଳିପିମାନଙ୍କର ବିଶେଷ ସାମଞ୍ଜସ୍ୟ ଅଛି । ମାଦଳାପାଞ୍ଜିରେ ପୁରୀ, କୋଣାର୍କ ଓ ଭୁବନେଶ୍ୱର ମନ୍ଦିରର ନିର୍ମାଣକାଳ ସମ୍ବନ୍ଧରେ ତିନୋଟି ଶ୍ଳୋକ ଦିଆହୋଇଛି । କୋଣାର୍କ ମନ୍ଦିର ସମ୍ବନ୍ଧରେ ଉଲ୍ଲେଖ କରାଯାଇଛି-

'ସପୁତ୍ରନରସିଂହେନ କ୍ଷେତ୍ରେଶ୍ୱରେଣଂ ସୁମତିନା ।
ପ୍ରାସାଦଃ କାରିତୋ ରାଜ୍ଞା ଖକେଦ୍ୱାଦଶକେ ଗତେ ॥'

ଅର୍ଥାତ୍ ୧୨୦୦ ଅବ୍ଦ ବା ୧୨୭୮ ଖ୍ରୀଷ୍ଟାବ୍ଦରେ ଲାଙ୍ଗୁଳା ନରସିଂହଦେବ କୋଣାର୍କର ସୂର୍ଯ୍ୟମନ୍ଦିର ନିର୍ମାଣ କାର୍ଯ୍ୟ ଶେଷ କରିଥିଲେ । ମାଦଳାପାଞ୍ଜି ଅନୁସାରେ ପୁରୀମନ୍ଦିର ୧୧୯୮ ଖ୍ରୀଷ୍ଟାବ୍ଦରେ ଅନଙ୍ଗଭୀମଦେବଙ୍କ ରାଜତ୍ୱ ସମୟରେ ସମାପ୍ତ ହୋଇଥିଲା । ଲିଙ୍ଗରାଜଙ୍କ ମନ୍ଦିର ନିର୍ମାଣ ସମ୍ବନ୍ଧରେ ଗୋଟିଏ ଶ୍ଳୋକ ଏଥିରେ ପ୍ରଦତ୍ତ ହୋଇଛି -

'ଗଜାଷ୍ଟେଷୁମିତେ ଜାତେ ଶକାବ୍ଦେ କୀର୍ତ୍ତିବାସସଃ
ପ୍ରାସାଦମକରୋଦ୍‌ରାଜା ଲଲାଟେନ୍ଦୁକେଶରୀ ।'

ଅର୍ଥାତ୍, ଗଜ(୮), ଅଷ୍ଟ(୮), ଇଷୁ(୫) ବା ୫୮୮ଶକାବ୍ଦ ବା ୬୬୬ ଖ୍ରୀଷ୍ଟାବ୍ଦରେ ଲଲାଟେନ୍ଦୁ କେଶରୀ ଭୁବନେଶ୍ୱର ମନ୍ଦିର ନିର୍ମାଣକାର୍ଯ୍ୟ ଶେଷ କରିଥିଲେ । ଏହି ଶ୍ଳୋକ ବର୍ତ୍ତମାନ ଭୁବନେଶ୍ୱରରେ କିମ୍ବଦନ୍ତୀ ରୂପେ ପ୍ରଚଳିତ । ନରସିଂହଦେବଙ୍କ ତାମ୍ରଶାସନରୁ ମଧ୍ୟ ଏ କଥା ଜଣାଯାଏ । କୋଣାର୍କ ମନ୍ଦିରରୁ ଗୋଟିଏ ଶିଳାଳିପି ମିଳିଥିଲା । ସେଥିରୁ ଜଣାଯାଏ ଯେ ୧୨୭୮ ଖ୍ରୀଷ୍ଟାବ୍ଦରେ କୋଣାର୍କ ମନ୍ଦିର କାର୍ଯ୍ୟ ସମାପ୍ତ ହୋଇଥିଲା । ମନ୍ଦିରରେ ନିଯୁକ୍ତ ହୋଇଥିବା କର୍ମଚାରୀ ଓ ମିସ୍ତ୍ରୀମାନଙ୍କ ନାମ ସେଥିରୁ ଜଣାଯାଏ । ତାହାହେଲେ, 'ମାଦଳାପାଞ୍ଜି' ଶ୍ଳୋକ ସମ୍ପୂର୍ଣ୍ଣ ସତ୍ୟ, ଏଥିରେ

କୌଣସି ସନ୍ଦେହ ନାହିଁ । ପୁରୀ ମନ୍ଦିରର ନିର୍ମାଣ କାର୍ଯ୍ୟ ପ୍ରଥମେ ଚୋଳଗଙ୍ଗଦେବ ଆରମ୍ଭ କରିଥିଲେ । କିନ୍ତୁ ଅନଙ୍ଗଭୀମଦେବଙ୍କ ଦ୍ୱାରା ସମାପ୍ତ ହୋଇଥିଲା । 'ମାଦଳା ପାଞ୍ଜି'ରେ ଏ ବିଷୟରେ ଗୋଟିଏ ଶ୍ଳୋକ ଦିଆଯାଇଛି-

"ଅଙ୍କ କ୍ଷୌଣୀ ଶଶାଙ୍କେଂନ୍ଦୁରୂପାନକ୍ଷତ୍ରନାୟକେ
ପ୍ରାସାଦଃ କାରିତୋ ରାଜ୍ଞାନଙ୍ଗଦେବେନ ଧୀମତା ।"

ଏହା ସତ୍ୟ ବୋଲି ନିର୍ଦ୍ଧାରିତ ହୋଇଛି । ଏପରି ଅବସ୍ଥାରେ ଭୁବନେଶ୍ୱର ମନ୍ଦିର ସମ୍ବନ୍ଧରେ ରଚିତ ଶ୍ଳୋକ ଯେ କାହିଁକି ମିଥ୍ୟାହେବ ତାହା ଜଣାଯାଉନାହିଁ ।

ଲଲାଟେନ୍ଦୁ କେଶରୀଙ୍କ ନାମ ଉତ୍କଳରେ ସମସ୍ତେ ଜାଣନ୍ତି । କେତେକ ଏହାକୁ ଗୋଟିଏ କାଳ୍ପନିକ ନାମ ବୋଲି ଉଡ଼ାଇ ଦିଅନ୍ତି । କିନ୍ତୁ ଏପରି ସର୍ବଜନପ୍ରଚଳିତ କିମ୍ବଦନ୍ତୀ ମିଥ୍ୟା ନୁହେଁ ବୋଲି ମୋର ମନେହୁଏ । ଏହି କିମ୍ବଦନ୍ତୀର ରହସ୍ୟ ଭେଦକରିବା ସହଜ ନୁହେଁ । ଲଲାଟେନ୍ଦୁ କେଶରୀଙ୍କ ବିଷୟରେ ସାମାନ୍ୟ ଆଲୋଚନା କରିବା ଆବଶ୍ୟକ । ମୋର ମତ ବିଜ୍ଞ ଐତିହାସିକ ମାନେ ଗ୍ରହଣ କରିପାରନ୍ତି ବା ନ କରି ପାରନ୍ତି, କିନ୍ତୁ ମୋର ଦୃଢବିଶ୍ୱାସ ଲଲାଟେନ୍ଦୁ ଭୁବନେଶ୍ୱରର ଲିଙ୍ଗରାଜମନ୍ଦିର ନିର୍ମାଣ କରିଥିଲେ ।

ଖଣ୍ଡଗିରିରେ ଗୋଟିଏ ଗୁମ୍ଫାକୁ ଅଦ୍ୟାପି ଲୋକେ ଲଲାଟେନ୍ଦୁ ଗୁମ୍ଫା ବୋଲି କହନ୍ତି । ଏଥିରେ ଉଦ୍ୟୋତକେଶରୀଙ୍କ ରାଜତ୍ୱର ପଞ୍ଚମ ବର୍ଷରେ କୁମାରଗିରିରେ ଥିବା ଜୀର୍ଣ୍ଣ ବାପୀ ଓ ମନ୍ଦିରମାନଙ୍କର ସଂସ୍କାର ହୋଇଥିଲା । ଖଣ୍ଡଗିରିର ଗୋଟିଏ ଗୁମ୍ଫାରେ ଜୈନ ତୀର୍ଥଙ୍କରମାନଙ୍କର ବିଗ୍ରହ ସ୍ଥାପିତ ହୋଇଥିଲା । ଏଥିରୁ ଜଣାଯାଏ ଯେ, ଉଦ୍ୟୋତକେଶରୀ ଜୈନଧର୍ମ ପ୍ରତି ମଧ୍ୟ ସାମ୍ୟଭାବ ପ୍ରଦର୍ଶନ କରୁଥିଲେ ଓ ଖଣ୍ଡଗିରିରେ ଅନେକ ଜୈନକୀର୍ତ୍ତି ନିର୍ମାଣ କରିଥିଲେ । ଖଣ୍ଡଗିରିରେ ଗୋଟିଏ ଗୁମ୍ଫାରେ ଲଲାଟେନ୍ଦୁ କେଶରୀ ରାଣୀଙ୍କ ସହିତ ବାସ କରୁଥିଲେ । ଦ୍ୱିତଳପ୍ରାସାଦ ବିଶିଷ୍ଟ ସେହି ବିରାଟ ଗୁମ୍ଫା ରାଣୀହଂସପୁର ବା ରାଣୀନଅର ନାମରେ ଖ୍ୟାତ । ପୁନଶ୍ଚ ରାଣୀ ହଂସପୁରଠାରୁ ଲିଙ୍ଗରାଜମନ୍ଦିର ପର୍ଯ୍ୟନ୍ତ ଗୋଟିଏ ସଡ଼କ ଥିଲା । ସେହି ପଥରେ ପ୍ରତିଦିନ ଲଲାଟେନ୍ଦୁ କେଶରୀ ଲିଙ୍ଗରାଜମହାପ୍ରଭୁଙ୍କୁ ଦର୍ଶନ କରିବାକୁ ଆସୁଥିଲେ । ଅଦ୍ୟାପି ଗଣ୍ଡମୁଣ୍ଡା ନିକଟରୁ ଉଦୟଗିରି ପର୍ଯ୍ୟନ୍ତ ଏହି ରାସ୍ତାର ଭଗ୍ନାବଶେଷ ଦେଖାଯାଏ । ଗଣ୍ଡମୁଣ୍ଡା ଶଙ୍ଖ ନିକଟରେ ଗୋଟିଏ ପ୍ରାଚୀନ ମୃତ୍ତିକା

ଗଡ଼ର ଭଗ୍ନାବଶେଷ ଦେଖାଯାଏ । ଲଲାଟେନ୍ଦୁଙ୍କୁ ରକ୍ଷା କରିବା ପାଇଁ ଏଠାରେ ସୈନ୍ୟସାମନ୍ତ ରହୁଥିଲେ ବୋଲି ଅଦ୍ୟାପି ଭୁବନେଶ୍ୱରର ଲୋକେ କହନ୍ତି । ଗଣ୍ଡମୁଣ୍ଡା ଶଙ୍ଖଠାରୁ ଗୋଟିଏ ପାଣିନାଳ ଭୁବନେଶ୍ୱର ପର୍ଯ୍ୟନ୍ତ ନିର୍ମିତ ହୋଇଥିଲା । ଏହି ନାଳର ଭଗ୍ନାବଶେଷ ଅଦ୍ୟାପି କନିକାରାଜାଧିକୃତ ଭୁବନେଶ୍ୱର ଟାଙ୍ଗୀରେ ଦେଖାଯାଏ । ଏହି ରାସ୍ତା ନିକଟରେ ଜଗତୀମୁଣ୍ଡିଆ ଥିଲା । ଏହା ଭୁବନେଶ୍ୱରର ଉଚ୍ଚତମ ସ୍ଥାନ । ଏହା ସୈନ୍ୟଛାଉଣୀ ବୋଲି ପ୍ରବୀଣ ବୃଦ୍ଧମାନେ କହନ୍ତି ଓ ଏହାର ଗଠନ ଦେଖିଲେ କିମ୍ବଦନ୍ତୀ ସତ୍ୟ ବୋଲି ମନେହୁଏ । ଆମ ଗ୍ରାମର ମହାରଣା (ଶିଳ୍ପୀ)ମାନେ କହନ୍ତି ଉକ୍ତ ରାସ୍ତାରେ ଭୁବନେଶ୍ୱର ମନ୍ଦିର ନିର୍ମାଣ ହେବାପାଇଁ ଖଣ୍ଡଗିରି ନିକଟରୁ ପଥର ଅଣାହେଉଥିଲା । ଆଜିସୁଦ୍ଧା ଲିଙ୍ଗରାଜଙ୍କ କୁଣ୍ଡ ନିକଟରେ ଥିବା ପାହାଡ଼କୁ ଖଣ୍ଡଗିରିପାହାଡ଼ ବୋଲି କହନ୍ତି । ଲିଙ୍ଗରାଜମନ୍ଦିର ନିର୍ମାଣପାଇଁ ମନ୍ଦିରଠାରୁ ପ୍ରାୟ ସହସ୍ରହସ୍ତ ଦୂରରୁ ଲିଙ୍ଗରାଜ ମନ୍ଦିରପର୍ଯ୍ୟନ୍ତ ଗୋଟିଏ ଚାର ବା ମାଟିରାସ୍ତା ନିର୍ମିତ ହୋଇଥିଲା । ଚାରର ଆରମ୍ଭ ସ୍ଥାନରେ ଅଦ୍ୟାପି ଚାରନାରାୟଣୀନାମକ ଠାକୁରାଣୀଙ୍କର ମନ୍ଦିର ଅଛି । ଭୁବନେଶ୍ୱର ଡାକ୍ତରଖାନା ଓ ମାଇନରସ୍କୁଲ ନିକଟରେ ଥିବା ମାଟିସ୍ତୂପ ଏହି ଚାରର ଭଗ୍ନାବଶେଷ । ଲଲାଟେନ୍ଦୁ କେଶରୀ ଲିଙ୍ଗରାଜଙ୍କ ମନ୍ଦିର ନିକଟରେ ସାତସାହି ଓ ବୟାଳିଶ ବିଶିଷ୍ଟ ଗୋଟିଏ ବଡ଼ ଗ୍ରାମ ବସାଇଥିଲେ ବୋଲି ସ୍ଥାନୀୟ କିମ୍ବଦନ୍ତୀ ପ୍ରଚଳିତ ଅଛି । ରାମେଶ୍ୱର ନିକଟରେ ଏକ ଗଡ଼ ଯଯାତିକେଶରୀଙ୍କଦ୍ୱାରା ନିର୍ମିତ ହୋଇଥିଲା, କିନ୍ତୁ ଏହା ଲିଙ୍ଗରାଜ ମନ୍ଦିରଠାରୁ ଦୂରବର୍ତ୍ତୀ ହୋଇଥିବାରୁ ସେ ଲିଙ୍ଗରାଜମନ୍ଦିରର ଦକ୍ଷିଣ ଦ୍ୱାର ନିକଟରେ ଗୋଟିଏ ଗଡ଼ ନିର୍ମାଣ କରିଥିଲେ । ସେହି ଗଡ଼ର ଭଗ୍ନାବଶେଷ ଅଦ୍ୟାପି ବିଦ୍ୟମାନ । ପୁନଶ୍ଚ କିମ୍ବଦନ୍ତୀରୁ ଜଣାଯାଏ, ସେ ଭୁବନେଶ୍ୱର ନିକଟରେ ଅଷ୍ଟଶମ୍ଭୁ ପ୍ରତିଷ୍ଠା କରିଥିଲେ । ଲଲାଟେନ୍ଦୁଙ୍କ ତିନିପୁରୁଷ ପୂର୍ବରୁ ଲିଙ୍ଗରାଜ ମନ୍ଦିରର ମୂଳପତ୍ତନ ପଡ଼ିଥିଲା ଓ ଲଲାଟେନ୍ଦୁକେଶରୀ ଦେଉଳମୁଣ୍ଡି ମାରିଥିବାର ସ୍ଥାନୀୟ ମହାରଣାମାନେ କହନ୍ତି । କେବଳ ଭୁବନେଶ୍ୱର ଅଞ୍ଚଳରେ ଏହିପରି ବହୁ କିମ୍ବଦନ୍ତୀ ପ୍ରଚଳିତ ଅଛି । ଅନ୍ୟ କୌଣସି ଅଞ୍ଚଳରେ ଯେ ଲଲାଟେନ୍ଦୁକେଶରୀଙ୍କ ବିଷୟରେ ଆହୁରି ଯେ ଅନେକ କିମ୍ବଦନ୍ତୀ ପ୍ରଚଳିତ ନ ଥିବ ତାହା କିଏ କହିବ ?

ପୁନଶ୍ଚ କିମ୍ବଦନ୍ତୀ ଅନୁସାରେ ମନ୍ଦିର ନିର୍ମାଣ କରିବା ପାଇଁ ୪୩ବର୍ଷ ଲାଗିଥିଲା । ଷ୍ଟର୍ଲିଂସାହେବ ଖଣ୍ଡଗିରିରୁ ଲଲାଟେନ୍ଦୁକେଶରୀଙ୍କ ସମ୍ବନ୍ଧରେ ଅନେକ ଗଳ୍ପ ଶୁଣିଥିଲେ । ତାଙ୍କ ରାଣୀ ବୌଦ୍ଧଧର୍ମ ପ୍ରତି ଆସକ୍ତ ଥିଲେ । ତେଣୁ ସେ ନାନା

ପ୍ରକାର ଦୁଃଖ ଦୁର୍ଦ୍ଦଶା ଭୋଗ କରିଥିଲେ । ପରିଶେଷରେ ସେ ସ୍ୱଧର୍ମ (ହିନ୍ଦୁଧର୍ମ)ରେ ନିଜର ବିଶ୍ୱାସ ସ୍ଥାପନ କରିଥିଲେ । ତାଙ୍କର ଧର୍ମ ପରିବର୍ତ୍ତନ ସମ୍ବନ୍ଧରେ ଅନେକ ଗଳ୍ପ ଶୁଣାଯାଏ । କେଶରୀବଂଶୀୟ ରାଜାମାନଙ୍କ ମଧ୍ୟରୁ କେବଳ ଉଦ୍ୟୋତକେଶରୀ ଜୈନଧର୍ମ ପ୍ରତି ଶ୍ରଦ୍ଧା ପ୍ରଦର୍ଶନ କରିଥିଲେ । ତାଙ୍କମାତା କୋଳାବତୀ ଶୈବଧର୍ମର ପ୍ରଧାନ ପୃଷ୍ଠପୋଷକ ଥିଲେ । ତାଙ୍କର ପିତା ମଧ୍ୟ ପ୍ରଧାନ ଶୈବଥିଲେ । ସମ୍ଭବତଃ ତାଙ୍କର ସ୍ତ୍ରୀଙ୍କ ଯୋଗୁ ସେ ଜୈନଧର୍ମ ପ୍ରତି ଏପରି ସାମ୍ୟ ପ୍ରଦର୍ଶନ କରିଥିଲେ । ସ୍ତ୍ରୀଙ୍କ ମତାନୁସାରେ ଅନେକ ସମୟରେ ନିଜର ମତପରିବର୍ତ୍ତନ କରିବାକୁ ହୋଇଥାଏ । ସ୍ତ୍ରୀ ଓ ସ୍ୱାମୀ ମଧ୍ୟରେ ମତ ପାର୍ଥକ୍ୟ ଅନେକ ସମୟରେ ଦେଖାଯାଏ । ମାଦଳାପାଞ୍ଜିରୁ ଜଣାଯାଏ ଏକଜଟା କାମଦେବଙ୍କ ସ୍ତ୍ରୀ ବୌଦ୍ଧଧର୍ମ ପ୍ରତି ବିଶେଷ ଶ୍ରଦ୍ଧା ପ୍ରଦର୍ଶନ କରୁଥିଲେ ।

ଶିଶୁପାଳଗଡ଼ ଓ ଚଣ୍ଡେଶ୍ୱରରେ ମଧ୍ୟ ଲଲାଟେନ୍ଦୁକେଶରୀଙ୍କ ସମ୍ବନ୍ଧରେ ପ୍ରବାଦମାନ ପ୍ରଚଳିତ ଅଛି । ନାଗାର୍ଜୁନକୋଣ୍ଡାରୁ ଆବିଷ୍କୃତ ଲିପିରୁ ଜଣାଯାଏ ଦାକ୍ଷିଣାତ୍ୟର ରାଜାମାନେ ବ୍ରାହ୍ମଣ୍ୟଧର୍ମାବଲମ୍ବୀ ଥିଲେ ଓ ଅନେକ ବୈଦିକଯଜ୍ଞ ସଂପନ୍ନ କରିଥିଲେ । କିନ୍ତୁ ସେମାନଙ୍କର ସ୍ତ୍ରୀମାନେ ବୌଦ୍ଧ ଧର୍ମପ୍ରତି ଆସକ୍ତ ଥିଲେ । ଉଦ୍ୟୋତକେଶରୀ ଯେ ଲଲାଟେନ୍ଦୁ କେଶରୀ ଏଥିରେ ସନ୍ଦେହ କରିବାର କୌଣସି କାରଣ ନାହିଁ । ସେ କୃଷ୍ଣାନଦୀ ନିକଟରେ ନାଗାର୍ଜୁନ ପର୍ବତରେ ଅସଂଖ୍ୟ ବୌଦ୍ଧକୀର୍ତ୍ତି ନିର୍ମାଣ କରିଥିଲେ ।

ପୁନଶ୍ଚ ଲଲାଟେନ୍ଦୁକେଶରୀଙ୍କ ସମୟର ଆହୁରି ଗୋଟିଏ କିମ୍ବଦନ୍ତୀ ଶୁଣାଯାଏ । ଆମ୍ଭର ଗ୍ରାମର ସ୍ୱପ୍ନେଶ୍ୱର ଗରାବଡୁ ନାମକ ଜଣେ ବ୍ୟକ୍ତି ବହୁ କିମ୍ବଦନ୍ତୀ ଜାଣିଥିଲେ । ତାଙ୍କ ମତରେ ଲଲାଟେନ୍ଦୁକେଶରୀ ମାନବ ନୁହନ୍ତି ସେ ଦେବୋଦ୍ଭବ । ଶିବଙ୍କ ଲଲାଟରୁ ଗୋଟିଏ ଜ୍ୟୋତିର୍ମୟ ରୂପ ସୃଷ୍ଟି ହେଲା । ସେହି ଜ୍ୟୋତିର୍ମୟ ପୁରୁଷ ଶିବଙ୍କୁ ନିଜର ଜନ୍ମର ଉଦ୍ଦେଶ୍ୟ ପଚାରିବାରୁ, ସେ କହିଲେ "ତୁମେ ମୋ' ପାଇଁ ଗୋଟିଏ ସୁନ୍ଦର ମନ୍ଦିର ନିର୍ମାଣ କର ।" ସେ ବହୁ ଅର୍ଥ ବ୍ୟୟକରି ଏହି ମନ୍ଦିର ନିର୍ମାଣ କରିଥିଲେ । ତେଣୁ ଲଲାଟେନ୍ଦୁକେଶରୀ ଉଦ୍ୟୋତକେଶରୀଙ୍କ କାଳ୍ପନିକ ନାମ ହୋଇଥିବା ସମ୍ଭବପର ।

ଗଡ଼ଜାତ ଅଞ୍ଚଳରେ ଲଲାଟେନ୍ଦୁଙ୍କ ସମ୍ବନ୍ଧରେ ଆହୁରି କେତେକ କିମ୍ବଦନ୍ତୀ ପ୍ରଚଳତି ଅଛି । ପାଟଣା ରାଜ୍ୟର ଟିଟିଳାଗଡ଼ର ୨୨ମାଇଲ ଦୂରବର୍ତ୍ତୀ ରାଣୀପୁର

ଓ ଝରିଆଳରେ ବହୁତ ପ୍ରାଚୀନକୀର୍ତ୍ତିର ନମୁନା ରହିଛି । ଲଲାଟେନ୍ଦୁ ଅନେକ ସମୟରେ ରାଣୀପୁରରେ ରହୁଥିଲେ ବୋଲି କିମ୍ବଦନ୍ତୀ ପ୍ରଚଳିତ ଅଛି । ଏଠାରେ ଗୋଟିଏ ସ୍ତମ୍ଭ ଅଛି । ଏହି ସ୍ତମ୍ଭଟି ୩୩ଫୁଟ ଲମ୍ବବିଶିଷ୍ଟ । ଜଣେ ରାଜାଙ୍କ ସମ୍ବନ୍ଧରେ ଏହିପରି ଅନେକ କିମ୍ବଦନ୍ତୀ ପ୍ରଚଳିତ ଥିବାରୁ ଲଲାଟେନ୍ଦୁନାମକ ଜଣେ ରାଜା ଥିବା ସଂପୂର୍ଣ୍ଣ ସମ୍ଭବପର ।

ପୂର୍ବେ ଜଣେ ରାଜାଙ୍କର ଦୁଇ ତିନିଟି ନାମ ଥିବାର ଜଣାଯାଏ । ଚୋଡଗଙ୍ଗଙ୍କର ଅନ୍ୟନାମ ଚୋଳଗଙ୍ଗ, ଚୁଡଙ୍ଗ, ଗଙ୍ଗେଶ୍ୱର ଇତ୍ୟାଦି । ସେହିପରି ଏକଜଟା କାମଦେବ ନାମାନ୍ତର ମାତ୍ର । ତେଣୁ ଲଲାଟେନ୍ଦୁକେଶରୀ କୌଣସି ରାଜାଙ୍କର ଲୋକପ୍ରଚଳିତ ନାମଥିବାର ଜଣାଯାଏ । ଇତିହାସ ଅନୁଶୀଳନରୁ ଜଣାଯାଏ ଯେ ଅନେକରାଜାଙ୍କର 'ଡ଼ାକନାମ' ଠାରୁ ଶିଳାଲିପି ଓ ଦାନପତ୍ରଲିଖିତ ନାମ ଭିନ୍ନ । ଲଲାଟେନ୍ଦୁଙ୍କର ଅନ୍ୟ ନାମ ଲଳିତକେଶରୀ, ଲଳିତେନ୍ଦ୍ରକେଶରୀ ଓ ଅଲାବୁକେଶରୀ । ତାଙ୍କ ସମ୍ବନ୍ଧରେ ଯେଉଁ କିମ୍ବଦନ୍ତୀ ପ୍ରଚଳିତ ଅଛି ସେଥିରୁ ଜଣାଯାଏ, ଲଲାଟେନ୍ଦୁକେଶରୀ ମନୁଷ୍ୟ ପୃଷ୍ଠରେ ଆରୋହଣ କରି (ଲାଭହୋଇ) ଖଣ୍ଡଗିରିରୁ ପ୍ରତ୍ୟହ ଲିଙ୍ଗରାଜ ଦର୍ଶନ କରିବାକୁ ଆସୁଥିଲେ । ଭୁବନେଶ୍ୱରରେ ପ୍ରଚଳିତ ସମସ୍ତ କିମ୍ବଦନ୍ତୀରୁ ଜଣାଯାଏ ଯେ, ଲଲାଟେନ୍ଦୁକେଶରୀଙ୍କ ସହିତ ଖଣ୍ଡଗିରିର ସଂପର୍କ ବିଶେଷ ଘନିଷ୍ଠ ଥିଲା । କେଶରୀବଂଶୀୟ ରାଜାମାନଙ୍କ ମଧ୍ୟରୁ କେବଳ ଉଦ୍ୟୋତକେଶରୀଙ୍କ ଖଣ୍ଡଗିରି ସହିତ ବିଶେଷ ସଂପର୍କ ଥିଲା । ଆଜି ପର୍ଯ୍ୟନ୍ତ ଅନ୍ୟକୌଣସି କେଶରୀବଂଶୀୟ ରାଜାଙ୍କର ଲିପି ଖଣ୍ଡଗିରିରୁ ଆବିଷ୍କୃତ ହୋଇନାହିଁ । ଖଣ୍ଡଗିରିର ଲଲାଟେନ୍ଦୁ ଗୁମ୍ଫାରେ ଥିବା ଲିପି ବିଷୟ ପୂର୍ବରୁ ବର୍ଣ୍ଣିତ ହୋଇଛି । ଉଦ୍ୟୋତକେଶରୀଙ୍କ ଖୋଦିତ ଗୁମ୍ଫା ଲଲାଟେନ୍ଦୁଗୁମ୍ଫା ବୋଲି ଜନପ୍ରିୟ ଲୌକିକ ନାମ । ଖଣ୍ଡଗିରିର ନବମୁନି ଗୁମ୍ଫାରେ ଉଦ୍ୟୋତ କେଶରୀଙ୍କ ୧୯ ସମ୍ବତ୍‌ର ଗୋଟିଏ ଲିପି ଅଛି । ସେଥିରୁ ଜଣାଯାଏ ଯେ, ଆଚାର୍ଯ୍ୟ କୁଳଚନ୍ଦ୍ରଙ୍କ ଶିଷ୍ୟ ଶୁଭଚନ୍ଦ୍ର ଉକ୍ତ ବର୍ଷ ଖଣ୍ଡଗିରିକୀର୍ତ୍ତି ଦେଖିବା ପାଇଁ ଆସିଥିଲେ । ବ୍ରହ୍ମେଶ୍ୱର ମନ୍ଦିରରୁ ମଧ୍ୟ ଉଦ୍ୟୋତ କେଶରୀଙ୍କ ୧୮ ସମ୍ବତ୍ ଫାଲ୍ଗୁନ ଶୁକ୍ଳ ତୃତୀୟାରେ ଲିଖିତ ଗୋଟିଏ ଶିଳାଲିପି ମିଳିଅଛି । ଭୁବନେଶ୍ୱର ଅଞ୍ଚଳରୁ ଆହୁରି ଅନେକ ଲିପି ଅଦ୍ୟାବଧି ଅପ୍ରକାଶିତ ଅବସ୍ଥାରେ ଅଛି ବୋଲି ମନେହୁଏ । ଅନ୍ୟ କୌଣସି କେଶରୀବଂଶୀୟ ରାଜାଙ୍କର ନାମ ଲୋକମାନେ ମନେରଖି ନାହାନ୍ତି ।

ଭୁବନେଶ୍ୱର ଅଞ୍ଚଳର ବିଜ୍ଞ ବୃଦ୍ଧମାନେ ଅଦ୍ୟାପି ଅଶୋକ ଏବଂ ରାଜାମାନଙ୍କ ସମ୍ବନ୍ଧରେ ଅନେକ କିମ୍ବଦନ୍ତୀ କହନ୍ତି । ବର୍ତ୍ତମାନ ଶିଳାଲିପି ଓ ଅନେକ ପ୍ରାଚୀନ ଗ୍ରନ୍ଥ ଆଲୋଚନାରୁ ମୁଁ ସଂପୂର୍ଣ୍ଣରୂପେ ବୁଝିପାରିଛି ଯେ କିମ୍ବଦନ୍ତୀଗୁଡ଼ିକ ସଂମ୍ପୂର୍ଣ୍ଣ ସତ୍ୟ ନ ହେଲେ ମଧ୍ୟ ତାହାର ସାରାଂଶ ସତ୍ୟ । ଏପରି ଅବସ୍ଥାରେ ଭୁବନେଶ୍ୱର ଅଞ୍ଚଳରେ ପ୍ରଚଳିତ ଏତେଗୁଡିଏ କିମ୍ବଦନ୍ତୀ ବିଶ୍ୱାସଯୋଗ୍ୟ ନୁହେଁ ବୋଲି ଉଡ଼ାଇ ଦେବା ସମ୍ଭବ ନୁହେଁ ।

ଭୁବନେଶ୍ୱରର ବୃଦ୍ଧ ବ୍ରାହ୍ମଣ ପଣ୍ଡିତ ଓ ସୁଦକ୍ଷ ଶିଳ୍ପୀମାନେ କହନ୍ତି ଯେ, ଭୁବନେଶ୍ୱର ଦେଉଳ ୧୩୦୦ ବର୍ଷର କାର୍ତ୍ତି । ବ୍ରହ୍ମେଶ୍ୱରମନ୍ଦିର ସମୟ ନିରୂପଣ ସମୟରେ କୁହାଯାଇଛି ଯେ, ଦ୍ୱିତୀୟ ଯଯାତିଙ୍କ ପୁତ୍ର ଉଦ୍ୟୋତକେଶରୀ ୫୯୩ ଖ୍ରୀଷ୍ଟାବ୍ଦଠାରୁ ରାଜତ୍ୱ ଆରମ୍ଭ କରିଥିଲେ । ତାହା ହେଲେ ଭୁବନେଶ୍ୱର ମନ୍ଦିର ସମ୍ବନ୍ଧରେ ପ୍ରଚଳିତ ଥିବା କିମ୍ବଦନ୍ତୀ ସତ୍ୟ ବୋଲି ମନେ ହୁଏ । ଏହି ସମସ୍ତ କାରଣରୁ ମୋର ଦୃଢ଼ ଧାରଣା ହୋଇଛି, ଲଲାଟେନ୍ଦୁ କେଶରୀ ଉଦ୍ୟୋତ କେଶରୀଙ୍କର ନାମାନ୍ତର ମାତ୍ର । ମାଦଳାପାଞ୍ଜିରୁ ଜଣାଯାଏ ଯେ, ଖ୍ରୀଷ୍ଟୀୟ ୬୬୬ ଅବ୍ଦରେ ଲିଙ୍ଗରାଜ ମନ୍ଦିରର ବିମାନ ଓ ଜଗମୋହନ ନିର୍ମାଣକାର୍ଯ୍ୟ ସମାପ୍ତ ହୋଇଥିଲା । ଏହା ଯଦି ସତ୍ୟ ହୁଏ ତାହା ହେଲେ ଲଲାଟେନ୍ଦୁକେଶରୀ (୭+୬୬=୭୩) ବର୍ଷ ରାଜତ୍ୱ କରିଥିଲେ ।

ଏହା ଅନୁମାନ ମାତ୍ର, କାରଣ ତାଙ୍କର ଦୀର୍ଘ ରାଜତ୍ୱର ପ୍ରମାଣସ୍ୱରୂପ କୌଣସି ଶିଳାଲିପି ଅଦ୍ୟାବଧି ମିଳିନାହିଁ । ପୃଥିବୀ ଇତିହାସର ପୃଷ୍ଠା ଲେଉଟାଇଲେ ଏପରି ଦୀର୍ଘ ରାଜତ୍ୱର ଅନେକ ଉଦାହରଣ ମିଳିପାରେ । ଉତ୍କଳରେ ଗଙ୍ଗବଂଶର ପ୍ରଥମ ପ୍ରତିଷ୍ଠାତା ଚୂଡ଼ଙ୍ଗଦେବ ୯୯୯ ଶକାବ୍ଦ ବା ୧୦୭୭ ଖ୍ରୀଷ୍ଟାବ୍ଦଠାରୁ ୧୧୪୭ଖ୍ରୀ. ପର୍ଯ୍ୟନ୍ତ ୭୦ବର୍ଷ ରାଜତ୍ୱ କରିଥିଲେ । ଭୁବନେଶ୍ୱର ପରି ବିରାଟ ଶିବମନ୍ଦିର ନିର୍ମାଣ କରିବାପାଇଁ ଅନେକ ସମୟ ଲାଗିଥିବ । କୋଣାର୍କର ସୂର୍ଯ୍ୟ ମନ୍ଦିର ନିର୍ମାଣ ପାଇଁ ୧୨୦୦ ଶିଳ୍ପୀଙ୍କୁ ୧୬ବର୍ଷ ଲାଗିଥିଲା ଓ ଏଥିରେ ଅପରିମିତ ସ୍ୱର୍ଣ୍ଣ ବ୍ୟୟିତ ହୋଇଥିଲା । ପୁରୀର ଜଗନ୍ନାଥଙ୍କ ମନ୍ଦିର ଚୋଡ଼ଗଙ୍ଗ ଦେବଙ୍କ ସମୟରେ ଆରମ୍ଭ ହୋଇ ଅନଙ୍ଗଭୀମଦେବଙ୍କ ସମୟରେ ସମାପ୍ତ ହୋଇଥିଲା । ଏଥିରେ ମଧ୍ୟ ଅଜସ୍ର ସ୍ୱର୍ଣ୍ଣ ବ୍ୟୟିତ ହୋଇଥିଲା । ଲିଙ୍ଗରାଜଙ୍କ ବିମାନ ଓ ଜଗମୋହନ ପୁରୀର ମୋହନ ଓ ବିମାନଠାରୁ ଅନେକାଂଶରେ ସୁନ୍ଦର ଓ ଏହାର ପୀଠର ଆୟତନ

ଅଧିକ । ପୂର୍ବୋକ୍ତ ଦୁଇଜଣ ରାଜା ଅସୀମ ପରାକ୍ରମଶାଳୀ ଥିଲେ ଓ ସେମାନଙ୍କ ରାଜ୍ୟ ଉଦ୍ୟୋତକେଶରୀ ବା ଲଲାଟେନ୍ଦୁକେଶରୀଙ୍କ ରାଜ୍ୟଠାରୁ ବହୁତ ବଡ଼ ଥିଲା । ତେଣୁ ସେମାନେ ଅତି ଅଳ୍ପ ସମୟରେ ବହୁ ଧନଜନ ସଂଗ୍ରହ କରିପାରିଥିବେ । ମାଦଳାପାଞ୍ଜିରୁ ଜଣାଯାଏ, କେଶରୀବଂଶୀୟ ରାଜାମାନଙ୍କର ରାଜ୍ୟ ସୁବର୍ଣ୍ଣରେଖାଠାରୁ ଋଷିକୁଲ୍ୟା ନଦୀପର୍ଯ୍ୟନ୍ତ ବିସ୍ତୃତ ଥିଲା ଓ ଏଠାରୁ ୧୫ଲକ୍ଷ ମାତ୍ର ସ୍ୱର୍ଣ୍ଣମୁଦ୍ରା ଆଦାୟ ହେଉଥିଲା । ଏପରି ଅବସ୍ଥାରେ ଅଳ୍ପ ଧନ ଓ ଅଳ୍ପ ଜନ ସାହାଯ୍ୟରେ ପୁରୀର ଜଗନ୍ନାଥ ମନ୍ଦିର ତୁଲ୍ୟ ବିରାଟ ଲିଙ୍ଗରାଜମନ୍ଦିର ନିର୍ମାଣ କରିବାକୁ ବହୁ ବର୍ଷ ବ୍ୟୟିତ ହୋଇଥିବ । ମାଦଳାପାଞ୍ଜିର ଉଲ୍ଲେଖ ଅନୁସାରେ ଯଯାତିକେଶରୀ ଲିଙ୍ଗରାଜଙ୍କ ମନ୍ଦିରର ମୂଳପତ୍ତନ ଆରମ୍ଭ କରିଥିଲେ । ତାଙ୍କର ପରବର୍ତ୍ତୀ ସୂର୍ଯ୍ୟକେଶରୀ ଓ ଅନନ୍ତକେଶରୀ ମନ୍ଦିର କାର୍ଯ୍ୟରେ ହସ୍ତକ୍ଷେପ କରି ନ ଥିଲେ । ଲଲାଟେନ୍ଦୁ -ଅର୍ଦ୍ଧନିର୍ମିତ ମନ୍ଦିରକୁ ସମାପ୍ତ କରିଥିଲେ । କିମ୍ବଦନ୍ତୀରୁ ମଧ୍ୟ ଜଣାଯାଏ ଯେ, ଲିଙ୍ଗରାଜ ମନ୍ଦିର ଚାରିଜଣ ରାଜା ନିର୍ମାଣ କରିଥିଲେ । କିମ୍ବଦନ୍ତୀମାନଙ୍କ ଉପରେ ନିର୍ଭରକରି ମାଦଳାପାଞ୍ଜି ତ୍ରୟୋଦଶ ବା ଦ୍ୱାଦଶ ଶତାବ୍ଦୀରେ ଲିଖିତ ହୋଇଥିଲା ବୋଲି ମନେହୁଏ । ସେହି କିମ୍ବଦନ୍ତୀ ଅଦ୍ୟାପି ପ୍ରଚଳିତ ରହିଛି । ଉଦ୍ୟୋତ କେଶରୀଙ୍କ ନରସିଂହପୁର ଶିଳାଲିପିରୁ ଜଣାଯାଏ ଯେ, ସେ ପ୍ରଥମ ଯଯାତିଙ୍କର ଚତୁର୍ଥ ପୁରୁଷ । ଯଯାତିଙ୍କ ପୁତ୍ର ଭୀମରଥ । ଭୀମରଥଙ୍କର ଦୁଇଟି ପୁତ୍ର ଧର୍ମରଥ ଓ ନଘୁଷ । ନଘୁଷଙ୍କ ପୁତ୍ର ଦ୍ୱିଜବର ଯଯାତି ଓ ତାଙ୍କପୁତ୍ର ଉଦ୍ୟୋତ କେଶରୀ ଥିବା ଜଣାଯାଏ । ଏମାନଙ୍କ ମଧ୍ୟରୁ କେତେଜଣ ରାଜତ୍ୱ କରିଥିଲେ ତାହା ଜଣାଯାଏ ନାହିଁ । ଶିଳାଲିପିମାନଙ୍କରୁ ଜଣାଯାଏ ଯେ, ପ୍ରଥମ ଯଯାତି ୨୮ବର୍ଷ ରାଜତ୍ୱ କରିଥିଲେ । ତାଙ୍କପରେ ଭୀମରଥ ଓ ମହାଭବଗୁପ୍ତ ୧୩ବର୍ଷ ରାଜତ୍ୱ କରିଥିଲେ । ମହାଭବଗୁପ୍ତ ଓ ଦ୍ୱିତୀୟ ଯଯାତି ୧୦ବର୍ଷ ରାଜତ୍ୱ କରିଥିଲେ । ଧର୍ମରଥ ଓ ନଘୁଷଙ୍କ ମଧ୍ୟରୁ ଜଣେ ରାଜତ୍ୱ କରିଥିଲେ । ତାଙ୍କ ରାଜତ୍ୱ ଅନ୍ତତଃ ୧୫ବର୍ଷ ଧରାଯାଇପାରେ । ତାହାହେଲେ ସେମାନଙ୍କ ରାଜତ୍ୱକାଳ ହେଉଛି (୨୮ ପ୍ରଥମଯଯାତି) +୧୩(ଭୀମରଥ) +୧୦(ଦ୍ୱିତୀୟ ଯଯାତି +୧୫=) ୬୬ବର୍ଷ । ଯଯାତିଙ୍କ ରାଜତ୍ୱର ଶେଷ ସମୟରେ ଲିଙ୍ଗରାଜ ମନ୍ଦିର ନିର୍ମାଣ ଆରମ୍ଭ ହୋଇଥିଲା । ସେହି ଶେଷ ସମୟକୁ ଅନ୍ତତଃ ୨ବର୍ଷ ବୋଲି ଧରିଲେ ୫୫୩ ଖ୍ରୀଷ୍ଟାବ୍ଦରେ ମନ୍ଦିର ନିର୍ମାଣ କାର୍ଯ୍ୟ ଆରମ୍ଭ ହୋଇ ୬୬୬

ଖ୍ରୀଷ୍ଟାବ୍ଦରେ ଶେଷହୋଇଥିଲା । ଏହି ସମୟନିର୍ଦ୍ଧାରଣ ସମ୍ପୂର୍ଣ୍ଣ ଆନୁମାନିକ ହେଲେ ମଧ ଚାରିପୁରୁଷରେ ମୁଣ୍ଡିମାରିବା କିମ୍ବଦନ୍ତୀ ସହିତ ଏହାର ଯଥେଷ୍ଟ ସାମଞ୍ଜସ୍ୟ ବିଦ୍ୟମାନ । ତେଣୁ ଏହାକୁ ଗ୍ରହଣ କରିବା ସମୀଚୀନ ବୋଲି ମନେହୁଏ । କିମ୍ବଦନ୍ତୀ ଓ ଶିଳାଲିପିରୁ ଏତିକି ମାତ୍ର ଜଣାଯାଏ ଯେ, ଲିଙ୍ଗରାଜମନ୍ଦିର ଷଷ୍ଠ ଶତାବ୍ଦୀର ଶେଷଭାଗରେ ଆରମ୍ଭ ହୋଇ ସପ୍ତମ ଶତାବ୍ଦୀର ମଧ୍ୟଭାଗରେ ସମାପ୍ତ ହୋଇଥିଲା । ହାଭେଲ ମଧ୍ୟ ଏହି ମତ ପୋଷଣ କରନ୍ତି ।

ଲିଙ୍ଗରାଜ ମନ୍ଦିର ନିର୍ମାଣ ସମ୍ବନ୍ଧରେ ଏକାମ୍ର ପୁରାଣରେ କତିପୟ ଶ୍ଳୋକ ଉଦ୍ଧୃତ କଲେ ଜଣାଯାଏ ଯେ, ବ୍ରହ୍ମା ଶିବଙ୍କୁ ଅଭ୍ୟର୍ଚ୍ଚନାଦ୍ୱାରା ସନ୍ତୁଷ୍ଟ କରିବାରୁ ଶିବ ବ୍ରହ୍ମାଙ୍କୁ ଗୋଟିଏ ବର ମାଗିବାକୁ କହିଲେ । ଶିବ ତୁଷ୍ଟିବିଧାନ ନିମିତ୍ତ ସେ ଗୋଟିଏ ପ୍ରାସାଦ ନିର୍ମାଣ କରିବାକୁ କହିଲେ-

"ପ୍ରାସାଦଂ କର୍ତ୍ତୁମିଚ୍ଛାମି ଭବତୋ ଲିଙ୍ଗମୁତ୍ତମମ୍ ।
ପଞ୍ଚାୟତନମୁଖ୍ୟଂ ଚାସାଦୃଶ୍ୟମମଳଂ ଶିବଂ ॥"

*(ଏକାମ୍ର ପୁରାଣ, ୧୩/୫୩)*

ଅନନ୍ତକାଳରୁ ଆମ୍ରମୂଳରେ ଗୋଟିଏ ଲିଙ୍ଗ ଥିଲା ଓ ଏହି ଆମ୍ରଛାୟା ଶିବଙ୍କର ବିଶେଷ ପ୍ରିୟଥିଲା । ଏହିପରି ସତ୍ୟ, ତ୍ରେତା, ଦ୍ୱାପର ଯୁଗତ୍ରୟ ଶେଷ ହୋଇଗଲା । ସୂର୍ଯ୍ୟ ଓ ଚନ୍ଦ୍ରମା ପ୍ରତ୍ୟହ ସେହି ଶିବଲିଙ୍ଗକୁ ଊର୍ଦ୍ଧ୍ୱଦେଶରୁ ଅବଲୋକନ କରୁଥାନ୍ତି । କଳିଯୁଗ ଆରମ୍ଭ ହେଲାରୁ ଚନ୍ଦ୍ର ରାଜା ରୂପରେ ଜନ୍ମଗ୍ରହଣ କରି ଲିଙ୍ଗ ସ୍ଥାପନ କରି ତାହାପାଇଁ ଗୋଟିଏ ଶୁଦ୍ଧ, ଶୁଭ୍ର ଓ ରୁଚିର ପ୍ରାସାଦ ନିର୍ମାଣ କରିଥିଲେ ।

ପ୍ରାପ୍ତେ କଳିଯୁଗେ ବ୍ରହ୍ମଂଶ୍ଚନ୍ଦ୍ରୋ ଯାସ୍ୟତି ମେଦିନୀମ୍ ।
ଭୂତ୍ୱା ମନୁଜନାଥୋଽସାବର୍ଚ୍ଚୟିଷ୍ୟତି ଲିଙ୍ଗକମ୍ ॥
ଭକ୍ତିତଃ ପ୍ରବରାଂ ପୂଜାଂ କାରୟିଷ୍ୟତି ସୁବ୍ରତ ।
ପ୍ରାସାଦଂ ରୁଚିରଂ ଶୁଭ୍ରଂ ଶୁଦ୍ଧଂ ଶୈଳମୟଂ ତଥା ॥
ଶିବଯଜ୍ଞପରୋ ନିତ୍ୟଂ କୀର୍ତ୍ତିମାନ୍ ସୁବହୁଶ୍ରୁତଃ ।
ପ୍ରତିଷ୍ଠୟିଷ୍ୟତୀଦଂ ସ ଲିଙ୍ଗଂ ତ୍ରିଭୁବନେଶ୍ୱରମ୍ ॥ (୧୩/୬୨-୬୪)

× × × × ×

ଶଶାଙ୍କୋଽନନ୍ତମେଧାବୀ ଭବିଷ୍ୟତି ଶିବାତ୍ମକଃ ।" (୧୩/୬୬)

*(ଏକାମ୍ର ପୁରାଣ, ପୃ-୧୦୧,୧୦୨)*

ଉଦ୍ୟୋତକେଶରୀଙ୍କ ନରସିଂହପୁର ଶିଳାଲିପିରେ ଚନ୍ଦ୍ରଙ୍କର ବିସ୍ତୃତ ବର୍ଣ୍ଣନା ଦିଆହୋଇଛି । କେଶରୀବଂଶୀୟ ରାଜାମାନେ ଚନ୍ଦ୍ରବଂଶୀୟ ଥିଲେ । ତେଣୁ ଚନ୍ଦ୍ର(ମନୁଜନାଥ) ରାଜାରୂପରେ ଜନ୍ମଗ୍ରହଣ କରି ଏହି ମନ୍ଦିରର ନିର୍ମାଣ କାର୍ଯ୍ୟକରି ତ୍ରିଭୁବନେଶ୍ୱର ଶିବଲିଙ୍ଗ ପ୍ରତିଷ୍ଠା କରିଥିଲେ ।

## (୪) ଲିଙ୍ଗରାଜଙ୍କ ଭୋଗମଣ୍ଡପ

ମନ୍ଦିରର ବିମାନ ନିକଟରେ ଜଗମୋହନ ବା କ୍ଷୁଦ୍ରମଣ୍ଡପ ନିର୍ମାଣପ୍ରଥା ପ୍ରଚଳିତ ଥିଲା । କିନ୍ତୁ ନାଟମଣ୍ଡପ ଓ ଭୋଗମଣ୍ଡପ ନିର୍ମାଣପ୍ରଥା ଉତ୍କଳରେ ପ୍ରଚଳିତ ନ ଥିଲା । ଗଙ୍ଗବଂଶ ରାଜାମାନେ ଦାକ୍ଷିଣାତ୍ୟରୁ ଆସି ଉତ୍କଳରେ ରାଜତ୍ୱ କରୁଥିଲେ । ଦାକ୍ଷିଣାତ୍ୟରେ ମଣ୍ଡପ ନିର୍ମାଣପ୍ରଥା ବିଶେଷଭାବରେ ପ୍ରଚଳିତ ଥିଲା । ଗଙ୍ଗବଂଶ ସମୟରେ ଉତ୍କଳର ସଭ୍ୟତା ଦ୍ରାବିଡ଼ସଭ୍ୟତା ଦ୍ୱାରା ବିଶେଷଭାବରେ ପ୍ରଭାବିତ ହୋଇଥିଲା । ତେଣୁ ଆମ୍ଭେମାନେ ପୁରୀର ଜଗନ୍ନାଥ ମନ୍ଦିର, କୋଣାର୍କର ସୂର୍ଯ୍ୟମନ୍ଦିର ତଥା ଭୁବନେଶ୍ୱରର ଲିଙ୍ଗରାଜ ଓ କପିଳେଶ୍ୱର ମନ୍ଦିରରେ ନାଟମନ୍ଦିର ଓ ଭୋଗମଣ୍ଡପ ଥିବାର ଦେଖୁ । ଏ ସମସ୍ତ ଗଙ୍ଗବଂଶର କୀର୍ତ୍ତି । ଭୁବନେଶ୍ୱର ଜଗମୋହନର କଳାହାଟ ଦ୍ୱାରରେ ଅନେକ ଶିଳାଲିପି ଅଛି । ସେଥି ମଧ୍ୟରୁ କଳାହାଟଦ୍ୱାରର ଦକ୍ଷିଣପାର୍ଶ୍ୱରେ ଥିବା ଗୋଟିଏ ଲିପିରୁ ଜଣାଯାଏ ଯେ, ନାଟମନ୍ଦିର ଓ ଜଗମୋହନର ପୂର୍ବ ଦ୍ୱାରସ୍ଥ ଦ୍ୱାରର ଚାରିପାଖରେ ଥିବା ମୁଗୁନି ପଥରର କାମ ଗଙ୍ଗସମ୍ରାଟ୍ ନରସିଂହ ଦେବଙ୍କ ଦ୍ୱାରା ନିର୍ମିତ ହୋଇଥିଲା । ସେ ମଧ୍ୟ କୋଣାର୍କର ସୂର୍ଯ୍ୟମନ୍ଦିର ନିର୍ମାଣ କରିଥିଲେ । ସେହି ଲିପିରୁ ଜଣାଯାଏ ଯେ, ରାଜରାଜଦେବଙ୍କ ପୁତ୍ର ଅନିୟଙ୍କ(ଅନଙ୍ଗ) ଭୀମଦେବଙ୍କ ରାଜତ୍ୱର ୨୪ବର୍ଷରେ ଭୋଗମଣ୍ଡପ ନିର୍ମିତ ହୋଇଥିଲା । ଗବେଷକ ଗାଙ୍ଗୁଲିଙ୍କ ମତରେ ଅନିୟଙ୍କ ଭୀମଦେବ ୧୨୧୯ ଖ୍ରୀଷ୍ଟାବ୍ଦରେ ସିଂହାସନାରୋହଣ କରିଥିଲେ । ତାହାହେଲେ ଭୋଗମଣ୍ଡପ ୧୨୪୩ ଖ୍ରୀଷ୍ଟାବ୍ଦରେ ନିର୍ମିତ ହୋଇଥିଲା ।

ପ୍ରଥମ ଅବସ୍ଥାରେ ଏହା ଭୋଗମଣ୍ଡପରୂପେ ବ୍ୟବହୃତ ହେଉନଥିଲା । ସେ ସମୟରେ ଏହା ଜ୍ଞାନଚର୍ଚ୍ଚା ନିମିତ୍ତ ବ୍ୟବହୃତ ହେଉଥିଲା । ପରବର୍ତ୍ତୀ କାଳରେ ତାହା ଭୋଗମଣ୍ଡପରୂପେ ବ୍ୟବହୃତ ହେଲା ।

ଜଣେ ଅନଙ୍ଗଭୀମଦେବ ୧୨୧୨-୧୨୩୯ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ଅନ୍ୟ କୌଣସି ଅନଙ୍ଗଭୀମ ୨୪ବର୍ଷ ରାଜତ୍ୱ କରିନାହାନ୍ତି । ତେଣୁ ଏହାଙ୍କ ଅମଳରେ ଭୋଗମଣ୍ଡପ ନିର୍ମିତ ହୋଇଥିବା ସମ୍ଭବପର । ତାହାହେଲେ (୧୨୧୨+୨୪=)୧୨୩୬ରେ ଭୋଗମଣ୍ଡପ ନିର୍ମିତ ହୋଇଥିଲା ବୋଲି ମନେହୁଏ ।

## (୫) ନାଟମଣ୍ଡପ

ଭୋଗମଣ୍ଡପ ନିର୍ମିତ ହେବାପରେ ନାଟମନ୍ଦିର ନିର୍ମିତ ହୋଇଥିଲା । କୋଣାର୍କରେ ଭୋଗମଣ୍ଡପ ଜଗମୋହନଠାରୁ କିଛିଦୂରରେ ନିର୍ମିତ ହୋଇଥିଲା । ତାହାର ଭଗ୍ନାବଶେଷ ଅଦ୍ୟାପି ଦେଖାଯାଏ । ସେହିପରି ଭୁବନେଶ୍ୱରରେ ପ୍ରଥମେ ଭୋଗ ମଣ୍ଡପ ନିର୍ମିତ ହୋଇଥିଲା । ତାହାର କେତେକ ବର୍ଷପରେ ନରସିଂହଦେବ ନାଟମନ୍ଦିର ଓ ଜଗମୋହନର କଳାହାଟଦ୍ୱାର ନିର୍ମାଣ କରିଥିଲେ । ଉତ୍କଳ ଇତିହାସରେ ଅନେକ ନରସିଂହଙ୍କ ନାମ ଥିବାର ଦେଖାଯାଏ । ସେମାନଙ୍କ ମଧ୍ୟରେ ଦ୍ୱିତୀୟ ନରସିଂହ ଦେବ (୧୨୩୯-୧୨୫୬) ୧୭ବର୍ଷ, ଅନନ୍ତବର୍ମ (୧୨୬୬) ଓ ଲାଙ୍ଗୁଳା ନରସିଂହଦେବ(ଚତୁର୍ଥ) (୧୨୭୮-୧୩୦୭) ୨୯ବର୍ଷ ରାଜତ୍ୱ କରିଥିଲେ । ଏମାନଙ୍କମଧ୍ୟରୁ ଦ୍ୱିତୀୟ ନରସିଂହ କୋଣାର୍କରେ ସୂର୍ଯ୍ୟମନ୍ଦିର ଆରମ୍ଭ କରିଥିଲେ । କିନ୍ତୁ ତାଙ୍କ ରାଜତ୍ୱ ଏକବର୍ଷ ପୂର୍ଣ୍ଣ ହୋଇ ନ ଥିଲା । ତେଣୁ ତାଙ୍କ ପକ୍ଷେ ଭୁବନେଶ୍ୱରର ନାଟମନ୍ଦିର ନିର୍ମାଣ କରିବା ସମ୍ଭବପର ନୁହେଁ । ତାହାହେଲେ ଶେଷ ନରସିଂହଙ୍କ ରାଜତ୍ୱରେ(୧୨୭୮-୧୩୦୭ ମଧ୍ୟରେ) ନାଟମନ୍ଦିର ନିର୍ମିତ ହୋଇଥିଲା । ବୀର ନରସିଂହ ଦେବଙ୍କ ୨୪ ଅଙ୍କରେ ବା ୨୦ବର୍ଷରେ (୧୨୭୮+୨୦=)୧୨୯୮ସାଲରେ ଭୋଗମଣ୍ଡପ ନିର୍ମିତ ହୋଇଥିଲା ।

## (୬) ଭାସ୍କରେଶ୍ୱର ମନ୍ଦିର

ଭାସ୍କରେଶ୍ୱର ଲିଙ୍ଗ ଗୋଟିଏ ଅଶୋକସ୍ତମ୍ଭର ଭଗ୍ନାବଶେଷ । ଚତୁଃପାର୍ଶ୍ୱରେ ଥିବା ବୌଦ୍ଧ ରେଲିଙ୍ଗ ପରି ଏଠାରୁ ତିନୋଟି ରେଲିଙ୍ଗ ସ୍ୱର୍ଗୀୟ ରାଖାଲଦାସ୍ ବାନାର୍ଜୀ ଓ ନିର୍ମଳକୁମାର ବସୁ ପାଇଥିଲେ । ଲିଙ୍ଗର ବ୍ୟାସ ଓ ପରିଧିର ଉଚ୍ଚତା ଦେଖିଲେ ଏହା ଅଶୋକସ୍ତମ୍ଭର ମୂଳ ବୋଲି ସ୍ପଷ୍ଟ ଜଣାଯାଏ ।

ହିନ୍ଦୁ ଓ ବୌଦ୍ଧମାନଙ୍କ ମଧ୍ୟରେ ଧର୍ମଯୁଦ୍ଧଲାଗିବା ସମୟରେ କୌଣସି ହିନ୍ଦୁନରପତି ଅଶୋକସ୍ତମ୍ଭକୁ ଭାଙ୍ଗି ଲିଙ୍ଗ ରୂପେ ପୂଜା କରିବାକୁ ଆରମ୍ଭ କରିଥିଲେ । ଭାସ୍କରେଶ୍ୱର ମନ୍ଦିରରେ କୌଣସି ଶିଳାଲିପି ନାହିଁ ଓ ଏହାର ଗଠନ ଭୁବନେଶ୍ୱର ମନ୍ଦିରମାନଙ୍କଠାରୁ ସମ୍ପୂର୍ଣ୍ଣ ପୃଥକ୍ । ତେବେ ଏହାର ଗଠନରୁ ଜଣାଯାଏ ଯେ, ଏହା ସମ୍ଭବତଃ ୫ମ-୬ଷ୍ଠ ଶତାବ୍ଦୀରେ ନିର୍ମିତ ହୋଇଥିଲା । ଏକାମ୍ରପୁରାଣ ମତରେ ଭାସ୍କରେଶ୍ୱର ଏକାମ୍ରକ୍ଷେତ୍ରର ଦ୍ୱିତୀୟ ପ୍ରସିଦ୍ଧ ଲିଙ୍ଗ (କ୍ଷେତ୍ରେ ହ୍ୟସ୍ମିନ୍ ଦ୍ୱିତୀୟୋଽୟଂ)

> ଅଦୂରେ କୃତ୍ତିବାସସ୍ୟ ଐଶାନୀଂ ଦିଶମାଶ୍ରିତେ ।
> ଧେନ୍ୱନ୍ତରସହସ୍ରୈକେ ତଥା ପଞ୍ଚଶତୋତ୍ତରେ ॥
> ବନମଧ୍ୟେ ସମେ ରମ୍ୟଂ ସାନୁପ୍ରାୟଂ ଶିଳାତଳଂ ।
> ଦଦର୍ଶ ପରମାଶ୍ଚର୍ଯ୍ୟଂ ଭାସ୍କରସ୍ତୁ ତଦାମ୍ବିକେ ॥

*(ଏକାମ୍ର ପୁରାଣ, ୧୬/୧୫-୧୬)*

ପୌରାଣିକ ବୃତ୍ତାନ୍ତ ସତ୍ୟ ହେଲେ, ଏହା ବ୍ରହ୍ମେଶ୍ୱର ମନ୍ଦିର ପରେ ନିର୍ମିତ ହୋଇଥିଲା । କିନ୍ତୁ ଏ ମନ୍ଦିରର ଦ୍ୱାରରେ ଥିବା ପାଗମାନଙ୍କରେ ନବଗ୍ରହମୂର୍ତ୍ତି ବା ଗଜଲକ୍ଷ୍ମୀମୂର୍ତ୍ତି ଦେଖାଯାଏ ନାହିଁ । ଦ୍ୱାରର ଚାରିପାଖରେ ଜାଲିକାମ ନାହିଁ । ଗଜ ସିଂହ ସ୍ଥାପିତ ହୋଇଛି ।

ଏ ମନ୍ଦିର ପୀଠ ଅତି ଉଚ୍ଚ । ଦେଉଳଟି ଦୂରରୁ ମନୋହର ରଥଭଳି ଦେଖାଯାଏ । ତଳେ ଲିଙ୍ଗର ପଶ୍ଚିମ ଦିଗକୁ ଗୋଟିଏ ଦ୍ୱାର ଅଛି । ଏ ମନ୍ଦିରରେ କୌଣସି କାରୁକାର୍ଯ୍ୟ ନାହିଁ । ଏ ସ୍ଥାନରୁ ଆଜିପର୍ଯ୍ୟନ୍ତ କୌଣସି ଶିଳାଲିପି ଆବିଷ୍କୃତ ହୋଇନାହିଁ । ଭୁବନେଶ୍ୱରର ଅନ୍ୟ କୌଣସି ମନ୍ଦିର ସହିତ ଏହାର ଆକାରଗତ ବା ଶିଳ୍ପସମ୍ବନ୍ଧୀୟ ସାଦୃଶ୍ୟ ବିଦ୍ୟମାନ ନାହିଁ । ତେଣୁ ଏହା ଭୁବନେଶ୍ୱରର ଗୋଟିଏ ପ୍ରାଚୀନ କୀର୍ତ୍ତିବୋଲି ମନେହୁଏ । ଏହା ଆନୁମାନିକ ପଞ୍ଚମଶତାବ୍ଦୀର କୀର୍ତ୍ତି । କାଶୀର ଲାଟଭୈରବ ମଧ୍ୟ ଏହିପରି ଗୋଟିଏ ପ୍ରାଚୀନ ଶିବ ମନ୍ଦିର । ଏ ମନ୍ଦିରରେ ବୌଦ୍ଧ ପ୍ରଭାବ ବିଶେଷ ଭାବରେ ପରିଲକ୍ଷିତ ହୁଏ ।

**(୭) ବ୍ରହ୍ମେଶ୍ୱର-**

ଏକାମ୍ରପୁରାଣରୁ ଜଣାଯାଏ ଯେ, ବ୍ରହ୍ମେଶ୍ୱର ଏକାମ୍ରକାନନରେ

ଆଦ୍ୟମନ୍ଦିର ।

ଲିଙ୍ଗସ୍ୟାସ୍ୟ ଦ୍ୱଦୂରେଣ ଈଷତ୍ ପ୍ରଚଳିତାମ୍ବରେ ।
ଧେନ୍ୱନ୍ତରସହସ୍ରୈକତ୍ରିଂଶୋଉର ଶତାନ୍ତରେ ॥
× × × ×
ପ୍ରାସାଦଃ ପ୍ରଥମୋଽୟଂ ହି କ୍ଷେତ୍ରେ ଜ୍ୟେଷ୍ଠଃ ସନାତନଃ ।
ଆଦ୍ୟଃ ପୂଜ୍ୟତମୋ ଲୋକେ ଭବିଷ୍ୟତି ତବାନଘ ॥
ବ୍ରହ୍ମେଶ୍ୱର ଇତି ଖ୍ୟାତଃ ସର୍ବାସୁର ସୁରାର୍ଚ୍ଚିତଃ ॥
ଅଷ୍ଟାୟତନ ମୁଖ୍ୟୋଽସାବସ୍ମିନ୍ କ୍ଷେତ୍ରେ ନିରାମୟେ ॥

*(ଏକାମ୍ର ପୁରାଣ, ୧୪/୫୪-୫୫)*

ଏଥିରୁ ଆହୁରି ମଧ୍ୟ ଜଣାଯାଏ ଯେ, ମନ୍ଦିର ପାଇଁ ବିନ୍ଧ୍ୟପର୍ବତରୁ ପଥର ଅଣା ହୋଇଥିଲା-

ବିନ୍ଧ୍ୟସ୍ୟୋତ୍ତରକେ ପାର୍ଶ୍ୱେ ଚତୁଃ ଶୃଙ୍ଗଂ ମହୋଚ୍ଛ୍ରିତଂ ।
ତତ୍ରୋପଳଂ ମହଚ୍ଛାସୀଚ୍ଛତ୍ରଂ ଦିବ୍ୟମନୋରମ୍ ॥

*(ଏକାମ୍ର ପୁରାଣ, ୧୪/୬୮)*

ମନ୍ଦିର ନିର୍ମାଣପରେ ଲୋକମାନଙ୍କମଧ୍ୟରେ ନାନାବିଧ ମୂଲ୍ୟବାନ ଦ୍ରବ୍ୟବଣ୍ଟନ ଓ ଭୂରିଭୋଜନ ଦିଆହୋଇ ଥିଲା ।

## (୮) ପରଶୁରାମେଶ୍ୱର ମନ୍ଦିର

ଭୁବନେଶ୍ୱରରେ ପରଶୁରାମେଶ୍ୱର ମନ୍ଦିର ଏକ ପ୍ରାଚୀନତମ କୀର୍ତ୍ତି ବୋଲି ଐତିହାସିକଙ୍କର ମତ । ସେମାନେ ଏହାକୁ ଅଷ୍ଟମ ଶତାବ୍ଦୀର କୀର୍ତ୍ତି ବୋଲି କହନ୍ତି । ସୋମବଂଶ ଅବା କେଶରୀବଂଶ ଉତ୍କଳରେ ନବମ ଶତାବ୍ଦୀରେ ପ୍ରତିଷ୍ଠିତ ହୋଇଥିଲା ବୋଲି ସେମାନେ ସ୍ଥିର କରିଛନ୍ତି । ତେଣୁ ସେମାନେ ପରଶୁରାମେଶ୍ୱର ମନ୍ଦିରର ସମୟ ସମ୍ବନ୍ଧରେ ଏପରି ଭ୍ରମସଂକୁଳ ମତପୋଷଣ କରିଛନ୍ତି ।

ପରଶୁରାମେଶ୍ୱର ମନ୍ଦିର ୬ଷ୍ଠ ଶତାବ୍ଦୀ ପୂର୍ବରୁ ନିର୍ମିତ ହୋଇଥିବା ମୋର ଦୃଢ଼ ଧାରଣା । କାରଣ ଏଠାରେ କେତେକ ପ୍ରାଚୀନ ଶିଳାଲିପି ନୂତନକରି ଆବିଷ୍କୃତ ହୋଇଛି । ସେଥିମଧ୍ୟରୁ ଗୋଟିଏ କୁଶାଣ ଯୁଗର ଅକ୍ଷରରେ ଲିଖିତ । ଏପରି ଅକ୍ଷର ୪ର୍ଥ-୫ମ ଶତାବ୍ଦୀରେ ବିଶେଷଭାବରେ ପ୍ରଚଳିତ ଥିଲା । ସ୍ଥାନେ ସ୍ଥାନେ

ଇତସ୍ତତଃ ଖୋଦିତ ବ୍ରାହ୍ମୀଅକ୍ଷର ଦେଖି ମନରେ ବିସ୍ମୟ ଜାତ ହୁଏ ।

ଏହାର ଗଠନରେ ଯଥେଷ୍ଟ ବିଶେଷତ୍ୱ ଅଛି । ଭୁବନେଶ୍ୱରର ପରଶୁରାମେଶ୍ୱର ମନ୍ଦିର ପରି କପାଳିନୀ, ଶିଖରେଶ୍ୱର, ଉତ୍ତରେଶ୍ୱର, ମାର୍କଣ୍ଡେଶ୍ୱର, ମୋହିନୀ ଆଦି ଶିବମନ୍ଦିରର ଗଠନଗତ ବିଶେଷ ସାଦୃଶ୍ୟ ଦେଖାଯାଏ । କୋଟୀତୀର୍ଥେଶ୍ୱରର ଦକ୍ଷିଣ ପଶ୍ଚିମକୋଣରେ ଥିବା ସ୍ୱର୍ଣ୍ଣଜାଳେଶ୍ୱର; ରାମେଶ୍ୱର ନିକଟସ୍ଥ ଭରତେଶ୍ୱର, ଲକ୍ଷ୍ମଣେଶ୍ୱର ଓ ଶତ୍ରୁଘ୍ନେଶ୍ୱରପ୍ରଭୃତି ମନ୍ଦିରମାନଙ୍କ ବିମାନ ସହିତ ପରଶୁରାମେଶ୍ୱର ମନ୍ଦିର ବିମାନର ଯଥେଷ୍ଟ ସାମଞ୍ଜସ୍ୟ ଅଛି । ଏକ ସମୟରେ ଭାରତର ଅନେକାଂଶରେ ଏହି ଧରଣର ମନ୍ଦିର ନିର୍ମାଣପ୍ରଥା ପ୍ରଚଳିତ ଥିଲା । ବିଜାପୁର ଜିଲ୍ଲାର ଅହିହୋଲରେ ଥିବା ଦୁର୍ଗାମନ୍ଦିର ଓ ହୁର୍‌ହିମାଲିଗୁଡ଼ି(Hurahihi malligudi ମନ୍ଦିର ଦୁଇଟି ସହିତ ପରଶୁରାମେଶ୍ୱର ମନ୍ଦିରର ଆଶ୍ଚର୍ଯ୍ୟ ସାଦୃଶ୍ୟ ଦେଖାଯାଏ । ସେଗୁଲିର ଗୋଟିଏ ମନ୍ଦିରରୁ ଚାଲୁକ୍ୟରାଜ ଦ୍ୱିତୀୟ ପୁଲକେଶୀଙ୍କର ୫୩୬ ଶକାବ୍ଦ ବା ୬୧୪ ଖ୍ରୀଷ୍ଟାବ୍ଦର ଗୋଟିଏ ଲିପି ମିଳିଛି । ସେଗୁଲି ମନ୍ଦିରଠାରୁ ଅହିହୋଲର ଦୁର୍ଗାମନ୍ଦିର ଓ ହୁର୍‌ହିମାଲିଗୁଡ଼ି ମନ୍ଦିର ଆହୁରି ପ୍ରାଚୀନ । ଏହିପରି ଅନେକ ବିଷୟ ସୁବିଚାରକରି କାଉସେନ(Cousen) ଅହିହୋଲର ଏହି ଦୁଇଟି ମନ୍ଦିର ଖ୍ରୀଷ୍ଟୀୟ ପଞ୍ଚମ ଶତାବ୍ଦୀରେ ନିର୍ମିତ ହୋଇଥିଲା ବୋଲି ଅନୁମାନ କରନ୍ତି (Archaeological Survey of India-1907-08) । ଏହା ଆହୁରି ପୂର୍ବବର୍ତ୍ତୀ ହୋଇଥିବା ଅସମ୍ଭବ ନୁହେଁ । ସୁଦୂର ହିମାଳୟ ଅଞ୍ଚଳରେ ମଧ ପରଶୁରାମେଶ୍ୱର ମନ୍ଦିର ଅନୁରୂପ ମନ୍ଦିର ଦେଖାଯାଏ । ପଞ୍ଜାବ ପ୍ରଦେଶରେ ହିମାଳୟର ନିମ୍ନଭୂମିରେ ଚମ୍ବା, ମୁଣ୍ଡି ଓ ବ୍ରିଟିଶଶାସିତ କୋଙ୍ଗଡ଼ା (ନଗରକୋଟ) ଜିଲ୍ଲା ଅବସ୍ଥିତ । ମୁସଲମାନମାନଙ୍କ ଶତଶତବାର ଆକ୍ରମଣ ସତ୍ତ୍ୱେ ଏହି ପାର୍ବତୀୟ ବନଭୂମି ଅଦ୍ୟାପି ଅତି ପ୍ରାଚୀନ ମନ୍ଦିର ବକ୍ଷରେ ଧାରଣ କରିଅଛି । ବୈଦ୍ୟନାଥଙ୍କ ମନ୍ଦିର ଦେଖିଲେ ପ୍ରଥମେ ଓଡ଼ିଶାର ମନ୍ଦିର ବୋଲି ଭ୍ରମ ହୁଏ । ଏହାର ବାଡ଼ ସହିତ ଓଡ଼ିଶା ମନ୍ଦିର ବାଡ଼ର ଯେପରି ମେଳଅଛି ମଣ୍ଡପର ଗୋଟିଏ ସ୍ଥଳରେ ସେହିପରି ମେଳ ଅଛି । ଭୁବନେଶ୍ୱରର କପାଳିନୀ ଦେଉଳ ସମ୍ମୁଖସ୍ଥ ମଣ୍ଡପର ଚତୁର୍ଦ୍ଦିଗରେ ଚାରୋଟି ଛୋଟ ରେଖଦେଉଳ ବିଦ୍ୟମାନ । ବୈଦ୍ୟନାଥ ମନ୍ଦିରରେ ତାହାର ପୁନରାବୃତ୍ତି ଦେଖାଯାଏ । ଏପରି ସାଦୃଶ୍ୟ ଦେଖିଲେ ମନ ବିସ୍ମୟରେ ଅଭିଭୂତ ହୁଏ ।

ବୈଦ୍ୟନାଥ ରେଖମନ୍ଦିର ସହିତ ପରଶୁରାମେଶ୍ୱରର ବିମାନର ଅନେକ ସାଦୃଶ୍ୟ ଦେଖାଯାଏ ।

ଆଲମୋଡ଼ା ଜିଲାର ଯକ୍ଷେଶ୍ୱର ଗ୍ରାମର ନବଦୁର୍ଗା ମନ୍ଦିର ବୈତାଳ ଦେଉଳର ଗୋଟିଏ ଅବିକଳ ପ୍ରତିକୃତି । ବୌଦଠାରୁ ଆଠମାଇଲ ଦୂରବର୍ତ୍ତୀ ଗନ୍ଧରାଢ଼ିଠାରେ ନୀଳମାଧବ ଓ ସିଦ୍ଧେଶ୍ୱରଙ୍କ ଦୁଇଟି ମନ୍ଦିର ଅଛି । ଏ ଦୁଇଟି ଦେଖିଲେ ପର୍ଶୁରାମେଶ୍ୱର ଦେଉଳବୋଲି ମନେହୁଏ । ପୁନଶ୍ଚ ଏ ଦୁଇଟି ଇନ୍ଦୋର ରାଜ୍ୟସ୍ଥ ନର୍ମଦାନଦୀକୂଳର ନେମାଓ୍ୱାର(Nemawar) ମନ୍ଦିର ସହିତ ସମାନ । ତାହାହେଲେ ଏକ ସମୟରେ ସୁଦୂର ପଞ୍ଜାବପ୍ରଦେଶଠାରୁ ଆରମ୍ଭକରି ନର୍ମଦା ଓ ମହାନଦୀ ପ୍ରବାହିତ ପ୍ରଦେଶ ଓ ପଶ୍ଚିମଘାଟ ପର୍ଯ୍ୟନ୍ତ ଏକପ୍ରକାର ମନ୍ଦିର ନିର୍ମାଣପ୍ରଥା ପ୍ରଚଳିତ ଥିଲା । ଲିଙ୍ଗରାଜ ଓ ପରଶୁରାମେଶ୍ୱର ମନ୍ଦିର ଦୁଇପ୍ରକାର ଦେଉଳର ଗୋଟିଏ ଗୋଟିଏ ଉଦାହରଣ ମାତ୍ର । ଲିଙ୍ଗରାଜଙ୍କ ମନ୍ଦିରର ମୋହନ ଯଦି ପରଶୁରାମେଶ୍ୱର ମନ୍ଦିର ମୋହନର କ୍ରମବିକାଶ ବୋଲି ଧରାଯାଏ ତାହାହେଲେ ଏହା ନିଃସନ୍ଦେହରେ କୁହାଯାଇପାରେ ଯେ, ଏପରି କ୍ରମବିକାଶ ପାଇଁ ଅନେକ ସମୟ ଲାଗିଥିବ । ଯଦିବା ଏହା ଦୁଇପ୍ରକାର ମନ୍ଦିରର ଉଦାହରଣ ବୋଲି ଧରାହୁଏ, ତଥାପି ମନ୍ଦିର-ଶିଳ୍ପ-ଗଠନ ଓ ହିନ୍ଦୁପୂଜା ପଦ୍ଧତି ପ୍ରଚଳନ ବିଷୟ ଆଲୋଚନା କଲେ ଏହା ବ୍ରହ୍ମେଶ୍ୱର ମନ୍ଦିରଠାରୁ ଅନେକ ପ୍ରାଚୀନ ବୋଲି ମନେହୁଏ । କାରଣ ଏଥିରେ ରାହାପାଗର ମଧ୍ୟଭାଗରେ ଗଜସିଂହ ଓ ମୋହନଦ୍ୱାରରେ ନବଗ୍ରହର ଅଭାବ ଲକ୍ଷିତ ହୁଏ । ପରନ୍ତୁ ଦାକ୍ଷିଣାତ୍ୟର ମନ୍ଦିର ପରି ଏହାର ଦକ୍ଷିଣଦ୍ୱାରରେ ଗୋଟିଏ ଗଣେଶମୂର୍ତ୍ତି ବିଦ୍ୟମାନ ।

ଲିଙ୍ଗରାଜମନ୍ଦିର ୭ମ ଶତାବ୍ଦୀ ମଧ୍ୟଭାଗର କୀର୍ତ୍ତି । ବ୍ରହ୍ମେଶ୍ୱର ମନ୍ଦିର ସପ୍ତମ ଶତାବ୍ଦୀ ପ୍ରଥମ ଭାଗ ୬୧୧ଖ୍ରୀ.ଅ.ର କୀର୍ତ୍ତି । କିନ୍ତୁ ଏ ମନ୍ଦିରମାନଙ୍କର ରାହାପାଗର ମଧ ଭାଗରେ ଗଜସିଂହମୂର୍ତ୍ତି ନିର୍ମିତ ହୋଇଅଛି । ଲିଙ୍ଗରାଜଙ୍କ ଗଜସିଂହମୂର୍ତ୍ତି ଦେଖି ଐତିହାସିକମାନେ ଏକମୁଖରେ ସ୍ୱୀକାର କରିଅଛନ୍ତି ଯେ, ଶିଳ୍ପରେ ଏପରି ଅସାଧାରଣ ଉନ୍ନତି ନିମିତ୍ତ ବହୁ ଶତାବ୍ଦୀର ସାଧନା ଆବଶ୍ୟକ । କିନ୍ତୁ ପରଶୁରାମେଶ୍ୱର ମନ୍ଦିରରେ ରାହାପାଗର ମଧଭାଗରେ ଗଜସିଂହମୂର୍ତ୍ତିର ଅଭାବ ଲକ୍ଷିତ ହୁଏ । ଏହା ମନ୍ଦିରର ପ୍ରାଚୀନତା ପ୍ରତିପାଦନ କରେ । କୌଣସି ପ୍ରାଚୀନ ପୁରାଣରୁ ପରଶୁରାମେଶ୍ୱର ଦେବତାଙ୍କ ନାମ ମିଳେ ନାହିଁ । ଏକାମ୍ର

ପୁରାଣରୁ ଜଣାଯାଏ ଯେ, ଶିବଙ୍କ ଆଦେଶରେ କୀର୍ତ୍ତି ଓ ବାସ ରାକ୍ଷସଦ୍ୱୟ ଏଠାରେ ଶିବାରାଧାନା କରିଥିଲେ ।

"ସିଦ୍ଧେଶ୍ୱରସମୀପେଽପି ଯଲ୍ଲିଙ୍ଗଂ ବର୍ତ୍ତତେଽସୁର ।
ପଶ୍ଚିମସ୍ୟାଂ ଦିଶି ଶୁଭଂ ତସ୍ୟୈବାରାଧନଂ କୁରୁ ॥" *୩୨/୫୮-*
*(ଏକାମ୍ର ପୁରାଣ, ପୃ-୨୪୫)*

ପୂର୍ବେ ଏହି ମନ୍ଦିରର ଅନ୍ୟ କୌଣସି ନାମ ଥିଲା । ଏ ମନ୍ଦିରର ଅଧିଷ୍ଠାତ୍ରୀ ଦେବତା ଦୈତ୍ୟେଶ୍ୱର । କୀର୍ତ୍ତିବାସଙ୍କ ସହିତ ଏହାର ସମ୍ପର୍କ ଥିବାରୁ ମନେହୁଏ ଏହା ଗୋଟିଏ ପ୍ରାଚୀନତମ ଶିବଲିଙ୍ଗ ।

ଏ ମନ୍ଦିର କେଶରୀବଂଶୀୟ କୌଣସି ରାଜାଙ୍କର କୀର୍ତ୍ତି ବୋଲି ମନେହୁଏ ନାହିଁ । କାରଣ କେଶରୀବଂଶର ରାଜାମାନଙ୍କ ସମୟଠାରୁ ମୋହନର ଗଠନ ପ୍ରଣାଳୀ ଭିନ୍ନ ଆକାର ଧାରଣ କଲା । ଜଗମୋହନ ମଣ୍ଡପ ନ ହୋଇ ପୀଢ ଦେଉଳ ନିର୍ମିତ ହେଉଥିଲା । କେଶରୀବଂଶୀୟ ରାଜାମାନଙ୍କ ପୂର୍ବରୁ କରବଂଶ ଓ ଶୈଳୋଦ୍ଭବବଂଶର ରାଜାମାନେ ରାଜତ୍ୱ କରୁଥିଲେ । କରବଂଶୀୟ କେତେକ ରାଜା ଶୈବମନ୍ଦିର ନିର୍ମାଣ କରିଥିଲେ ସୁଦ୍ଧା ସେମାନେ ବୌଦ୍ଧଧର୍ମର ପ୍ରଧାନ ପୃଷ୍ଠପୋଷକ ଥିଲେ । ଶୈଳୋଦ୍‌ଭବରାଜାମାନେ ପ୍ରଥମେ ବ୍ରାହ୍ମଣ୍ୟଧର୍ମର ବିଜୟ ଧ୍ୱଜା ଉତ୍କଳରେ ଉଡ଼ାଇଥିଲେ । ତେଣୁ ଉପଯୁକ୍ତ ଅକାଟ୍ୟ ପ୍ରମାଣ ନ ପାଇବା ପର୍ଯ୍ୟନ୍ତ ଏହାକୁ ଶୈଳୋଦ୍ଭବ ରାଜତ୍ୱକାଳୀନ କୀର୍ତ୍ତି ବୋଲି ଗ୍ରହଣ କରିବା ଆବଶ୍ୟକ । ଏ ମନ୍ଦିରରୁ ପ୍ରାୟ ୭/୮ଟି ଶିଳାଲିପି ଆବିଷ୍କୃତ ହୋଇଅଛି । ସେଥିମଧ୍ୟରୁ ୪ଟିରେ 'ପ୍ରଶୃଙ୍ଗାରପ୍ରାଣ' ନାମକ ଗୋଟିଏ ଶବ୍ଦ ଦେଖାଯାଏ । ଏହା ଗୋଟିଏ ବ୍ୟକ୍ତିର ନାମ ହେଉ ବା ନାମର ଗୁଣବାଚକ ବିଶେଷଣ ହେଉ ମନ୍ଦିର ସହିତ ଏହାର ବିଶେଷ ସମ୍ପର୍କ ଥିବାର ଜଣାଯାଏ । ତାହା ନ ହେଲେ ଗୋଟିଏ ଶବ୍ଦ ଏତେଥର ଲେଖା ହେବାର କାରଣ କ'ଣ ଜଣାଯାଉନାହିଁ । ପରଶୁରାମେଶ୍ୱର ମନ୍ଦିରର ଐଶାନ୍ୟ କୋଣରେ ଗୋଟିଏ ପଥରରେ 'ପ୍ରଶୃଙ୍ଗାରପ୍ରାଣ'ଙ୍କର ତିନିଧାଡ଼ିବିଶିଷ୍ଟ ଏକ ଲିପିଥିଲା । ଲିପିଟି କାଳକ୍ରମେ ଲିଭି ଯାଇ ବର୍ତ୍ତମାନ ଅପାଠ୍ୟ ହୋଇଯାଇଛି । ତେବେ ଏହି ଲିପିର ଅକ୍ଷରରୁ ଜଣାଯାଏ ଯେ, ଏହା ଖ୍ରୀଷ୍ଟୀୟ ୪ର୍ଥ ଶତାବ୍ଦୀ ବା ୫ମ ଶତାବ୍ଦୀର ଲିପି ।

ଏଠାରେ ଆଉ ଗୋଟିଏ ବଡ଼ ଲିପି ଥିଲା । କିନ୍ତୁ ଲିପିଟିରୁ ମନ୍ଦିର ନିର୍ମାଣ ବିଷୟ କିଛି ଜଣାଯାଏ ନାହିଁ । ଲିପିର ଅକ୍ଷର ଦେଖିଲେ ଏହା ପରବର୍ତ୍ତୀକାଳର ବୋଲି ସ୍ପଷ୍ଟ ଜଣାଯାଏ ।

## (୯) ମାର୍କଣ୍ଡେଶ୍ୱର ମନ୍ଦିର

ପରଶୁରାମେଶ୍ୱର ମନ୍ଦିର ପରି ଆଉ ତିନୋଟି ମନ୍ଦିର ଯଥାକ୍ରମେ ବିନ୍ଦୁସାଗରର ଦକ୍ଷିଣ, ପଶ୍ଚିମ ଓ ଉତ୍ତରଦିଗରେ ବିଦ୍ୟମାନ । ବିନ୍ଦୁସାଗରର ପଶ୍ଚିମରେ ଥିବା ମନ୍ଦିରର ନାମ ମାର୍କଣ୍ଡେଶ୍ୱର ମନ୍ଦିର । ଏହି ମନ୍ଦିର ମୋହନର ଦକ୍ଷିଣ ଦ୍ୱାରରେ ଗୋଟିଏ ଲିପିଥିଲା । ତାହା ବର୍ତ୍ତମାନ ଲୁପ୍ତପ୍ରାୟ । ଏହାର ବିମାନଟି ପରଶୁରାମେଶ୍ୱର ମନ୍ଦିରର ଅବିକଳ ପ୍ରତିକୃତି ପରି ଜଣାଯାଏ । ଏହାର କାରୁକାର୍ଯ୍ୟ ସହିତ ତାହାର ଘନିଷ୍ଠ ସମ୍ପର୍କ ବିଦ୍ୟମାନ । କିନ୍ତୁ ପରଶୁରାମେଶ୍ୱର ଜଗମୋହନଠାରୁ ଏହାର ଜଗମୋହନର ଅନେକ ପାର୍ଥକ୍ୟ ଅଛି । ଏହାର ଗଠନପ୍ରଣାଳୀ ଦେଖିଲେ ଏହା ପରଶୁରାମେଶ୍ୱର ମନ୍ଦିରଠାରୁ ପ୍ରାଚୀନତର ବୋଲି ମନେହୁଏ । ଜଗମୋହନର ବାହାରପାଖରେ କୌଣସି କାରୁକାର୍ଯ୍ୟ ଖୋଦିତ ହୋଇନାହିଁ । କାନ୍ଥର ପ୍ରାଚୀରର ଯଥେଷ୍ଟ ବିଶେଷତ୍ୱ ଅଛି । ପ୍ରାଚୀରଟି ସାଧାରଣ ପ୍ରାଚୀର ପରି ନ ହୋଇ ସ୍ତମ୍ଭାବଳୀ ଉପରେ ନିର୍ମିତ ହୋଇଥିଲା । ଏହା ମଣ୍ଡପ ନିର୍ମାଣର କ୍ରମବିକାଶର ସୂଚନା ଦିଏ । ମୋହନର ଛାତ ମଧ୍ୟ ପରଶୁରାମେଶ୍ୱର ମୋହନ ଛାତଠାରୁ ପୃଥକ୍ । କିନ୍ତୁ ଉଭୟ ମନ୍ଦିରରେ ଏକପ୍ରକାର ପ୍ରସ୍ତର ବ୍ୟବହୃତ ହୋଇଛି । ମନ୍ଦିରର ଅବସ୍ଥିତି ବିଚାରକଲେ ସ୍ପଷ୍ଟ ଜଣାଯାଏ ଯେ, ବିନ୍ଦୁସାଗର ଖୋଳାହେବା ପୂର୍ବରୁ ଏହା ନିର୍ମିତ ହୋଇଥିଲା । ମନ୍ଦିରର ମୋହନଟି ବର୍ତ୍ତମାନ ଭଗ୍ନଦଶାପନ୍ନ ଓ ଚାରିପାଖରେ ମାଟି ପଡ଼ି ମନ୍ଦିରଟି ୫/୬ ହାତ ପୋତି ହୋଇ ପଡ଼ିଲାଣି । ମନ୍ଦିରର ଜୀର୍ଣ୍ଣତ୍ୱ ଓ ମୋହନର ବିଶେଷତ୍ୱ ଦେଖିଲେ ଏହା ଏହିଜାତୀୟ ମନ୍ଦିରମାନଙ୍କ ମଧ୍ୟରେ ପ୍ରାଚୀନତମ ବୋଲି ଜଣାଯାଏ । ତେଣୁ ଏହାକୁ ଖ୍ରୀଷ୍ଟୀୟ ଚତୁର୍ଥ ଶତାବ୍ଦୀର କୀର୍ତ୍ତିବୋଲି କହିବା ସମୀଚୀନ । ମନ୍ଦିରଟି ପୂର୍ବମୁଖୀ ।

## (୧୦) ମୋହିନୀ ମନ୍ଦିର

ମାର୍କଣ୍ଡେଶ୍ବର ମନ୍ଦିର ସହିତ ମୋହିନୀ ମନ୍ଦିରର ଯଥେଷ୍ଟ ସାମଞ୍ଜସ୍ୟ ଅଛି । ତେଣୁ ଏହାକୁ ତାହାର ସମସାମୟିକ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । ପରଶୁରାମେଶ୍ବର ମନ୍ଦିରର ଉଚ୍ଚତା ସହିତ ଏହାର ଉଚ୍ଚତା ସମାନ ।

## (୧୧) ଉତ୍ତରେଶ୍ବର ମନ୍ଦିର

ବିନ୍ଦୁସାଗରର ଉତ୍ତର ଦିଗରେ ଉତ୍ତରେଶ୍ବର ମନ୍ଦିର ବିଦ୍ୟମାନ । ମନ୍ଦିରଟି ପରଶୁରାମେଶ୍ବର ମନ୍ଦିରର ଅନୁରୂପ, କିନ୍ତୁ ଏଥିରେ କୌଣସି ବିଶେଷ କାରୁକାର୍ଯ୍ୟ ନାହିଁ । ମନ୍ଦିରଟି ଶିବମନ୍ଦିର ହେଲେ ମଧ୍ୟ ଏଥିରେ ତନ୍ତ୍ରଯୁଗର ବିଶେଷ ପ୍ରଭାବ ପଡ଼ିଅଛି । କାରଣ ଏହାର ଅଧିଷ୍ଠାତ୍ରୀଦେବୀ ତାନ୍ତ୍ରିକ ମନ୍ତ୍ରରେ ପୂଜିତ ହୁଅନ୍ତି । ମନ୍ଦିରଟି ପୂର୍ବମୁଖୀ । ମୋହନର ଛାତ ପରଶୁରାମେଶ୍ବର ମନ୍ଦିର ମୋହନର ଛାତପରି ନିର୍ମିତ ହୋଇଥିଲା । ଉଭୟ ମନ୍ଦିରରେ ଏକପ୍ରକାର ପ୍ରସ୍ତର ବ୍ୟବହୃତ ହୋଇଛି । ମନ୍ଦିରରୁ ତ୍ରୟୋଦଶ ଶତାବ୍ଦୀର ଗୋଟିଏ ଲିପି ମିଳିଥିଲା । କିନ୍ତୁ ମନ୍ଦିରର ନିର୍ମାଣକାଳ ସମ୍ବନ୍ଧରେ ଏଥିରୁ ବିଶେଷ କିଛି ଜଣାଯାଏ ନାହିଁ । ଏହାର ଅବସ୍ଥିତି ବିଚାରକଲେ ମନ୍ଦିରଟି ବିନ୍ଦୁସାଗର ଖୋଦିତ ହେବା ପୂର୍ବରୁ ନିର୍ମିତ ହୋଇଥିଲା ବୋଲି ଜଣାଯାଏ । ମନ୍ଦିରଟି କାଳକ୍ରମେ ଅନେକ ପୋତି ହୋଇପଡ଼ିଛି । ଏ ମନ୍ଦିରରେ ଗଜସିଂହ, ଦେଉଳଚାରିଣୀ ପ୍ରଭୃତି ଦେଖାଯାଏ ନାହିଁ । ଶିଳ୍ପର ବିଶେଷତ୍ୱ ଦୃଷ୍ଟିରେ ଏହା ବ୍ରହ୍ମେଶ୍ବର ମନ୍ଦିରଠାରୁ ପୁରାତନ ବୋଲି ଜଣାଯାଏ । ଏହା ଆନୁମାନିକ ଷଷ୍ଠ ଶତାବ୍ଦୀର କୀର୍ତ୍ତି ।

## (୧୨) ଶିଶିରେଶ୍ବର

କପାଳିନୀ ମନ୍ଦିରର ଉତ୍ତରଦିଗରେ ଶିଶିରେଶ୍ବର ମନ୍ଦିର ବିଦ୍ୟମାନ । ଏହି ମନ୍ଦିର ପୂର୍ବମୁଖୀ ଓ ପରଶୁରାମେଶ୍ବର ମନ୍ଦିରର ଅବିକଳ ପ୍ରତିରୂପ ବୋଲି ମନେହୁଏ । ଏ ମନ୍ଦିରର ମୋହନ ଭଗ୍ନଦଶାପନ୍ନ । ବିମାନର ବେଢ଼ାଠାରୁ ସମସ୍ତ ଅଂଶ ଲୁପ୍ତ ହେଲାଣି । ମୋହନର କାରୁକାର୍ଯ୍ୟରେ ଅନେକ ବିଶେଷତ୍ୱ ଅଛି । ମୋହନର କାନ୍ଥରେ ୪ହାତ ଉଚ୍ଚ ଗୋଟିଏ ପଦ୍ମାସନ ବୁଦ୍ଧମୂର୍ତ୍ତି ନିର୍ମିତ ହୋଇଅଛି । ମନ୍ଦିରରେ ଥିବା ଦେବୀମୂର୍ତ୍ତି କୌଣସି ବୌଦ୍ଧମୂର୍ତ୍ତି ବୋଲି ମନେହୁଏ । ହିନ୍ଦୁଧର୍ମର ପୁନଃପ୍ରତିଷ୍ଠା ସମୟରେ ଅନେକ ବୌଦ୍ଧ ଦେବଦେବୀ ହିନ୍ଦୁମାନଙ୍କ ଦ୍ୱାରା ପୂଜିତ

ହୋଇଥିଲେ । ମୋହନର ଛାତର ପ୍ରଥମଧାଡ଼ି ପଥରରେ ଅନେକଦୃଶ୍ୟ ଖୋଦିତ ହୋଇଅଛି । ଅନ୍ୟ କୌଣସି ମନ୍ଦିରରେ ଏପରି ଦେଖାଯାଏ ନାହିଁ । ସମସ୍ତ ବିଷୟ ଆଲୋଚନା କଲେ ଜଣାଯାଏ ଯେ, ମନ୍ଦିରଟି ପରଶୁରାମେଶ୍ୱର ମନ୍ଦିରଠାରୁ କିଞ୍ଚିତ ପୂର୍ବବର୍ତ୍ତୀ ବା ଖ୍ରୀଷ୍ଟୀୟ ୫ମ ଶତାବ୍ଦୀର ପ୍ରଥମ ଭାଗରେ ନିର୍ମିତ । ମନ୍ଦିର ଗାତ୍ରରେ କ୍ଷୁଦ୍ର କ୍ଷୁଦ୍ର ମନ୍ଦିର ପ୍ରତିକୃତି ସ୍ଥାପନପ୍ରଥା ପ୍ରାଚୀନ ବୌଦ୍ଧରୀତିର ଅନୁକରଣ ମାତ୍ର । ବୌଦ୍ଧ ଚୈତ୍ୟର ଗାତ୍ରରେ ଏହିପ୍ରକାର ମନ୍ଦିରର ଅନୁରୂପ କ୍ଷୁଦ୍ର ପ୍ରତିକୃତି ସକଳ ସ୍ଥାନ ପାଇଥାଏ । ତେଣୁ କେତେକଙ୍କ ମତରେ ଏହି ରୀତିର ବ୍ୟବହାର ମନ୍ଦିରର ପ୍ରାଚୀନତ୍ୱ ନିରୂପଣରେ ସହାୟତା କରେ ।

## ପରଶୁରାମେଶ୍ୱରଶ୍ରେଣୀୟ ମନ୍ଦିରର ବିଶେଷତ୍ୱ

(୧) ଲିଙ୍ଗରାଜମନ୍ଦିରଶ୍ରେଣୀୟ ମନ୍ଦିରମାନଙ୍କର ଜଗମୋହନ ପରି ପରଶୁରାମେଶ୍ୱରଶ୍ରେଣୀୟ ମନ୍ଦିରମାନଙ୍କର ମୋହନ ପୀଢ଼ ଦେଉଳ ନୁହେଁ । ଏହାର ମୋହନକୁ ଭାଡ଼ିଆମୋହନ କହନ୍ତି । ମୋହନର ଛାତ ପୀଢ଼ ବା ଚାଳ ପରି ନ ହୋଇ ପାରାଭାଡ଼ି ପରି ହୋଇଥିବାରୁ ଏହାକୁ ଭାଡ଼ିଆମୋହନ କୁହାଯାଏ । ଭାଡ଼ିଆମୋହନ ମଧ୍ୟରେ ବି ଅଳ୍ପ ବହୁତ ପାର୍ଥକ୍ୟ ଦେଖାଯାଏ ।

(୨) ପରଶୁରାମେଶ୍ୱର ମନ୍ଦିରଶ୍ରେଣୀୟ ବିମାନ ଲିଙ୍ଗରାଜ ମନ୍ଦିରର ବିମାନଠାରୁ କେତେକାଂଶରେ ପୃଥକ୍ । ଲିଙ୍ଗରାଜଶ୍ରେଣୀୟ ବିମାନର ରଥଗୁଡ଼ିକ ସ୍ପଷ୍ଟ ଥିବାବେଳେ ଅନ୍ୟଶ୍ରେଣୀୟ ବିମାନର ରେଖଅଂଶ ରଥର ପରିମଳରୁ ବକ୍ର ଆକାର ଧାରଣ କରିଥାଏ । ଲିଙ୍ଗରାଜଶ୍ରେଣୀୟ ମନ୍ଦିରର ରେଖ ଅଂଶ ଅଧାକପାଳୀ ପର୍ଯ୍ୟନ୍ତ ସରଳ । ତା ଉପରୁ ହଠାତ୍ ବକ୍ର ଆକାର ଧାରଣ କରିଥାଏ । କିନ୍ତୁ ପରଶୁରାମେଶ୍ୱର ଶ୍ରେଣୀୟ ରେଖର ଭୁଗ୍ନତା (Curvature) ବୁଦ୍ଧଗୟା ମନ୍ଦିରର ଭୁଗ୍ନତା ବା ବକ୍ର ପରି ଦେଖାଯାଏ ।

(୩) ଲିଙ୍ଗରାଜଶ୍ରେଣୀୟ ମନ୍ଦିରର ବିମାନର ଅନର୍ଥପାଗରେ କ୍ଷୁଦ୍ରାକୃତି ମନ୍ଦିରର ପ୍ରତିକୃତିସକଳ ଆମୂଳଚୂଳ ନିର୍ମିତ ହୋଇଥାଏ । କିନ୍ତୁ ପରଶୁରାମେଶ୍ୱର ଜାତୀୟ ମନ୍ଦିରର ଅନର୍ଥପାଗରେ କ୍ଷୁଦ୍ରାକୃତି ମନ୍ଦିର ଆଦୌ ଦେଖାଯାଏ ନାହିଁ । ଏହା ପରିବର୍ତ୍ତେ ୩ଟି medallion ସଂଯୁକ୍ତ ସାଦା କାମ ଅନ୍ୟ ପାଗମାନଙ୍କର ରେଖ ଅଂଶରେ ଦେଖାଯାଏ ।

(୪) ପରଶୁରାମେଶ୍ୱରଜାତୀୟ ମନ୍ଦିରମାନଙ୍କରେ ବିମାନ ଓ ଜଗମୋହନ ମଧ୍ୟରେ ବହୁତ ସ୍ଥାନ ବ୍ୟବଧାନ ଥାଏ । ତାହାକୁ ଛାଡ଼େଣୀ ବୋଲି କହନ୍ତି । କିନ୍ତୁ ଲିଙ୍ଗରାଜଶ୍ରେଣୀୟ ମନ୍ଦିରରେ ଏପରି ଛାଡ଼େଣୀ ଦେଖାଯାଏ ନାହିଁ । ଏଥିରେ ବିମାନ ଓ ଜଗମୋହନ ଏକତ୍ର ସଂଶ୍ଲିଷ୍ଟ ।

(୫) ପରଶୁରାମେଶ୍ୱରଜାତୀୟ ବିମାନର ଜଙ୍ଘାରେ ମନ୍ଦିରର ନିମ୍ନାଂଶରେ ଭଦ୍ରଘଟ ବା 'ପୁଷ୍ପାଚ୍ଛାଦିତ କଳସ'ର ଚିତ୍ର ଦେଖିବାକୁ ମିଳେ । ବୌଦ୍ଧଶିଳ୍ପୀମାନେ ହୀନଯାନଧର୍ମ ପ୍ରଚାର ସମୟରେ ବୁଦ୍ଧଙ୍କ ମୂର୍ତ୍ତି ନିର୍ମାଣ ନ କରି ବୁଦ୍ଧଙ୍କର ଜୀବନର ବିଶିଷ୍ଟ ଘଟଣାମାନଙ୍କୁ ବିଭିନ୍ନ ପ୍ରତିମୂର୍ତ୍ତିଦ୍ୱାରା ସୂଚାଉଥିଲେ । 'ଭଦ୍ରଘଟ' ବୁଦ୍ଧଜନ୍ମର ଏକ ରୂପକ (Symbol) । ଏଗୁଡ଼ିକ ଅତି ରମଣୀୟ ଓ ମନ୍ଦିରର ସୌନ୍ଦର୍ଯ୍ୟ ବିଶେଷଭାବରେ ବୃଦ୍ଧି କରିଥାଏ । କିନ୍ତୁ ଲିଙ୍ଗରାଜଶ୍ରେଣୀୟ ମନ୍ଦିରରେ ଭଦ୍ରଘଟର ବିଶେଷ ଅଭାବ ଲକ୍ଷିତ ହୁଏ ।

(୬) ପରଶୁରାମେଶ୍ୱରଜାତୀୟ ବିମାନର ରାହାପାଗର ମଧ୍ୟଭାଗରେ ଗଜସିଂହ (Projecting) ମୂର୍ତ୍ତି ଦେଖାଯାଏ ନାହିଁ । ପରବର୍ତ୍ତୀ କାଳରେ ନିର୍ମିତ ଲିଙ୍ଗରାଜଶ୍ରେଣୀୟ ମନ୍ଦିରରେ ଗଜସିଂହମୂର୍ତ୍ତି ନିର୍ମାଣକରିବା ଗୋଟିଏ ପ୍ରଧାନ ନିୟମ ହୋଇଥିଲା । ତେଣୁ ଅତି ନଗଣ୍ୟ ମନ୍ଦିରରେ ମଧ୍ୟ ଗଜସିଂହମୂର୍ତ୍ତି ଦେଖାଯାଏ ।

(୭) ପରଶୁରାମେଶ୍ୱରଶ୍ରେଣୀୟ ମନ୍ଦିରମାନଙ୍କରେ ଅଁଳାପଥର ଓ ବାଡ଼ଚକଡ଼ା ମଧ୍ୟରେ ଦେଉଳଚାରିଣୀ ଦିପିଚାସିଂହ ଦେଖାଯାଏ ନାହିଁ । କିନ୍ତୁ ଲିଙ୍ଗରାଜଶ୍ରେଣୀୟ ମନ୍ଦିରରେ ଏଗୁଡ଼ିକ ଖୋଦିତ ହୋଇଥିବାରୁ ମନ୍ଦିର ଅଧିକ ସୁନ୍ଦର ଦେଖାଯାଏ । ପରଶୁରାମେଶ୍ୱରଶ୍ରେଣୀୟ ମନ୍ଦିରମାନଙ୍କରେ 'ଭୋ'ର ବହୁଳ ବ୍ୟବହାର ପ୍ରତ୍ୟେକ ଦର୍ଶକର ଦୃଷ୍ଟି ଆକର୍ଷଣ କରିଥାଏ । ଲିଙ୍ଗରାଜଜାତୀୟ ମନ୍ଦିରରେ ଭୋ ଥିଲେ ମଧ୍ୟ ଏପରି ବହୁଳ ଭାବରେ ଚିତ୍ରିତ ହୋଇନଥାଏ ।

(୯) ପରଶୁରାମେଶ୍ୱରଜାତୀୟ ମନ୍ଦିରର ଜଗମୋହନ ଦ୍ୱାରରେ ନବଗ୍ରହ ମୂର୍ତ୍ତି ଦେଖାଯାଏ ନାହିଁ । କିନ୍ତୁ ଲିଙ୍ଗରାଜଶ୍ରେଣୀୟ ମନ୍ଦିରରେ ବିମାନ ତଥା ଜଗମୋହନରେ ନବଗ୍ରହମୂର୍ତ୍ତି ଖୋଦିତ ହୋଇଥିବାର ଦେଖାଯାଏ ।

(୧୦) ଏତଦ୍‌ବ୍ୟତୀତ ଉକ୍ତଜାତୀୟ ମନ୍ଦିରର ଆହୁରି କେତେକ ବିଶେଷତ୍ୱ ଅଛି । ଯଥା ବାଡ଼ର ଅଗ୍ରଭାଗରେ ଗଜସିଂହମୂର୍ତ୍ତି ଏକଯୋଡ଼ା ଖୋଦିତ

ହୋଇଥିବାର ଦେଖାଯାଏ । ପିରାମିଡ୍ ସଦୃଶ (Pyramidal battlement) ସୋପାନ ଶ୍ରେଣୀର ଚିତ୍ର ଜଙ୍ଘାର ବସନ୍ତର ତଳେ ଦେଖାଯାଏ । ପ୍ରସ୍ଫୁଟିତ ପଦ୍ମର ଅର୍ଦ୍ଧାଂଶ ବା ତିନିପା(୩/୪) ପକ୍ଷୀପୁଚ୍ଛରୁ ପତ୍ରପୁଷ୍ପଶୋଭିତ ଲତାର ସମୁଦ୍ଭବ (Floral devices issuing from the tail of birds) ଦେଖାଯାଏ । ବରହୁତ୍, ସାଞ୍ଚୀ ପ୍ରଭୃତି ବୌଦ୍ଧକାର୍ଯ୍ୟରେ ଏ ସମସ୍ତ ଶିଳାଙ୍ଗ(device) ଦେଖାଯାଏ । ତେଣୁ ପରଶୁରାମେଶ୍ୱରଶ୍ରେଣୀୟ ମନ୍ଦିରରେ ବୌଦ୍ଧଶିଳ୍ପର ପ୍ରଭାବ ଅଧିକ ଭାଗରେ ଲକ୍ଷିତ ହୁଏ ।

ପରଶୁରାମେଶ୍ୱରଜାତୀୟ ପ୍ରତ୍ୟେକ ମନ୍ଦିର ସମ୍ବନ୍ଧରେ କିଛି ଆଲୋଚନା କରିବାପୂର୍ବରୁ ଏ ସକଳ ବିଶେଷତ୍ୱ ଉତ୍ତମରୂପେ ହୃଦୟଙ୍ଗମ କରିବା ଆବଶ୍ୟକ । ତା ନ ହେଲେ ଶିଳ୍ପ ସମ୍ବନ୍ଧରେ ପରିପକ୍ୱ ଜ୍ଞାନ ଲାଭ ହୋଇପାରିବ ନାହିଁ । ଲିଙ୍ଗରାଜଶ୍ରେଣୀୟ ମନ୍ଦିରମାନ ପୂର୍ବୋକ୍ତ ଶ୍ରେଣୀୟ ମନ୍ଦିରମାନଙ୍କଠାରୁ ଯେ ପରବର୍ତ୍ତୀ ଏଥିରେ ଆଦୌ ସନ୍ଦେହ ନାହିଁ । ରାହାପାଗମଧ୍ୟସ୍ଥ ଗଜସିଂହ, ବେକୀର ପିଡା ସିଂହ, ଦେଉଳଚାରିଣୀ ପ୍ରଭୃତି ପରବର୍ତ୍ତୀ କାଳରେ ନିର୍ମିତ ଲିଙ୍ଗରାଜ ଶ୍ରେଣୀୟ ମନ୍ଦିରର ବିମାନରେ ଯୁକ୍ତହୋଇ ମନ୍ଦିରର ସୌଷ୍ଠବ ବୃଦ୍ଧି କରିଅଛି । ଲିଙ୍ଗରାଜଜାତୀୟ ବିମାନର ଭୁଗ୍ନତା, ରଥମାନଙ୍କ ପ୍ରାଧାନ୍ୟ(Prominence) ଓ ମନ୍ଦିରଗାତ୍ରରେ ଅନର୍ଥପାଗରେ ଥିବା କ୍ଷୁଦ୍ରକ୍ଷୁଦ୍ର ମନ୍ଦିର ନିର୍ମାଣ ପ୍ରଣାଳୀରେ ବିମାନର ଅଙ୍ଗ ପ୍ରତ୍ୟଙ୍ଗ ବୃଦ୍ଧିର ବିକାଶରେ ଶିଳ୍ପର କ୍ରମବିକାଶ ଘଟିଥିବାର ଦେଖାଯାଏ ।

ପରଶୁରାମେଶ୍ୱରଜାତୀୟ ମନ୍ଦିରର ବିଭିନ୍ନାଙ୍ଗର ଉତ୍କର୍ଷ ସାଧିତ ହୋଇନଥିଲା । ଲିଙ୍ଗରାଜଜାତୀୟ ମନ୍ଦିରମାନଙ୍କର ଗଡ଼ଣ ଭୂମିଠାରୁ ରେଖଅଂଶ ମଧ୍ୟରେ ୫ ଭାଗରେ ବିଭକ୍ତ, ଯଥା: (୧) ତଳ ଜଙ୍ଘା, (୨) ସାକର ବା ବରାଣ୍ଡି, (୩)ବନ୍ଧନା, (୪)ଉପରବରାଣ୍ଡି ବା ସିକର (୫)ଉପରଜଙ୍ଘା । ତଳଜଙ୍ଘାରେ ୫କାମ, ବନ୍ଧନରେ ୩କାମ, ଉପରଜଙ୍ଘାରେ ୭କାମ । ଉପରଜଙ୍ଘାଠାରୁ ଘଡ଼ିଚକଡ଼ା ମଧ୍ୟରେ ରେଖ ଅଂଶରେ ପାଗଗୁଡ଼ିକ ସ୍ପଷ୍ଟ ଓ ୫ଭୂମିରେ ବିଭକ୍ତ । ଘଡ଼ିଚକଡ଼ାଠାରୁ ମନ୍ଦିରର ଚକ୍ର ବା ତ୍ରିଶୂଳ ପର୍ଯ୍ୟନ୍ତ ୬ଟି କାମ, ଯଥା: ବେକି, ଅଁଏଳା, ତ୍ରିପଟଧାର, କଳସପାଦ, କଳସ, କଳସଗାଦୀ ଲିଙ୍ଗରାଜଜାତୀୟ ମନ୍ଦିରରେ ଉତ୍କଳୀୟ ଶିଳ୍ପରେ ଉନ୍ନତିର ଚରମସୀମାରେ ପହଞ୍ଚିଥିଲା । ଏଥିରେ ପ୍ରତ୍ୟେକ ଅଂଶ ପୂର୍ଣ୍ଣଭାବରେ ବିକଶିତ ଓ ସମ୍ପୂର୍ଣ୍ଣ ପୃଥକ୍ । କାମମାନଙ୍କ ମଧ୍ୟରେ

କୌଣସି ଗୋଳମାଳ ଦେଖାଯାଏ ନାହିଁ । ମନ୍ଦିରଟି ପୂର୍ଣ୍ଣାଙ୍ଗ ଓ ପୂର୍ଣ୍ଣ ସୌନ୍ଦର୍ଯ୍ୟରେ ଶୋଭମାନ । କିନ୍ତୁ ପରଶୁରାମେଶ୍ୱରଜାତୀୟ ମନ୍ଦିରରେ ଏ ସମସ୍ତ ଅଙ୍ଗ ବା କାମ ଅଳ୍ପବହୁତ ଦେଖାଗଲେ ମଧ୍ୟ ଏଗୁଡ଼ିକର ପୂର୍ଣ୍ଣ ବିକାଶ ସାଧିତ ହୋଇନାହିଁ । ବିମାନର ତଳଜଙ୍ଘାରେ ୫କାମ ପରିବର୍ତ୍ତେ ୩ଟି କାମ ଅଛି ଓ କୁମ୍ଭ ପରିବର୍ତ୍ତେ କୁମୁଦ ବ୍ୟବହୃତ ହୋଇଅଛି । ଅନ୍ୟ ଚାରୋଟି ଅଂଶ ଯଥା-ବରାଣ୍ଡି, ବନ୍ଧନା, ଉପର ବରାଣ୍ଡି, ଉପର ଜଙ୍ଘା ମଧ୍ୟ ସେହିପରି ପୂର୍ଣ୍ଣ ବିକାଶ ଲାଭ କରି ନାହିଁ । ଲିଙ୍ଗରାଜ ମନ୍ଦିରରେ ଶିଳ୍ପୀମାନେ ବିଧିବଦ୍ଧ ନିୟମ ପାଳନ କରି ମନ୍ଦିରଟିକୁ ନିର୍ମାଣ କରିଛନ୍ତି । ଏଥିରେ ପାଗର ମଧ୍ୟସ୍ଥିତ ସ୍ଥାନମାନଙ୍କରେ ନର୍ତ୍ତକୀ, କଦମ୍ବ, ଗନ୍ଧର୍ବ, କିନ୍ନର ପ୍ରଭୃତିର ମୂର୍ତ୍ତି ପ୍ରଦତ୍ତ ହୋଇଥାଏ । ତେଣୁ ଲିଙ୍ଗରାଜଜାତୀୟ ବିମାନ ପୂର୍ବୋକ୍ତଶ୍ରେଣୀୟ ବିମାନର ଚରମ ପରିଣତି ବୋଲି ମନେହୁଏ । ଉତ୍କଳୀୟ ଶିଳ୍ପୀ ଲିଙ୍ଗରାଜମନ୍ଦିରରେ ଶିଳ୍ପର ପରାକାଷ୍ଠା ଦେଖାଇ ଦେଇଛି । ଲିଙ୍ଗରାଜଶ୍ରେଣୀୟ ମନ୍ଦିରମାନଙ୍କର ଶିଳ୍ପ-ଇତିହାସ ଓ ବିବରଣୀ ଜାଣିବା ପାଇଁ ସେହି ମନ୍ଦିର ସମ୍ବନ୍ଧରେ ବିଶେଷ ବିବରଣୀ ଜାଣିବା ଆବଶ୍ୟକ ।

## ମନ୍ଦିରମାନଙ୍କରେ ବୌଦ୍ଧପ୍ରଭାବ

ପରଶୁରାମେଶ୍ୱରଶ୍ରେଣୀୟ ମନ୍ଦିରରେ ବୌଦ୍ଧଧର୍ମର ପ୍ରଭାବ ସ୍ପଷ୍ଟ ଲକ୍ଷିତ ହୁଏ । କେତେକମନ୍ଦିରରେ ଲିଙ୍ଗମୂର୍ତ୍ତି ଭକ୍ତମାନଙ୍କଦ୍ୱାରା ପୂଜିତ ହେଉଥିବାର ଚିତ୍ର ଦେଖାଯାଏ । ଉକ୍ତ ମନ୍ଦିରନିର୍ମାଣ ସମୟକୁ ଉତ୍କଳରେ ଲିଙ୍ଗଧର୍ମ ନୂତନ ପ୍ରଚଳିତ ହେଉଥିଲା ବୋଲି ମନେହୁଏ । ଭାରତୀୟଶିଳ୍ପର ଇତିହାସ ଆଲୋଚନା କଲେ ଜଣାଯାଏ ଯେ, ଧର୍ମ ସହିତ ଶିଳ୍ପ ଇତିହାସର ଘନିଷ୍ଠ ସମ୍ପର୍କ ବିଦ୍ୟମାନ ।

ହରପ୍ପା ଓ ମହେଞ୍ଜୋଦାରୋର କୀର୍ତ୍ତିଠାରୁ ଆରମ୍ଭ କରି ମୋଗଲ ବାଦଶାହଙ୍କ ମସଜିଦ୍‌ପର୍ଯ୍ୟନ୍ତ ପ୍ରତ୍ୟେକ ଯୁଗର କୀର୍ତ୍ତି ଧର୍ମଦ୍ୱାରା ଅନୁପ୍ରାଣିତ । ସାଞ୍ଚୀ, ବରହୁତ୍ ଓ ସାରନାଥ କୀର୍ତ୍ତିରେ ହୀନଯାନଧର୍ମ ଓ ଗାନ୍ଧାର ଶିଳ୍ପରେ ମହାଯାନଧର୍ମର ପ୍ରଭାବ ଦେଖାଯାଏ । ବୌଦ୍ଧଯୁଗରେ ସ୍ତୂପ ନିର୍ମାଣକୁ ସମସ୍ତେ ପ୍ରଶଂସା କରୁଥିଲେ । ତେଣୁ ବୌଦ୍ଧକୀର୍ତ୍ତିମାନଙ୍କରେ ସ୍ତୂପର କ୍ଷୁଦ୍ର କ୍ଷୁଦ୍ର ଚିତ୍ର ଦେଖାଯାଏ । ସେହି ମନ୍ଦିରଗୁଡ଼ିକର ଗାତ୍ରରେ ଲିଙ୍ଗପୂଜାର ଚିତ୍ର ବହୁଳଭାବରେ ଖୋଦିତ ହୋଇଥିବାରୁ ସ୍ପଷ୍ଟ ଜଣାଯାଏ ଯେ, ଉକ୍ତଯୁଗରେ ବୌଦ୍ଧଧର୍ମର ପ୍ରାଧାନ୍ୟ ହ୍ରାସ କରିବା ପାଇଁ ହିନ୍ଦୁମାନେ ଲିଙ୍ଗପୂଜା ବିଶେଷଭାବରେ ପ୍ରଚଳନ କରୁଥିଲେ ।

କିନ୍ତୁ ଶିଳ୍ପୀମାନେ ଶୈବଧର୍ମର ପ୍ରାଧାନ୍ୟ ବିସ୍ତାରକରିବାକୁ ଚେଷ୍ଟାକଲେ ସୁଦ୍ଧା ଅଜ୍ଞାତସାରରେ ବୌଦ୍ଧଶିଳ୍ପୀମାନଙ୍କୁ ଅନୁକରଣ କରି ନିଜର ଧର୍ମମନ୍ଦିରସକଳ ନିର୍ମାଣ କରିଛନ୍ତି । ସେହି ମନ୍ଦିରମାନଙ୍କରେ ବିଶେଷଭାବରେ ବୌଦ୍ଧପ୍ରଭାବ ପଡ଼ିଥିବାର ଦେଖି ନିଃସନ୍ଦେହରେ କୁହାଯାଇପାରେ ଯେ, ଏଗୁଡ଼ିକ ଭୁବନେଶ୍ୱରର ପ୍ରାଚୀନତମ ମନ୍ଦିର । ଶିଳାଲିପିମାନଙ୍କରୁ ମଧ ଏକଥା ଜଣାଯାଏ । ଏ ଜାତୀୟ ମନ୍ଦିର ଖ୍ରୀଷ୍ଟୀୟ ୩ୟ ଶତାବ୍ଦୀଠାରୁ ଖ୍ରୀଷ୍ଟୀୟ ୬ଷ୍ଠ ଶତାବ୍ଦୀ ମଧ୍ୟରେ ନିର୍ମିତ ହୋଇଥିବାର ଅନୁମିତ ହୁଏ ।

## କପାଳିନୀ ମନ୍ଦିର

ସ୍ଥାନୀୟ ଲୋକେ ଏହାକୁ ବୈତାଳ ଦେଉଳ ବୋଲି କହନ୍ତି । କିନ୍ତୁ ଏହାର ପ୍ରକୃତ ନାମ  କପାଳିନୀ ବା କପାଳେଶ୍ୱରୀ ମନ୍ଦିର । ଏହାର ଚୂଡ଼ା ବୋଇତ ବା ଜାହାଜପରି ଦେଖାଯାଉଥିବାରୁ ଏହା ପରବର୍ତ୍ତୀକାଳରେ ବୈତାଳଦେଉଳ ନାମରେ ଅଭିହିତ ହେଲା । ଏହା ପରଶୁରାମେଶ୍ୱରଶ୍ରେଣୀୟ ମନ୍ଦିରମାନଙ୍କ ମଧ୍ୟରେ ସବୁଠାରୁ ସୁନ୍ଦର ଓ ସୁଦୃଢ଼ ।

ଏହି ମନ୍ଦିରର ମୋହନର ଚାରିକୋଣରେ ଚାରୋଟି ତ୍ରିରଥ ମନ୍ଦିର ବିଦ୍ୟମାନ । ଦକ୍ଷିଣପାର୍ଶ୍ୱରେ ଦ୍ୱାର ନ ଥାଇ ଜାଲିଝରକାଟିଏ ଅଛି । ମୋହନଟି ଭାଡ଼ିଆମୋହନ । କିନ୍ତୁ ମୋହନଭିତରେ ଉତ୍ତର ଓ ଦକ୍ଷିଣ କାନ୍ଥ ଦେହରୁ କ୍ଷୁଦ୍ର କ୍ଷୁଦ୍ର ପ୍ରାଚୀରମାନ ବାହାରି ଛାତର ଆଶ୍ରୟ ସ୍ୱରୂପ ହୋଇଛି । ଏହା ମଧ୍ୟରେ ମାର୍କଣ୍ଡେଶ୍ୱର ବା ପରଶୁରାମେଶ୍ୱର ମନ୍ଦିରପରି ସ୍ତମ୍ଭ ନିର୍ମିତ ହୋଇନାହିଁ । ମୋହନର ବାହାର ପାଗମାନଙ୍କରେ କାରୁକାର୍ଯ୍ୟ ଖୋଦିତ ହୋଇନାହିଁ । ଏହାର ସାରଲ୍ୟ ମନ୍ଦିରର ସୌନ୍ଦର୍ଯ୍ୟକୁ କୌଣସି ପ୍ରକାର କ୍ଷୁଣ୍ଣ କରୁନାହିଁ ।

କପାଳିନୀମନ୍ଦିରର ମୋହନ ପରଶୁରାମେଶ୍ୱରମନ୍ଦିରଶ୍ରେଣୀୟ ହେଲେ ମଧ ବିମାନଟି ଏ ପ୍ରକାର ମନ୍ଦିରଗୁଡ଼ିକର ଗଠନ ପ୍ରଣାଳୀଠାରୁ ସମ୍ପୂର୍ଣ୍ଣ ସ୍ୱତନ୍ତ୍ର । ବିମାନ ଚତୁରସ୍ର ବା ଏକରଥ ବିଶିଷ୍ଟ । ଚତୁରସ୍ର ହେଲେ ମଧ ଏହାର ବାଡ଼ ଅଂଶରେ ୫ଟି ରଥ ବା ସ୍ତମ୍ଭ ବିଦ୍ୟମାନ । କିନ୍ତୁ ଲିଙ୍ଗରାଜମନ୍ଦିରଶ୍ରେଣୀୟ ମନ୍ଦିର ମାନଙ୍କର ପାଗଠାରୁ ଏହା ସମ୍ପୂର୍ଣ୍ଣ ସ୍ୱତନ୍ତ୍ର । ରେଖ ଅଂଶର ସ୍ୱତନ୍ତ୍ରତା ଏହାକୁ ଭୁବନେଶ୍ୱରର ମନ୍ଦିରମାନଙ୍କ ମଧ୍ୟରେ ଗୋଟିଏ ବିଶିଷ୍ଟସ୍ଥାନ ଦେଇଅଛି । ଜଙ୍ଘାରେ

ପାଞ୍ଚ କାମ ଦେଖାଯାଏ ନାହିଁ । ଏଥିରେ କଣି ନାହିଁ । ବାଡ଼ଟି ଜଙ୍ଘା ଓ ବରଣ୍ଡିର ସମଷ୍ଟି, ବନ୍ଧ ନାହିଁ । କଳସ ପରିବର୍ତ୍ତେ ଉଦ୍ରଘଟମାନ ଦେଖାଯାଏ । ବୈତାଳମନ୍ଦିରର ପାଦ ପର୍ଯ୍ୟନ୍ତ ବାଡ଼ ବୋଲି ଧରାଯାଇପାରେ । ବୈତାଳ ମନ୍ଦିର ଦୁଇଭାଗରେ ବିଭକ୍ତ, ଯଥା - (୧)ବୈତାଳ ପାଦ ଓ (୨) ବୈତାଳ ମସ୍ତକ । ପାଦ ଅଂଶରେ ହସ୍ତୀଯୂଥର ଚିତ୍ର ଅତୀବ ରମଣୀୟ । ପାଦ ଓ ମସ୍ତକ ମଧ୍ୟରେ ମଧ୍ୟ ବ୍ୟବଧାନ ଥିବାର ଦେଖାଯାଏ । ଏଥିରେ ଖୋଦିତ ହୋଇଥିବା ଚିତ୍ରଗୁଡ଼ିକ ବର୍ତ୍ତମାନ ନଷ୍ଟ ହୋଇଯାଇଛି । ମସ୍ତକଟି ପୂର୍ବରୁ ପଶ୍ଚିମକୁ ଅର୍ଦ୍ଧବୃତ୍ତରୂପେ ଏବଂ ଦକ୍ଷିଣ ଓ ଉତ୍ତର ପାର୍ଶ୍ୱରୁ ଏକ ମୋଟର ଇଞ୍ଜିନ୍ ପରି ଦେଖାଯାଏ । ମସ୍ତକ ଉପରେ ତିନୋଟି ଅଁଳା ଉପରେ ତିନୋଟି କଳସ ନିର୍ମିତ ହୋଇଛି । ଭୁବନେଶ୍ୱରର ଅନ୍ୟ କୌଣସି ମନ୍ଦିରର ଚୂଡ଼ାରେ ତିନୋଟି ଅଁଳା ଥିବାର ଦେଖାଯାଏ ନାହିଁ । ପାଦଅଂଶର ଉତ୍ତର ଓ ଦକ୍ଷିଣ ଭାଗ ସିଧା ଓ ଏଥିରେ ଗୋଟିଏ କାଠି ଝରକା ନିର୍ମିତ ହୋଇଛି । ସାଧାରଣତଃ ମନ୍ଦିରମାନଙ୍କରେ ତିନୋଟି ପାର୍ଶ୍ୱମୂର୍ତ୍ତି ଥାଏ । କିନ୍ତୁ ଏ ମନ୍ଦିରରେ ଉତ୍ତର ଓ ଦକ୍ଷିଣ ଦିଗରେ ଦୁଇଟି ପାର୍ଶ୍ୱମୂର୍ତ୍ତି ନିର୍ମିତ ହୋଇଅଛି । ପଶ୍ଚିମ ପଟରେ କୌଣସି ପାର୍ଶ୍ୱମୂର୍ତ୍ତି ଖୋଦିତ ବା ନିର୍ମିତ ହୋଇନଥିଲେ ମଧ୍ୟ ୫ଟି ପାଗଦେହରେ ୫ଟି ମୂର୍ତ୍ତି ଖୋଦିତ ହୋଇଛି । ତୃତୀୟ ମୂର୍ତ୍ତିଟି ହରପାର୍ବତୀଙ୍କ ଅର୍ଦ୍ଧନାରୀଶ୍ୱର ।

ଉତ୍ତରଦିଗ ମଧ୍ୟଭାଗରେ ମହିଷମର୍ଦ୍ଦିନୀ ଅଷ୍ଟଭୁଜାଦୁର୍ଗାମୂର୍ତ୍ତି ଖୋଦିତ ହୋଇଛି । ଏ ମୂର୍ତ୍ତି ଖଡ୍ଗ, ଢାଲ, ତ୍ରିଶୂଳ, ସର୍ପ, ବର୍ଚ୍ଛା, ଧନୁଶର, କୃପାଣ ଆଦି ଅସ୍ତ୍ରମାନ ହସ୍ତରେ ଧାରଣ କରିଛନ୍ତି । ଏଥିରୁ ମହିଷମର୍ଦ୍ଦିନୀ ଦୁର୍ଗାମୂର୍ତ୍ତି ଅନ୍ତତଃ ଖ୍ରୀଷ୍ଟୀୟ ୬ଷ୍ଠ ଶତାବ୍ଦୀବେଳକୁ ହିନ୍ଦୁମାନଙ୍କର ଆରାଧ୍ୟଦେବତା ରୂପେ ପରିଗଣିତ ହୋଇଥିବାର ଜଣାଯାଏ । ଏହା ଦୁର୍ଗାପୂଜାର ଇତିହାସ ଆଲୋଚନା ପାଇଁ ବିଶେଷ ଉପାଦେୟ । ଯେଉଁମାନେ ଦୁର୍ଗାପୂଜାକୁ ଅର୍ବାଚୀନ ବୋଲି ମନେକରନ୍ତି ଏ ମୂର୍ତ୍ତି ଦର୍ଶନରେ ସେମାନଙ୍କର ସେହି ଭ୍ରାନ୍ତଧାରଣା ଦୂରୀଭୂତ ହେବ ।

ବିମାନର ପୂର୍ବାଂଶରେ ମଧ୍ୟ ଅନେକ ବିଶେଷତ୍ୱ ଦେଖାଯାଏ । ସାଧାରଣତଃ ରେଖଦେଉଳମାନଙ୍କଠାରୁ ଏହା ସମ୍ପୂର୍ଣ୍ଣ ସ୍ୱତନ୍ତ୍ର । ଏହା ଦୂରରୁ କଟକର ଦୁର୍ଗାମେଢ଼ ପରି ଦେଖାଯାଏ । ଏହାର ଉପରେ ଗଜସିଂହମୂର୍ତ୍ତି ଦେଖାଯାଏ । ସ୍ୱର୍ଗୀୟ ମନମୋହନ ଗାଙ୍ଗୁଲିଙ୍କ ମତରେ ଦାକ୍ଷିଣାତ୍ୟର ଗୋପୁର ସହିତ ଏହାର ଅନେକ

ସାଦୃଶ୍ୟ ରହିଛି । ଉତ୍ତରଭାରତୀୟ ଶିଳ୍ପରେ ଏପରି ଦେଖାଯାଏ ନାହିଁ । ଏଥିରେ ଦୁଇଟି 'ଭୋ' । ମେଢ ଦେହରେ ମୂର୍ତ୍ତି ଖଞ୍ଜା ହେଲାପରି ଦେଖାଯାଏ । ତଳ 'ନାରାୟଣ ଭୋ', ଉପରଟି 'ତାଣ୍ଡବ ନୃତ୍ୟ ଭୋ' । ମନ୍ଦିରଟି ମହାବଳୀପୁରର ରଥପରି ଦେଖାଯାଏ ଓ ଏଥିରେ ଦ୍ରାବିଡ଼ୀୟ ଶିଳ୍ପର ପ୍ରଭାବ ଲକ୍ଷିତ ହୁଏ ବୋଲି ମନମୋହନ ଗାଙ୍ଗୁଲିଙ୍କ ମତ ।

ମହାବଳୀପୁରର ରଥ ଖ୍ରୀଷ୍ଟୀୟ ୪ର୍ଥ ଶତାବ୍ଦୀର ପରବର୍ତ୍ତୀ ନୁହେଁ ବୋଲି ମନମୋହନ ଗାଙ୍ଗୁଲି ମତପ୍ରକାଶ କରିଛନ୍ତି ।

**କପାଳିନୀ ମନ୍ଦିରର ସମୟ**

କେଶରୀବଂଶୀୟ ରାଜାଙ୍କ ରାଜତ୍ୱପୂର୍ବରୁ ବା ଖ୍ରୀଷ୍ଟୀୟ ୬ଷ୍ଠ ଶତାବ୍ଦୀର ଶେଷପୂର୍ବରୁ ଉତ୍କଳଶିଳ୍ପରେ ଦାକ୍ଷିଣାତ୍ୟର ପ୍ରଭାବ ପଡ଼ିଥିବା ସମ୍ଭବପର । କାରଣ କେଶରୀବଂଶୀୟ ରାଜାମାନଙ୍କ ସମୟରେ ଉତ୍କଳର ଶିଳ୍ପ, ସାହିତ୍ୟ ଓ ସମାଜ ଉପରେ ଉତ୍ତରଭାରତର ପ୍ରଭାବ ବିଶେଷ ଭାବରେ ପଡ଼ିଥିବାର ଜଣାଯାଏ । କେଶରୀବଂଶୀୟ କୌଣସି ରାଜା ଏପରି ମନ୍ଦିର ନିର୍ମାଣ କରିଥିବା ସମ୍ଭବ ନୁହେଁ । ତେଣୁ ଏହା ଷଷ୍ଠ ଶତାବ୍ଦୀର ପୂର୍ବବର୍ତ୍ତୀ ବୋଲି କହିବା ସମୀଚୀନ । ମନ୍ଦିରରେ ବୌଦ୍ଧ ପ୍ରଭାବ ବିଶେଷ ଭାବରେ ଲକ୍ଷିତ ହୁଏ । ଏ ମନ୍ଦିରରେ ତିନି ଚାରୋଟି ପ୍ରାଚୀନ ଶିଳାଲିପି ବିଦ୍ୟମାନ । ଏଗୁଡ଼ିକ ଅତିପ୍ରାଚୀନ ବୋଲି ମନେହୁଏ ।





ଯମେଶ୍ୱର



ମୋହିନୀ ମନ୍ଦିର

## ଅଷ୍ଟମ ଅଧ୍ୟାୟ
# ଅଷ୍ଟ ଆୟତନ

ବ୍ରହ୍ମପୁରାଣର ଉତ୍କଳଦେଶ ବର୍ଣ୍ଣନା ବିଷୟ ଦ୍ୱାଦଶ ଶତାବ୍ଦୀର ଶେଷଭାଗରେ ଲିଖିତ ହୋଇଥିବାର ଜଣାଯାଏ । ଏଥିରେ ବର୍ଣ୍ଣିତ ବିଷୟଗୁଡ଼ିକରୁ ଜଣାଯାଏ ଯେ ଉକ୍ତପୁରାଣ ରଚିତ ହେବାବେଳକୁ ଭୁବନେଶ୍ୱର ସମଗ୍ର ଭାରତର ଗୋଟିଏ ପ୍ରସିଦ୍ଧ ତୀର୍ଥ ରୂପେ ପରିଗଣିତ ହୋଇଥିଲା ।

ଶୃଣୁଧ୍ୱଂ ମୁନିଶାର୍ଦ୍ଦୂଳାଃ ପ୍ରବକ୍ଷ୍ୟାମି ସମାସତଃ ।
ସର୍ବପାପହରଂ ପୁଣ୍ୟଂ କ୍ଷେତ୍ରଂ ପରମଦୁର୍ଲଭମ୍ ॥

ଲିଙ୍ଗକୋଟିସମାଯୁକ୍ତଂ ବାରଣାସୀସମଂଶୁଭଂ ।
ଏକାମ୍ରକେତି ବିଖ୍ୟାତଂ ତୀର୍ଥାଷ୍ଟକସମନ୍ୱିତଂ ॥

ହୃଷ୍ଟପୁଷ୍ଟଜନାକୀର୍ଣ୍ଣଂ ନରନାରୀ ସମନ୍ୱିତମ୍ ।
ବିଦ୍ୟାବିବୁଧଭୂୟିଷ୍ଟଂ ଧନଧାନ୍ୟାଦିସଂଯୁତମ୍ ॥

ଗୃହଗୋକୁଳ ସମ୍ବାଧଂ ଗୋପୁରୈଶ୍ଚ ସୁଭୂଷିତଂ ।
ନାନାବଣିକ୍ସମାକୀର୍ଣ୍ଣଂ ନାନାରତ୍ନୋପଶୋଭିତମ୍ ॥

ପୁରାଟ୍ଟାଳକସଂଯୁକ୍ତଂ ବୀଥିଭିଃ ସମଳଂକୃତଂ ।
ରାଜହଂସନିଭୈଃ ଶୁଭ୍ରୈଃ ପ୍ରାସାଦୈରୁପଶୋଭିତମ୍ ॥

ତ୍ରିକକ୍ଷଦ୍ୱାରସଂଯୁକ୍ତଂ ସିତପ୍ରାକାରଶୋଭିତଂ ।
ରିଖାଭିରଲଙ୍କୃତମ୍ ॥

ସିତରକ୍ତୈସ୍ତଥାପୀତୈଃ କୃଷ୍ଣଶ୍ୟାମୈଶ୍ଚ ବର୍ଣ୍ଣକୈଃ ।
ସମୀରଣୋଡ୍ଡୀନାଭିଶ୍ଚ ପତାକାଭିରଲଙ୍କୃତମ୍ ॥

ସ୍ୱର୍ଣ୍ଣାଦ୍ରିମହୋଦୟ ରଚନା ସମୟକୁ ଭୁବନେଶ୍ୱର ଉନ୍ନତିର ଚରମ ସୀମାରେ ଉପନୀତ ହୋଇଥିଲା । ଭୁବନେଶ୍ୱର ଅଷ୍ଟ ଆୟତନରେ (Ward) ବିଭକ୍ତ ଥିଲା । ପ୍ରତ୍ୟେକ ଆୟତନରେ ଶତଶତ ମନ୍ଦିର ନିର୍ମିତ ଓ ପୁଷ୍କରିଣୀ ଖୋଦିତ ହୋଇଥିଲା । ସେବାପୂଜାରେ ଅନେକଲୋକ ନିଯୁକ୍ତ ହୋଇଥିଲେ । ପ୍ରତ୍ୟେକ

ଆୟତନ ଗୋଟିଏ ଗୋଟିଏ କ୍ଷୁଦ୍ର ଗ୍ରାମସଦୃଶ। ଏଥିରୁ ଭୁବନେଶ୍ୱରର ମୁଖ୍ୟାଂଶର ପରିଚୟ ମିଳେ।

**ପ୍ରଥମ ଆୟତନ :** ଲିଙ୍ଗରାଜଙ୍କ ପ୍ରାକାରାଭ୍ୟନ୍ତର ମନ୍ଦିର ବ୍ୟତୀତ ଅନନ୍ତ ବାସୁଦେବ, ତୀର୍ଥେଶ୍ୱରଙ୍କ ମନ୍ଦିର ଏବଂ ବିନ୍ଦୁସାଗର ଓ ଦେବୀପାଦହରା ପୁଷ୍କରିଣୀ ଦୁଇଟି ବିଦ୍ୟମାନ ଥିଲା। ପ୍ରାକାର ମଧ୍ୟରେ ଏକାମ୍ରେଶ୍ୱର (ପଶ୍ଚିମାଭିମୁଖ); ଉତ୍ତରଦିଗରେ ଉଗ୍ରେଶ୍ୱର ତାଙ୍କ ଆଗରେ ବିଶ୍ୱେଶ୍ୱର; ଗଣନାଥଙ୍କ ପଶ୍ଚିମରେ ନନ୍ଦୀଶ୍ୱର ଓ ମହାକାଳେଶ୍ୱର, ଚିତ୍ରଗୁପ୍ତେଶ୍ୱର, ଖଂକରେଶ୍ୱର (ବାୟୁକୋଣରେ) ଓ ନୈଋତ ଦିଗରେ ଲଡୁକେଶ୍ୱର; ଅର୍କେଶ୍ୱର ପ୍ରଭୃତି ବିଖ୍ୟାତ ଶିବ ମନ୍ଦିର ବ୍ୟତୀତ ପାର୍ବତୀ, ଗୋପାଳୁଣୀ, ସାବିତ୍ରୀ ପ୍ରଭୃତିଙ୍କର ମନ୍ଦିର ବିଦ୍ୟମାନ।

**ଦ୍ୱିତୀୟାୟତନ :** ପାପନାଶିନୀ କୁଣ୍ଡ ନିକଟରେ ମୈତ୍ରେଶ୍ୱର, ବରୁଣେଶ୍ୱର, ଈଶାନେଶ୍ୱର (କୁଣ୍ଡର ଦକ୍ଷିଣରେ) ଓ ଦ୍ୱିତୀୟ ଈଶାନଶ୍ୱେର (ବାୟୁ କୋଣରେ), ଯମେଶ୍ୱର ପ୍ରଭୃତି ମନ୍ଦିର ବିଦ୍ୟମାନ।

**ତୃତୀୟାତନ :** ଗଙ୍ଗାଯମୁନା ତୀର୍ଥରେ ଗଙ୍ଗେଶ୍ୱର ଓ ଲକ୍ଷ୍ମୀଶ୍ୱର ପ୍ରଭୃତି ମନ୍ଦିର ବିଦ୍ୟମାନ ଏହା ଗନ୍ଧବତୀ ନଦୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା।

**ଚତୁର୍ଥାୟତନ:** କୋଟୀତୀର୍ଥକୁଣ୍ଡ, କୋଟୀତୀର୍ଥଲିଙ୍ଗ। ଏହାର ନୈଋତରେ ସ୍ୱର୍ଣ୍ଣଜାଳେଶ୍ୱର, ସୁବର୍ଣ୍ଣେଶ୍ୱର ମନ୍ଦିର। ଏହା ଆଗରେ ଗୋଟିଏ କୁଣ୍ଡ । (ଲିଙ୍ଗରାଜଙ୍କ ଐଶାନ୍ୟ କୋଣରେ) ସୁରେଶ୍ୱର-ସିଦ୍ଧେଶ୍ୱର, ମୁକ୍ତେଶ୍ୱର, କେଦାରେଶ୍ୱର, ଯୁଗ୍ମଆମ୍ରାତକେଶ୍ୱର, ଚକ୍ରେଶ୍ୱର, ଇନ୍ଦ୍ରେଶ୍ୱର, ଯଜ୍ଞେଶ୍ୱର, ବିଶ୍ୱେଶ୍ୱର, କପିଳେଶ୍ୱର, ଚନ୍ଦ୍ରେଶ୍ୱର, ମାରୁତେଶ୍ୱର, ଦୈତ୍ୟେଶ୍ୱର (ପରଶୁରାମେଶ୍ୱର) ପ୍ରଭୃତି ବହୁତ ଶିବମନ୍ଦିର ବିଦ୍ୟମାନ ଥିଲା।

**ପଞ୍ଚମାୟତନ :** ବ୍ରହ୍ମେଶ୍ୱର, ଗୋକର୍ଣ୍ଣେଶ୍ୱର, ଉତ୍ପଳେଶ୍ୱର, ମଧ୍ୟମେଶ୍ୱର, ଜଟିଳେଶ୍ୱର ।

**ଷଷ୍ଠାୟତନ :** ମେଘେଶ୍ୱର, ପର୍ଜନ୍ୟେଶ୍ୱର, ଭାସ୍କରେଶ୍ୱର ଓ ତାହାର ପ୍ରତୀଚୀରେ କପାଳମୋଚନେଶ୍ୱର ।

**ସପ୍ତମାୟତନ :** ଅଲାବୁକେଶ୍ୱର, ଉତ୍ତରେଶ୍ୱର, ଉତ୍ତରେଶ୍ୱରୀ, କଟକଟେଶ୍ୱର, ଭୀମେଶ୍ୱର ଓ ବଶିଷ୍ଠ ବାମଦେବଙ୍କ ମନ୍ଦିର ବିଦ୍ୟମାନ ।

**ଅଷ୍ଟମାୟତନ :** ରାମେଶ୍ୱର, ସୀତେଶ୍ୱର, ଧନୁମାପେଶ୍ୱର, ଲଗ୍ନକେଶ୍ୱର,

ଶତ୍ରୁଘ୍ନେଶ୍ୱର, ଲବେଶ୍ୱର, ଗୋସହସ୍ରେଶ୍ୱର, ପରଦାରେଶ୍ୱର । ଗୋହ୍ରଦର ବାୟୁ କୋଣରେ ଈଶାନେଶ୍ୱର ।

ଏତଦ୍‌ବ୍ୟତୀତ ଭୁବନେଶ୍ୱରରେ ଆହୁରି ଅନେକ ମନ୍ଦିର ନିର୍ମିତ ହୋଇଥିଲା । ଭଦ୍ରେଶ୍ୱର, ତୁଙ୍ଗେଶ୍ୱର, ମାରୀଚେଶ୍ୱର, ଶିପିବିଷ୍ଣେଶ୍ୱର, ମଣିଭଦ୍ରେଶ୍ୱର, ଜୟଦ୍ରେଶ୍ୱର, ବିଜୟନ୍ତେଶ୍ୱର, କୁକ୍କୁଟେଶ୍ୱର(କୁକ୍କୁଟାଣ୍ଡନିଭ ଅଷ୍ଟଲିଙ୍ଗ) ।

ଏଥିସହିତ ରମାୟିନୀ, ମୋହିନୀ(ବିନ୍ଧ୍ୟଗା), ଦ୍ୱାରବାସିନୀ (ପୂର୍ବେ), ଉତ୍ତରେଶ୍ୱରୀ; ସିଦ୍ଧାରଣ୍ୟରେ ଗୌରୀ, ଭଗବତୀ, ଚାମୁଣ୍ଡା, କପାଳିନୀ ପ୍ରଭୃତି ଅଷ୍ଟଚଣ୍ଡୀଙ୍କର ମନ୍ଦିର ଶୋଭିତ ହେଉଥିଲା । କପାଳିନୀଙ୍କ ନିକଟରେ ଶିଖିରେଶ୍ୱର, ଲିଙ୍ଗରାଜଙ୍କ ପୂର୍ବରେ ଜଟିଳେଶ୍ୱର, ସ୍ୱର୍ଣ୍ଣକୂଟେଶ୍ୱର, ବୈଦ୍ୟନାଥ (ଖରାଖିଆ); ବୈଦ୍ୟନାଥଙ୍କ ଦକ୍ଷିଣରେ ରାବଣେଶ୍ୱର; ଗଙ୍ଗୁଆ କୂଳରେ ସୂକ୍ଷ୍ମେଶ୍ୱର, ତାହା ନିକଟରେ ଆମ୍ରତକେଶ୍ୱର ଓ ଏମାନଙ୍କ ମଧ୍ୟରେ ମଧ୍ୟମେଶ୍ୱର, କପିଳେଶ୍ୱର; ଭୀମକୁଣ୍ଡ ନିକଟରେ ଭୀମେଶ୍ୱର, ନକୁଳେଶ୍ୱର, ଅର୍ଜୁନେଶ୍ୱର ଇତ୍ୟାଦି ପଞ୍ଚଲିଙ୍ଗ ଅଛନ୍ତି । ସିଂହଦ୍ୱାରପୂର୍ବକୁ ପୂର୍ବେଶ୍ୱର । ସ୍ୱର୍ଣ୍ଣାଦ୍ରି ମହୋଦୟରେ ପୂର୍ବୋକ୍ତ ଲିଙ୍ଗମାନଙ୍କର ବର୍ଣ୍ଣନା ଦିଆଯାଇଛି । ଆଜିକାଲି B.N. Railaway Lineର ପଶ୍ଚିମ ପଟକୁ କୌଣସି ମନ୍ଦିର ଥିବାର ଚିହ୍ନ ସୁଦ୍ଧା ନାହିଁ । ପୂର୍ବେ ଏହି ବିଶାଳ ପ୍ରାନ୍ତର ଅରଣ୍ୟାଚ୍ଛାଦିତ ଥିଲା । ସୁନ୍ଦରପଦାର ସୁନ୍ଦରେଶ୍ୱରଙ୍କ ଦକ୍ଷିଣକୁ କୌଣସି ମନ୍ଦିର ଦେଖାଯାଏ ନାହିଁ । ଏହା ପ୍ରକୃତ ଭୁବନେଶ୍ୱରର ଉତ୍ତରସୀମା । ପୂର୍ବରେ ଗଙ୍ଗୁଆ ନଦୀ ଭୁବନେଶ୍ୱର କ୍ଷେତ୍ରର ସୀମା ଥିଲାପରି ମନେହୁଏ । କାରଣ ଗନ୍ଧବତୀ ନଦୀ ପୂର୍ବକୁ ଆଉ କୌଣସି ମନ୍ଦିର ଦେଖାଯାଏ ନାହିଁ । ଉତ୍ତରରେ ଲକ୍ଷ୍ମୀସାଗର, ଚିନ୍ତାମଣୀଶ୍ୱର ପ୍ରଭୃତି ମନ୍ଦିର ବିଦ୍ୟମାନ ଥିଲା । ଏହି କ୍ଷେତ୍ରର ଲମ୍ବ ପ୍ରାୟ ସାଢ଼େ ତିନି ମାଇଲ, ପ୍ରସ୍ଥ ପୂର୍ବରୁ ପଶ୍ଚିମକୁ ପ୍ରାୟ ଦୁଇ ମାଇଲ ଓ କ୍ଷେତ୍ରଫଳ (୭/୨x୨=) ପ୍ରାୟ ୭ବର୍ଗ ମାଇଲ ଥିଲା । ଏହା ହିଁ ପ୍ରାଚୀନ ଭୁବନେଶ୍ୱର । ସ୍ୱର୍ଣ୍ଣାଦ୍ରିମହୋଦୟ ଅନୁସାରେ ଏହା ଦିବ୍ୟପୀଠ ।

"ସୁନ୍ଦରେଶ୍ୱରମାସାଦ୍ୟ ଯାବନ୍ମେଘେଶ୍ୱରୋ ହରଃ
ପରିମାଣମିଦଂ ବିଦ୍ୟାଦନିଳାନଳକୋଣୟୋଃ ॥୩୭॥
ଅସ୍ୟାପି ମଣ୍ଡଳେ ବୃତ୍ତେ ଛାୟାମ୍ରସ୍ୟ ପ୍ରକୀର୍ତ୍ତିତା
ଆମ୍ରସ୍ୟ ମୂଳଂ ପ୍ରଥିତମେକାମ୍ରେଶ୍ୱରଲିଙ୍ଗକମ୍ ॥୩୮॥

ଆମ୍ରଛାୟାସୁପର୍ଯ୍ୟନ୍ତଂ ଦିବ୍ୟପୀଠମୁଦାହୃତମ୍
ତତ୍ର ଦାନଂ ଜପୋ ହୋମଃ ସର୍ବଂତୁ ସୁଫଳଂ ଭବେତ୍ ॥୩୯॥
ଯୋଜନୈକଂ ପରଂ କ୍ଷେତ୍ରଂ ମଣ୍ଡଳଂ ତ୍ରିଦଶାର୍ଚ୍ଚିତଂ
ଆମ୍ରଛାୟାକ୍ରୋଶମାତ୍ରଂ ପୁଣ୍ୟାତ୍ ପୁଣ୍ୟତମଂସ୍ମୃତମ୍ ॥୪୦॥"

*(ସ୍ୱର୍ଣ୍ଣାଦ୍ରିମହୋଦୟ, ପ୍ରଥମ ଅଧ୍ୟାୟ)*

ପ୍ରତାପରୁଦ୍ରଙ୍କ ସମୟରେ ଚୈତନ୍ୟମହାପ୍ରଭୁ ମର୍ତ୍ତ୍ୟବୈକୁଣ୍ଠନୀଳାଚଳ ଧାମରେ ପ୍ରାୟ ୨୪ବର୍ଷକାଳ ବାସ କରିଥିଲେ । ସମଗ୍ର ଭାରତର ଦୃଷ୍ଟି ପୁରୀ ପ୍ରତି ଆକୃଷ୍ଟ ହେଲା । ପୁରୀକୁ ଯିବା ସମୟରେ ଭୁବନେଶ୍ୱରକୁ ଚୈତନ୍ୟମହାପ୍ରଭୁ ଆଗମନ କରିଥିଲେ । ଉତ୍କଳର ସର୍ବତ୍ର ବୈଷ୍ଣବଧର୍ମର ପ୍ରବଳ ପ୍ରଚାରଯୋଗୁ ଓ ଧର୍ମଦୀକ୍ଷିତ ହେବାରୁ ଶୈବ ଭୁବନେଶ୍ୱରକ୍ଷେତ୍ର ପ୍ରତି ଲୋକମାନଙ୍କର ଶ୍ରଦ୍ଧା ଓ ଭକ୍ତି ନ୍ୟୂନ ହୋଇଥିଲା । ଚୈତନ୍ୟମହାପ୍ରଭୁଙ୍କ ଆଗମନ ପରେ ଏହାର କୌଣସି ଉନ୍ନତି ହୋଇଥିବାର ଜଣାଯାଏ ନାହିଁ । ଶିଳାଲିପି ତାମ୍ରଶାସନ ଓ ପ୍ରାଚୀନ ଗ୍ରନ୍ଥମାନଙ୍କରୁ ଭୁବନେଶ୍ୱରର କ୍ରମୋନ୍ନତି ସମ୍ବନ୍ଧରେ ଏହି ବିବରଣ ସଂଗୃହୀତ ହୋଇଅଛି । ପ୍ରତାପରୁଦ୍ରଦେବଙ୍କ ରାଜତ୍ୱ ସମୟରୁ ଏହାର ପତନ ଆରମ୍ଭ ହେଲା ।

## ଭୁବନେଶ୍ୱରର ଅଷ୍ଟତୀର୍ଥ ଓ ଅନ୍ୟାନ୍ୟ ପୁଷ୍କରିଣୀ

ଭୁବନେଶ୍ୱରରେ ଅଦ୍ୟାପି ଶତଶତ କ୍ଷୁଦ୍ର ବୃହତ ପୁଷ୍କରିଣୀ, ବାପୀ ଓ କୂପ ବିଦ୍ୟମାନ ଅଛି । ସେଥିମଧ୍ୟରେ ବିନ୍ଦୁସାଗର, ପାପନାଶିନୀ, ଗଙ୍ଗାଯମୁନା, କୋଟିତୀର୍ଥ, ବ୍ରହ୍ମକୁଣ୍ଡ, ମେଘକୁଣ୍ଡ, ଅଲାବୁକୁଣ୍ଡ ଓ ରାମକୁଣ୍ଡ ଏହି ୮ଟି ତୀର୍ଥରୂପେ ସମ୍ମାନିତ ହୁଏ ।

ଆଦୌ ବିନ୍ଦୁହ୍ରଦଃ ପ୍ରୋକ୍ତସ୍ତତୋ ବୈ ପାପନାଶିନୀ
ଗଙ୍ଗାଯମୁନୟୋଃ ସ୍ନାନଂ କୋଟୀତୀର୍ଥାବଗାହନମ୍ ॥୩॥

କୃତ୍ୱା ହି ବ୍ରହ୍ମଣସ୍ତୀର୍ଥେ ସ୍ନାନଂ ଦେବପ୍ରପୂଜନଂ
ମେଘତୀର୍ଥେ ନରଃ ସ୍ନାତ୍ୱା ନୀଳକଣ୍ଠଂ ବିଲୋକୟେତ୍ ॥୪॥

ଅଲାବୁତୀର୍ଥେ ସଂସ୍ଥାପ୍ୟ ବ୍ରଜେଦ୍ ରାମହ୍ରଦଂ ପ୍ରତି ।
ତତ୍ର ସ୍ନାତ୍ୱା ତର୍ପୟିତ୍ୱା ନତ୍ୱା ରାମେଶ୍ୱରଂ ହରମ୍ ॥୫॥

(ସ୍ୱର୍ଣ୍ଣାଦି ମହୋଦୟ ୨୬/୩-୫)

**ବିନ୍ଦୁସାଗର :**

ବିନ୍ଦୁସାଗର ନାମ ସମଗ୍ର ଭାରତବିଖ୍ୟାତ । ଏହା ଉତ୍କଳର ଗୋଟିଏ ବୃହତ୍ତମ ପୁଷ୍କରିଣୀ । ଏହାର ଦୈର୍ଘ୍ୟ ୧୭୦୦ଫୁଟ ଓ ପ୍ରସ୍ଥ ୭୦୦ ଫୁଟ । ଗଭୀରତା ହାରାହାରି ୫ଫୁଟ । ଏହାର ମଧ୍ୟଭାଗରେ ଗୋଟିଏ ଜଗତି ଅଛି । ଏହାର ଦୈର୍ଘ୍ୟ୧୧୦ଫୁଟ x ପ୍ରସ୍ଥ ୧୦୦ଫୁଟ । ଏହାର ଚାରିପାଖରେ କେତେଗୁଡ଼ିଏ ଘାଟଥିଲା । ଜଗତିମଧ୍ୟରେ ଗୋଟିଏ ମେରେଦା, ଗୋଟିଏ ମଣ୍ଡପ ଓ ତିନୋଟି ମନ୍ଦିର ଏବଂ ଅନେକଗୁଡ଼ିଏ ସ୍ନାନକୁଣ୍ଡ ବିଦ୍ୟମାନ । ପୋଖରୀଟି ଟାଙ୍ଗି ଉପରେ ଖୋଳା ହୋଇଥିବାରୁ ଏହାର ଗଭୀରତା ଖୁବ୍ କମ୍ ଓ ଉତ୍ତରଦିଗରେ ଟାଙ୍ଗି ସ୍ପଷ୍ଟ ଦେଖାଯାଏ । ଗ୍ରୀଷ୍ମ ସମୟରେ ଏହାର ଗଭୀରତା ୬ଫୁଟ । ଏହାର ନିମ୍ନ ଦେଶରେ ଅସଂଖ୍ୟ ନୈସର୍ଗିକ ପ୍ରସ୍ରବଣଥିବାରୁ ଗ୍ରୀଷ୍ମ ସମୟରେ ମଧ୍ୟ ଏଥିରେ ବିପୁଳଜଳରାଶି ସଞ୍ଚିତ ହୋଇଥାଏ । ଏହି ସମୟରେ ଆନୁମାନିକ ୧୩୦୦x୭୦୦x୬=୫୪,୬୦,୦୦୦ ଘନଫୁଟ ପାଣି ରହେ ।

ଜଳସେଚନ ପ୍ରଣାଳୀ ପ୍ରଚଳନ କରାଗଲେ ଅନେକ ଭୂମିରେ ଶସ୍ୟ ଉତ୍ପାଦିତ ହୋଇପାରନ୍ତା ।

**ବିନ୍ଦୁସାଗର ନିର୍ମାଣକାଳ :**

ବିନ୍ଦୁସାଗରର ଖୋଦନକାଳ ଆଜିପର୍ଯ୍ୟନ୍ତ ନିର୍ଣ୍ଣୀତ ହୋଇନାହିଁ । ତଥାପି ପ୍ରାଚୀନ ଶିଳାଲିପି, ପୁରାଣ ଓ କିଂବଦନ୍ତୀମାନଙ୍କରୁ ଏହାର ପ୍ରାଚୀନତା ସମ୍ବନ୍ଧରେ ଆଲୋଚନା କରିବା ଆବଶ୍ୟକ । ଅନଙ୍ଗଭୀମଦେବଙ୍କ କନ୍ୟା ଚନ୍ଦ୍ରିକାଦେବୀ ୧୨୭୮ ଖ୍ରୀଷ୍ଟାବ୍ଦରେ ବିନ୍ଦୁସାଗରର ପୂର୍ବତୀରରେ ଅନନ୍ତବାସୁଦେବଙ୍କ ମନ୍ଦିର ନିର୍ମାଣ କରିଥିବାର ଗୋଟିଏ ଶିଳାଲିପିରୁ ଜଣାଯାଏ । ଏହି ଶିଳାଲେଖରେ 'ବିନ୍ଦୁସାଗର' ବିଷୟରେ କୁହାଯାଇଛି -

"ଯସ୍ମିନ୍ ବିନ୍ଦୁସରଃ ସରସ୍ୱଦସଦୃଗ୍ ଦୃକ୍‌ପେୟପାଥଃପତେ
ପାନ୍ଥଶ୍ରାନ୍ତିହରଂ ସୁଧାଜନିଥ ନିସ୍ୟନ୍ଦ୍ୟବ୍‌ବପୁଃ ଶାମ୍ବବୀଂ ।
ଯଦ୍‌ବିନ୍ଦୋରପି ନାନୁଯାନ୍ତି ପଦକାଂ ତୀର୍ଥାନି ତାନି ସ୍ଫୁଟମ୍
ଭୂତାନୁଗ୍ରହନିର୍ମିତଂ ପୁରଜିତା ଲୋକୈକଶୋକାପହମ୍ ।୧୧।"

(ଅନନ୍ତ ବାସୁଦେବ ଶିଳାଲେଖ)

ଏହି ପବିତ୍ର କ୍ଷେତ୍ରରେ ସାଗରୋପମ, ନୟନନନ୍ଦନ, ପାନ୍ଥ (ତୀର୍ଥଯାତ୍ରୀ) କ୍ଲାନ୍ତିହରା

ଅମୃତପଦ, ଶିବପଦନିସୃତ, ଲୋକୈକଶୋକାପହ, ଅତୁଳନୀୟ, ବିନ୍ଦୁସର (ବିନ୍ଦୁସରୋବର ବା ବିନ୍ଦୁସାଗର) ବିଦ୍ୟମାନ । ଅନ୍ୟ ତୀର୍ଥସକଳ ଏହାର ବିନ୍ଦୁମାତ୍ର ଜଳ ସହିତ ସମପୁଣ୍ୟପ୍ରଦ ନୁହନ୍ତି । ପୁରଜିତ ତ୍ରିପୁରାସୁରବିଜୟୀ (ଶିବ) ସମଗ୍ର ବିଶ୍ୱକୁ ଅନୁଗ୍ରହ ପ୍ରଦର୍ଶନ ନିମନ୍ତେ ଏହାକୁ ଖନନ କରାଇଥିଲେ ।

'ବିନ୍ଦୁସାଗର'ରେ ବାନରୀମାନଙ୍କ ଜଳକ୍ରୀଡ଼ା ବିଷୟରେ ଏକ ସୁନ୍ଦର ଆଲେଖ୍ୟ ଏହି ଶିଳାଲେଖରୁ ମିଳେ -

"ଯସ୍ୟାନ୍ତଃ ପ୍ଲବମାନବୃଦ୍ଧକମଠୀ ପୃଷ୍ଠସ୍ଥଳସ୍ଥାୟୁକ
ପ୍ରେଙ୍‌ଖଦବାନରକାମିନୀଭିରକଳି କ୍ରୀଡ଼ୋଡୁପ ପ୍ରାପିତା,
ମଗ୍ନାୟାମନୁମଜ୍ଜତୀଭିରିହ ତତ୍‌କାପେୟପାରିପ୍ଲବା -
ଦୁପ୍ଲୁତାଭିମୁଖଂ ପ୍ରତୀତତରଳୋ ଲୋକଃ ସମୁତ୍ରାସ୍ୟତେ ।୧୨।"

ଏହି ବିନ୍ଦୁସରଃ ଜଳଉପରେ ବହୁ ବୃଦ୍ଧକମଠୀ (ବଡ଼ ବଡ଼ ମାଈ କଇଁଚ) ପହଁରୁଥିଲାବେଳେ କୂଳରେ ଡ଼ିଆଁମାରୁଥିବା ବାନରୀମାନେ ସେମାନଙ୍କ ଲମ୍ୱଓସାର ପିଠି ଉପରକୁ ଖେଳଡ଼ଙ୍ଗା ବୋଲି ବିଚାରି ଡ଼େଇଁ ପଡ଼ିଲାମାତ୍ରେ କଇଁଛଗୁଡ଼ିକ ପାଣିରେ ବୁଡ଼ିଯାଉଥିଲେ । ଫଳରେ ମାଈମାଙ୍କଡ଼ଗୁଡ଼ିକ ପାଣିରେ ଉବୁଟୁବୁ ହୋଇ ପ୍ରାଣ ରକ୍ଷାପାଇଁ କୂଳକୁ ପଳାଇଆସୁଥିଲେ । ଏହା ଦେଖି କୂଳରେ ଥିବା କୌତୂହଳପୂର୍ଣ୍ଣ ଦର୍ଶକମାନଙ୍କ ମନରେ (ବାନରୀମାନଙ୍କ ପ୍ରାଣନାଶ ଆଶଙ୍କା ଜନିତ) ଭୟର ସଞ୍ଚାର ହେଉଥିଲା ।

Epigraphia Indica ରେ ଏହାର ଏକ ଭିନ୍ନ ପାଠଭିତ୍ତିରେ ବିନ୍ଦୁସାଗରରେ ତରୁଣୀମାନଙ୍କ ଜଳକ୍ରୀଡ଼ା ସମ୍ବନ୍ଧରେ ସୂଚନା ଦିଆଯାଇଥିଲା । ସନ୍ତରଣରତା ତରୁଣୀଗଣ 'ପ୍ଲବମାନ ବୃଦ୍ଧକମଠୀ'ର ପୃଷ୍ଠରେ ଆରୋହଣ କରି ତାହାକୁ ତାଙ୍କର ଲୀଳାତରଣୀରେ ପରିଣତ କରିବାକୁ ଚେଷ୍ଟା କରନ୍ତି ନାହିଁ କିମ୍ୱା ଧରିବାକୁ ଜଳରେ ବୁଡ଼ନ୍ତି ନାହିଁ । ଶାଖାମୃଗନ୍ୟାୟ ବିଚିତ୍ର ଜଳକ୍ରୀଡ଼ାଭଙ୍ଗିବିଳାସିନୀକୂଳ ତଟଦେଶର ଦର୍ଶକଗଣଙ୍କର ସଂଖ୍ୟା ବୃଦ୍ଧି କରନ୍ତି ନାହିଁ ।

ଏଥିରେ ବିନ୍ଦୁସାଗର ଭୁବନେଶ୍ୱର-ରମଣୀମାନଙ୍କର ଜଳକେଳି ମଧ୍ୟ ବର୍ଣ୍ଣିତ ହୋଇଛି । ଏହି ଲିପିଟି ବିନ୍ଦୁସାଗରର ପ୍ରଶସ୍ତି କହିଲେ ଅତ୍ୟୁକ୍ତି ହେବନାହିଁ । ଏହି ଲିପିର ଅର୍ଦ୍ଧାଂଶ ଆଜିପର୍ଯ୍ୟନ୍ତ ମିଳିନାହିଁ । ତଥାପି ଏଥିରୁ ସ୍ପଷ୍ଟ ଜଣାଯାଏ ଯେ ୧୨୭୮ ଖ୍ରୀଷ୍ଟାବ୍ଦ ବେଳକୁ ବିନ୍ଦୁସାଗର ଖୋଦିତ ହୋଇଥିଲା ।

ବ୍ରହ୍ମପୁରାଣର ଉତ୍କଳଦେଶ ବିଷୟକ ବର୍ଣ୍ଣନା ଗୁଡ଼ିକ ଚୋଡ଼ଗଙ୍ଗ ଦେବଙ୍କ ରାଜତ୍ୱପରେ ଓ ଅନନ୍ତ ବାସୁଦେବଙ୍କ ମନ୍ଦିର ନିର୍ମାଣ ପୂର୍ବରୁ ଲିଖିତ ହୋଇଥିବାର ସ୍ପଷ୍ଟ ଦେଖାଯାଏ । ଏକାମ୍ରକ୍ଷେତ୍ର ବର୍ଣ୍ଣନା ଅଧ୍ୟାୟରେ ବିନ୍ଦୁସାଗର ଓ ଏଥିରେ ସ୍ନାନର ମାହାତ୍ମ୍ୟ ପ୍ରଦତ୍ତ ହୋଇଛି । ସ୍କନ୍ଦପୁରାଣର ଉତ୍କଳଖଣ୍ଡରେ ମଧ୍ୟ ବିନ୍ଦୁସାଗର ବିଷୟ ବର୍ଣ୍ଣିତ ହୋଇଅଛି । ଏହାମଧ୍ୟ ଦ୍ୱାଦଶ ଶତାବ୍ଦୀର ପୂର୍ବବର୍ତ୍ତୀ ଗ୍ରନ୍ଥ ନୁହେଁ । ମାଦଳାପାଞ୍ଜି ଅନୁସାରେ ବରାହକେଶରୀ ଏହି ପୁଷ୍କରିଣୀ ଖୋଳାଇଥିଲେ । କିନ୍ତୁ ଏହା ବିଶ୍ୱାସଯୋଗ୍ୟ ବୋଲି ମନେହୁଏ ନାହିଁ ।

ବିନ୍ଦୁସାଗରର ଗଠନପ୍ରଣାଳୀ ଦେଖିଲେ ଏହା ଗଙ୍ଗବଂଶୀୟ କୀର୍ତ୍ତି ବୋଲି ମନେହୁଏ । କାରଣ ଦକ୍ଷିଣଭାରତର ପୁଷ୍କରିଣୀମାନଙ୍କ ମଧ୍ୟରେ ଜଗତୀ ନିର୍ମାଣପ୍ରଥା ପ୍ରଚଳିତ ଥିଲା । ଉତ୍ତରଭାରତରେ ଏପରି ପୁଷ୍କରିଣୀ ବିରଳ । ଧଉଳୀର ନିକଟବର୍ତ୍ତୀ ଚୋଡ଼ଗଙ୍ଗଙ୍କ ରାଣୀ କୌଶଲ୍ୟାଙ୍କ ଦ୍ୱାରା ଖୋଦିତ କୌଶଲ୍ୟାଗଙ୍ଗ ପୁଷ୍କରିଣୀ ସହିତ ବିନ୍ଦୁସାଗରର ଯଥେଷ୍ଟ ସାମଞ୍ଜସ୍ୟ ଅଛି । ମାନ୍ଦ୍ରାଜ ଓ ମହୀଶୂରରେ ଏହିପରି ଅନେକ ପୋଖରୀ ଅଦ୍ୟାପି ଦେଖାଯାଏ । ଦାକ୍ଷିଣାତ୍ୟର ରାଜାମାନେ ପୁଷ୍କରିଣୀ ମଧ୍ୟସ୍ଥ ଜଗତିକୁ ନିଜର ଭୋଗ ବିଳାସ ବାସନା ଚରିତାର୍ଥ କରିବା ନିମିତ୍ତ ନିର୍ମାଣ କରୁଥିଲେ । ଉତ୍ତରଭାରତ ଅପେକ୍ଷା ଦକ୍ଷିଣ ଭାରତରେ ଚନ୍ଦନଯାତ୍ରାର ବିଶେଷ ପ୍ରଚଳନ ଅଛି । ଏହି ପୋଖରୀଟି ଚନ୍ଦନଯାତ୍ରା ଉଦ୍ଦେଶ୍ୟରେ ନିର୍ମିତ ହୋଇଥିବା ଜଗତିମଧ୍ୟସ୍ଥ ମନ୍ଦିର । ସ୍ନାନକୁଣ୍ଡ, ମଣ୍ଡପ, ମେରେଦା ଓ ଚନ୍ଦନ-ଶ୍ରାବ୍ୟଯନ୍ତ୍ରମାନଙ୍କ ନିର୍ମାଣରୁ ଏହା ଜଣାଯାଏ । ପୁନଶ୍ଚ ଭୁବନେଶ୍ୱରର ପ୍ରଚଳିତ ଗୋଟିଏ କିଂବଦନ୍ତୀରୁ ଜଣାଯାଏ ଯେ ବିନ୍ଦୁସାଗର ଖୋଦିତ ହେବାପୂର୍ବରୁ ଲିଙ୍ଗରାଜ ଓ କପିଳେଶ୍ୱର ଚନ୍ଦନଯାତ୍ରା ନିମିତ୍ତ ମହାଭୋଇ ପୋଖରୀକୁ ଯାଉଥିଲେ । ବର୍ତ୍ତମାନ ଭୁବନେଶ୍ୱର ନିକଟରେ ଦୁଇଟି ମହାଭୋଇ ପୋଖରୀ ଅଛି । ଗୋଟିଏ ବାସୁଦେବ ମନ୍ଦିରଠାରୁ କିଞ୍ଚିତ୍ ପୂର୍ବରେ ଓ ଆଉ ଗୋଟିଏ ଭୁବନେଶ୍ୱର ଦକ୍ଷିଣଦିଗସ୍ଥ କୁହା-କ୍ଷେତ୍ରପାଳ ଗ୍ରାମ ନିକଟରେ । ଏଥିମଧ୍ୟରୁ କେଉଁ ପୋଖରୀରେ ଚନ୍ଦନଯାତ୍ରା ହେଉଥିଲା ତାହା କହିବା ସହଜ ନୁହେଁ । କାରଣ ଲୋକେ ଦୁଇଟିଯାକ ପୋଖରୀକୁ ଏଥିପାଇଁ ନିର୍ଦ୍ଦେଶ କରିଥାନ୍ତି । ଯେ କୌଣସି ମହାଭୋଇ ପୋଖରୀ ହେଉ, କିଂବଦନ୍ତୀରୁ ଏହା ସ୍ପଷ୍ଟ ଜଣାଯାଏ ଯେ ଚନ୍ଦନଯାତ୍ରାର ସୁବିଧା ନିମିତ୍ତ ବିନ୍ଦୁସାଗର ଖୋଦିତ ହୋଇଥିଲା । ଏହି ସମସ୍ତ କାରଣରୁ ଏହା ଗଙ୍ଗବଂଶର କୀର୍ତ୍ତିବୋଲି କହିବା ସମୀଚୀନ ।

ବିନ୍ଦୁସାଗରର ପୂର୍ବଦିଗରେ ବ୍ରହ୍ମାଙ୍କ ମନ୍ଦିର ନିକଟରେ ମଣିକର୍ଣ୍ଣିକା ଘାଟ ଓ ଅଗ୍ନିକୋଣରେ ତ୍ରିଶୂଳଘାଟ, ପଶ୍ଚିମରେ ନୀଳକଣ୍ଠେଶ୍ୱର ମହାଦେବଙ୍କ ନିକଟରେ ବିଶ୍ରାମଘାଟ, ଉତ୍ତରରେ ଉତ୍ତରେଶ୍ୱର ନିକଟରେ ଉତ୍ତରେଶ୍ୱରଘାଟ ଏବଂ ଦକ୍ଷିଣଦିଗର ମଠ ନିକଟରେ ତ୍ରିପୁରାରିଘାଟ ବା ମଠଘାଟ । ଏହାର ଚତୁର୍ଦ୍ଦିଗରେ ପ୍ରାଚୀର ଓ ସୋପାନଶ୍ରେଣୀ ଥିବାର କୌଣସି ନିଦର୍ଶନ ନାହିଁ । ଉତ୍ତରେଶ୍ୱରଙ୍କ ନିକଟରେ ଗୋଟିଏ ଦୀର୍ଘ ପ୍ରାଚୀର ଓ ସୋପାନ ଶ୍ରେଣୀ ବିଦ୍ୟମାନ । ଏହି ପ୍ରାଚୀର ନିକଟରେ ଚାହାଣିମଣ୍ଡପ । ଏଠାରେ ଅବସ୍ଥାନକରି ରାଜା, ଓ ତାଙ୍କର ପରିବାର ଓ ଅନୁଚରବର୍ଗ ଲିଙ୍ଗରାଜ ମହାପ୍ରଭୁଙ୍କ ଚନ୍ଦନଯାତ୍ରା ଦର୍ଶନ କରୁଥିଲେ । ତେଣୁ ଏହି ମଣ୍ଡପର ନାମ ଚାହାଣିମଣ୍ଡପ । ଅଦ୍ୟାପି ସେହି ଚାହାଣିମଣ୍ଡପର ଭଗ୍ନାବଶେଷ ଓ ଦ୍ୱାର ଉତ୍ତରେଶ୍ୱର ମନ୍ଦିରର ଦକ୍ଷିଣ ଦିଗରେ ଦେଖାଯାଏ । ଏହା ଗଙ୍ଗବଂଶ ସମୟର କୀର୍ତ୍ତିବୋଲି ମନେହୁଏ । ପୂର୍ବଦିଗରେ ବ୍ରହ୍ମାଙ୍କ ମନ୍ଦିରର ଉତ୍ତର ଓ ଦକ୍ଷିଣ ଦିଗରେ ଅନେକ ଦୂରପର୍ଯ୍ୟନ୍ତ ଗୋଟିଏ ଦୀର୍ଘପ୍ରାଚୀର ଥିଲା ଓ ବ୍ରହ୍ମାଙ୍କ ମନ୍ଦିରର ଦକ୍ଷିଣ ଦିଗରେ ଗୋଟିଏ ସୁଦୃଢ଼ ସୋପାନ ଶ୍ରେଣୀ ଥିଲା । ଏହାର ନାମ ମଣିକର୍ଣ୍ଣିକା ଘାଟ । ଏହା ଗୋଟିଏ ପବିତ୍ର ତୀର୍ଥ । ଏଠାରେ ପିଣ୍ଡଦାନ ତର୍ପଣାଦି କ୍ରିୟା ସମାପନ କରିବା ଶାସ୍ତ୍ରସଙ୍ଗତ । ଚନ୍ଦନଯାତ୍ରା ସମୟରେ ଲିଙ୍ଗରାଜ, ବାସୁଦେବ ଓ କପିଳେଶ୍ୱର ଏହି ଘାଟରେ ଅବତରଣ କରି 'ଚାପ'ରେ ବସନ୍ତି । ଅଗ୍ନିକୋଣରେ ତ୍ରିଶୂଳଘାଟ । ମହାଦେବ କୀର୍ତ୍ତିବାସବିମର୍ଦ୍ଦିନୀ ଦେବୀଙ୍କ ତୃଷା ନିବାରଣ କରିବା ନିମିତ୍ତ ତ୍ରିଶୂଳାଘାତରେ ଏହି ସ୍ଥାନରେ ଭୂମି ଖନନ କରି ଜଳବାହାର କରିଥିବାରୁ ଏହାର ନାମ ତ୍ରିଶୂଳଘାଟ । ଏହି ଘାଟରେ ଅସଂଖ୍ୟ ଯାତ୍ରୀଙ୍କର ସମାଗମ ହୁଏ । ଦକ୍ଷିଣଦିଗରେ ବହୁଦୂରପର୍ଯ୍ୟନ୍ତ ପ୍ରାଚୀର ଓ ସୋପାନଶ୍ରେଣୀ ଦେଖାଯାଏ । ପ୍ରାଚୀରର ଅଧିକାଂଶ ପରବର୍ତ୍ତୀକାଳର ଓ ମଠନିର୍ମାଣ ସମୟରେ ନିର୍ମିତ ହୋଇଥିବାର ଜଣାଯାଏ । ସୋପାନଶ୍ରେଣୀର ଅଧିକାଂଶ ଆଧୁନିକ ଯୁଗର ଓ କ୍ଷେତ୍ରବାସୀ ନିଯୋଗର କୀର୍ତ୍ତି । ଚନ୍ଦନଯାତ୍ରା ସମୟରେ ଏଠାରେ ଲିଙ୍ଗରାଜ ମହାପ୍ରଭୁଙ୍କର ଭୋଗହୁଏ । କିଂବଦନ୍ତୀ ଅନୁସାରେ ପୂର୍ବେ ମଠଘାଟଠାରୁ ଜଗତୀପର୍ଯ୍ୟନ୍ତ ପୁରୀର ନରେନ୍ଦ୍ର ପୋଖରୀର ସିଡ଼ି ପରି ଗୋଟିଏ ପଥର ସିଡ଼ି ଥିଲା ଏବଂ କାଳକ୍ରମେ ତାହା ଭାଙ୍ଗି ପଡ଼ିଛି । ପଶ୍ଚିମଦିଗସ୍ଥ ଘାଟ ନିକଟରେ ଲିଙ୍ଗରାଜ ମହାପ୍ରଭୁ ଚନ୍ଦନଯାତ୍ରା ସମୟରେ ବିଶ୍ରାମ କରନ୍ତି ବୋଲି ଏହାର ନାମ ବିଶ୍ରାମଘାଟ । ଏହାର ଦକ୍ଷିଣ ଦିଗରୁ ଗୋଟିଏ ପ୍ରାଚୀରର ଭଗ୍ନାବଶେଷ ଦେଖାଯାଏ । କୌଣସି କାଳରେ ବିନ୍ଦୁସାଗରର ଚତୁର୍ଦ୍ଦିଗରେ ପାବଛ ଶ୍ରେଣୀ ବା ପ୍ରାଚୀର ନଥିଲା । ବର୍ତ୍ତମାନ ଯୁଗରେ

ଏହି ଅଭାବ ପୂର୍ଣ୍ଣହୋଇଗଲେ ପୁଷ୍କରିଣୀଟି ବହୁକାଳପର୍ଯ୍ୟନ୍ତ ସ୍ଥାୟୀ ହୁଅନ୍ତା ।

ଏହି ପୁଷ୍କରିଣୀରେ ନୀଳ ବିନ୍ଦୁମାନ ସର୍ବଦା ଭାସମାନ । ଏହି ବିନ୍ଦୁମାନଙ୍କ ଯୋଗରୁ ଏହାର ନାମ ବିନ୍ଦୁସାଗର । ପୌରାଣିକ ମତ ଆଲୋଚନା କରିବା ପୂର୍ବରୁ ଏହାର ବୈଜ୍ଞାନିକ ତତ୍ତ୍ୱ ଆଲୋଚନା କରିବା ଆବଶ୍ୟକ । ଲୋକେ କହନ୍ତି 'ବିନ୍ଦୁସାଗର'ରେ ଅନେକ ଚୂନକୂଅ ବା ଚୂନଖାଲ ଅଛି । 'ଗେଙ୍ଗୁଟି'(ଚୂନ)ର ସଂସ୍ପର୍ଶରେ ଜଳରେ ବିନ୍ଦୁମାନ ଜାତ ହେବା ବିଜ୍ଞାନର ମତ । ୧୯୩୨ ମସିହାରେ ମହାନଦୀର ଜଳ ବିନ୍ଦୁସାଗରର ଜଳପରି ନୀଳବିନ୍ଦୁମୟ ହୋଇଗଲା । ସେତେବେଳେ ବିହାର-ଉତ୍କଳ ସରକାର ପକ୍ଷରୁ ଅନୁସନ୍ଧାନ ହେବାଦ୍ୱାରା ଜଣାଗଲା ଯେ, ମହାନଦୀର ଜଳସ୍ରୋତ ଗତିପଥର କୌଣସି ସ୍ଥାନରେ ଗେଙ୍ଗୁଟି-ଖଣି ସଂସ୍ପର୍ଶରେ ଆସିଛି । ତେଣୁ ପାଣିରେ ଏପରି ନୀଳବିନ୍ଦୁମାନ ଜାତ ହେଉଛନ୍ତି । ନଦୀଜଳ ପୁନଶ୍ଚ ତାହାର ପୂର୍ବରୂପ ଧାରଣ କଲା । ବିନ୍ଦୁସାଗରର ଜଳରେ କୋଟି କୋଟି ନୀଳବିନ୍ଦୁ ଥିବାରୁ ଗେଙ୍ଗୁଟି ଖାଲ ବା ଚୂନଖାଲ ହିଁ ପ୍ରଧାନ କାରଣ । ତେଣୁ କିଂବଦନ୍ତୀ ସମ୍ପୂର୍ଣ୍ଣ ସତ୍ୟ । ପୁନଶ୍ଚ ଜଳ ବହୁକାଳ ଆବଦ୍ଧ ହୋଇଗଲେ ସେଥିରେ ନୀଳବିନ୍ଦୁପରି କ୍ଷୁଦ୍ର କ୍ଷୁଦ୍ର ଉଦ୍ଭିଦମାନ ଜାତ ହୋଇଥାଏ । ଏହାଦ୍ୱାରା ଜଳର ବିନ୍ଦୁ ସଂଖ୍ୟା ମଧ୍ୟ ବୃଦ୍ଧିପାଇଥାଏ । ଏହି ଦୁଇଟି କାରଣରୁ ବିନ୍ଦୁସାଗରରେ ଅସଂଖ୍ୟ ନୀଳବିନ୍ଦୁ ଦେଖାଯାଏ ।ଅନେକଲୋକ ଏହି ଜଳ ପର୍ଯ୍ୟୁଷିତ ବୋଲି ବିଚାରକରି ଏଥିରେ ସ୍ନାନକରିବାକୁ ଇଚ୍ଛା କରନ୍ତି ନାହିଁ । କିନ୍ତୁ ଏହି ଜଳ ସ୍ୱାସ୍ଥ୍ୟପକ୍ଷେ ଉତ୍ତମ । କାରଣ ଗେଙ୍ଗୁଟି ସଂପର୍କାଗତ ଜଳ ଦୂଷ୍ୟ ନୁହେଁ ।

ବର୍ତ୍ତମାନ ବିନ୍ଦୁସାଗରର ପ୍ରାଚୀନତା ଆଲୋଚନା କରିବା ଆବଶ୍ୟକ । ବିନ୍ଦୁସାଗର ଖୋଦନ ସମ୍ବନ୍ଧରେ ପୁରାଣ ଓ ଉପପୁରାଣମାନଙ୍କରେ ବିସ୍ତୃତ ବିବରଣ ଦିଆଯାଇଛି । ସେଗୁଡ଼ିକ ଏଠାରେ ଲେଖିବା ଅନାବଶ୍ୟକ । କାରଣ କୌଣସି କୀର୍ତ୍ତି ହେବାପରେ ପୌରାଣିକମାନେ ନିଜର ଅଦ୍ଭୁତ କଳ୍ପନାଶକ୍ତିଦ୍ୱାରା ସେ ସମ୍ବନ୍ଧରେ ଅନେକ ଗଳ୍ପ ଉଦ୍ଭାବନ କରିଥାନ୍ତି । କୀର୍ତ୍ତିର ପ୍ରାଚୀନତା ଓ ଭକ୍ତମାନଙ୍କ ମଧ୍ୟରେ ତୀର୍ଥର ମାହାତ୍ମ୍ୟ ପ୍ରସାରହିଁ ଏହାର ପ୍ରଧାନଲକ୍ଷ୍ୟ । ତଥାପି ପାଠକମାନଙ୍କର କୌତୂହଳ ନିବୃତ୍ତି କରିବା ନିମିତ୍ତ ସଂକ୍ଷିପ୍ତ ପୌରାଣିକ ବିବରଣ ନିମ୍ନରେ ଉଦ୍ଧୃତ ହେଲା । ପାର୍ବତୀ କୀର୍ତ୍ତି ଓ ବାସ ରାକ୍ଷସଙ୍କ ସହିତ ଯୁଦ୍ଧରେ କ୍ଳାନ୍ତହୋଇ ମହାଦେବଙ୍କୁ ଜଳ ମାଗିଲେ । ମହାଦେବ ଯେଉଁ ସ୍ଥାନରେ ତ୍ରିଶୂଳମାରି ପାର୍ବତୀଙ୍କୁ ଜଳଦାନ କରିଥିଲେ, ସେହି ସ୍ଥାନରେ ବିନ୍ଦୁହ୍ରଦ ପ୍ରତିଷ୍ଠିତ ହୋଇଅଛି । ଏକାମ୍ରପୁରାଣ,

କପିଳସଂହିତା, ସ୍ୱର୍ଣ୍ଣାଦ୍ରି ମହୋଦୟ, ଶିବପୁରାଣ, ପଦ୍ମପୁରାଣ, ବ୍ରହ୍ମପୁରାଣ ପ୍ରଭୃତି ପୁରାଣମାନଙ୍କରେ ପାର୍ବତୀଙ୍କର ଅନୁରୋଧରେ ମହାଦେବ ଏ ପୁଷ୍କରିଣୀ ଖୋଳାଇଥିଲେ ବୋଲି ଉଲ୍ଲେଖ ଅଛି ।

ଏକାମ୍ରପୁରାଣ ବର୍ଣ୍ଣନାନୁସାରେ-ସ୍ୱର୍ଗ-ମର୍ତ୍ତ୍ୟ-ପାତାଳ ତିନିପୁରରୁ ସମସ୍ତ ନଦନଦୀ ପୁଣ୍ୟକ୍ଷେତ୍ର ପ୍ରଭୃତିରୁ ବିନ୍ଦୁବିନ୍ଦୁଜଳ ଆନୀତ ହୋଇ ଏ ପୁଷ୍କରିଣୀ ପ୍ରତିଷ୍ଠିତ ହୋଇଥିଲା ବୋଲି ଏହାର ନାମ ବିନ୍ଦୁହ୍ରଦ ହୋଇଅଛି ।

"ତ୍ରୈଲୋକ୍ୟେ ଯାନି ତୀର୍ଥାନି ପୁଣ୍ୟକ୍ଷେତ୍ରାଶ୍ରମାଣିଚ
କାନ୍ତାରବନନଦ୍ୟଶ୍ଚ ଗିରୟଶ୍ଚ ମନୋହରାଃ ॥୨୩॥
ସରାଂସି ହ୍ରଦକୂପାନି ନିର୍ଝରାଃ ସାଗରାଃ ପ୍ରପାଃ
ଗଙ୍ଗାଦ୍ୟାଃ ସରିତଃ ସର୍ବାଃ କ୍ଷୀରୋଦାଦ୍ୟର୍ଣ୍ଣବାସ୍ତଥା ॥୨୪॥
ସ୍ରବନ୍ତି ଯତ୍ର ବୈ ସର୍ବେ ବିନ୍ଦୁ ନାଳସ୍ୱରୂପିଣଃ ।
ବିନ୍ଦୁଂ ସ୍ରବନ୍ତି ବିଶ୍ୱସ୍ୟ ତେନ ବିନ୍ଦୁସରଃ ସ୍ମୃତଃ" ॥୨୫॥

*(ଏକାମ୍ରପୁରାଣ, ୨୦ ଅଧ୍ୟାୟ)*

ସମଗ୍ର ତୀର୍ଥର ଜଳ ଆନୟନ ସମ୍ବନ୍ଧରେ 'ଏକାମ୍ରପୁରାଣ'ରେ ଗୋଟିଏ ଆଖ୍ୟାୟିକା ଦିଆଯାଇଛି । 'ବିନ୍ଦୁସରୋବରର'ର ପ୍ରତିଷ୍ଠା ସମୟରେ ମହାଦେବ ଭାରତବର୍ଷୀୟ ସର୍ବତୀର୍ଥଙ୍କୁ ଆହ୍ୱାନ କରିବାପାଇଁ ବୃଷଭକୁ ପ୍ରେରଣ କଲେ । ଭାରତର ସମଗ୍ର ତୀର୍ଥ ସ୍ନାନକରି ଯେଉଁ ପୁଣ୍ୟ ଲାଭ ହୁଏ କେବଳ ବିନ୍ଦୁସାଗର ଜଳରେ ସ୍ନାନକଲେ ସେହିଫଳ ମିଳିପାରିବା ସୁଯୋଗ ସୃଷ୍ଟି କରିବା ମହାଦେବଙ୍କର ଉଦ୍ଦେଶ୍ୟ ଥିଲା । ସର୍ବତୀର୍ଥମାନ ବୁଲି ବୃଷଭ କାହାକୁ ମସ୍ତକରେ, କାହାକୁ କର୍ଣ୍ଣରେ, କାହାକୁ ଚକ୍ଷୁରେ ଏହିପରି ବିଭିନ୍ନ ଅଙ୍ଗ ପ୍ରତ୍ୟଙ୍ଗରେ ତୀର୍ଥମାନଙ୍କୁ ଆରୂଢ କଲେ । ଗୋଦାବରୀ କହିଲେ 'ମୁଁ କାହିଁରେ ଯିବି ?' ବୃଷଭ ତାହାର ବୃଷଣଟି ଦେଖାଇ କହିଲା ଏଥିରେ ଯିବାକୁ ହେବ । ଏଥିରେ ଗୋଦାବରୀ ବଡ଼ ମର୍ମାହତ ହୋଇ ଆସିଲେ ନାହିଁ । ମହାଦେବ ବୃଷଭଠାରୁ ସମସ୍ତ ବିଷୟ ଅବଗତ ହୋଇ ଗୋଦାବରୀ ପ୍ରତି କ୍ରୁଦ୍ଧହୋଇ ସଙ୍ଗେ ସଙ୍ଗେ ଅଭିଶାପ ଦେଲେ -'ଯେଉଁ ତୀର୍ଥଜଳବିନ୍ଦୁ ହ୍ରଦ ପ୍ରତିଷ୍ଠାରେ ବ୍ୟବହୃତ ହୋଇନାହିଁ ତାହା କାଳେ କାଳେ ଅପବିତ୍ର ହୋଇ ରହିବ ।' ଗୋଦାବରୀ ଏ ସମ୍ବାଦ ପାଇ ବ୍ୟସ୍ତ ହୋଇ ମହାଦେବଙ୍କର ଶରଣାଗତ ହେଲେ । ମହାଦେବ ପ୍ରସନ୍ନ ହେଲେ ସତ୍ୟ, କିନ୍ତୁ କହିଲେ, 'ମୋ କଥା ବ୍ୟର୍ଥ ହେବନାହିଁ, ତେବେ ପ୍ରତି ବାରବର୍ଷରେ ଯେତେବେଳେ ସିଂହ ବୃହସ୍ପତି

ଯୋଗପଡ଼ିବ, ସେତେବେଳେ ଗୋଦାବରୀରେ ସ୍ନାନ ଯୋଗ ପଡ଼ିବ ଓ କେବଳ ସେହି ସମୟରେ ଗୋଦାବରୀଜଳ ପବିତ୍ର ହେବ' । ବିନ୍ଦୁହ୍ରଦର ଉତ୍ତରଦିଗରେ ଉତ୍ତରେଶ୍ୱର ନିକଟରେ ଗୋଦାବରୀ ପାଇଁ ଗୋଟିଏ ସ୍ୱତନ୍ତ୍ର ସ୍ଥାନ ନିର୍ଦ୍ଦିଷ୍ଟ ହେଲା । ସେ ସ୍ଥାନରେ ଜଳ ବର୍ତ୍ତମାନ ସୁଦ୍ଧା ବାରବର୍ଷରେ ସିଂହବୃହସ୍ପତି ଯୋଗ ପଡ଼ିଲେ ପବିତ୍ର ହୁଏ ଓ ଅନେକ ଯାତ୍ରୀ ଗୋଦାବରୀରେ ସ୍ନାନ କରିବାକୁ ଆସନ୍ତି । ଏହି ଆଖ୍ୟାୟିକାରୁ ଜଣାଯାଏ ଯେ ଗୋଦାବରୀ ବିନ୍ଦୁସାଗର ଖୋଦିତ ହେବାପରେ ନିର୍ମିତ ହୋଇଥିଲା । ବିନ୍ଦୁସାଗର ପ୍ରତିଷ୍ଠାତାର ଉଦ୍ଦେଶ୍ୟ ଅତି ମହତ୍ । ଉତ୍କଳର ଗଜପତି ସମ୍ରାଟ ଉତ୍କଳୀୟମାନଙ୍କର ସ୍ନାନର ସୁବିଧା ନିମିତ୍ତ ଏହି ପୁଷ୍କରିଣୀଟି ଖୋଳାଇଥିଲେ । ଏଥିରେ ସମଗ୍ର ତୀର୍ଥ ଘନୀଭୂତ ହୋଇଛନ୍ତି । ତେଣୁ ସରଳବିଶ୍ୱାସୀ ଲୋକ ସମଗ୍ର ଭାରତରେ ପର୍ଯ୍ୟଟନ ନ କରି ଏଠାରେ ସ୍ନାନକରି ଭାଗ୍ୟଫଳ ଲାଭ କରିପାରେ ।

ଅନ୍ୟାନ୍ୟ ପୁରାଣମାନଙ୍କରେ ବିନ୍ଦୁସାଗରର ମାହାତ୍ମ୍ୟ ମଧ୍ୟ ଉଲ୍ଲେଖ ହୋଇଛି । ସେଗୁଡ଼ିକ ଲେଖିବା ଅନାବଶ୍ୟକ । ସେମାନଙ୍କ ମତରେ ବିନ୍ଦୁସାଗର ତୁଲ୍ୟ ତୀର୍ଥ ତ୍ରିଭୁବନରେ ନାହିଁ ।

**ପାପନାଶିନୀ:** ଲିଙ୍ଗରାଜ ମନ୍ଦିରର ବାୟୁକୋଣରେ ପାପନାଶିନୀ କୁଣ୍ଡ ରହିଛି । ଏହାର ଉତ୍ତରଦିଗରେ ମୈତ୍ରେଶ୍ୱର ଓ ବାରୁଣେଶ୍ୱର ମନ୍ଦିର ଅବସ୍ଥିତ । କୁଣ୍ଡଟିର ଉତ୍ତର ଓ ଦକ୍ଷିଣ ଦିଗରେ ସୁଦୃଢ ପାବଚ୍ଛଶ୍ରେଣୀ, ପୂର୍ବ ଓ ପଶ୍ଚିମ ଦିଗରେ ବିଶାଳ ପ୍ରାଚୀର ବିଦ୍ୟମାନ ଥିଲା । କାଳକ୍ରମେ ପଶ୍ଚିମଦିଗର ପ୍ରାଚୀରଟି ଭାଙ୍ଗିଯାଇଛି । ପୂର୍ବଦିଗସ୍ଥ ପ୍ରାଚୀରଟି ଭଗ୍ନଦଶାପନ୍ନ । ଏହା ମଧ୍ୟରେ ଦ୍ୱାପଦାଣ୍ଡୀଟାଏ ଥିଲା । କୁଣ୍ଡରୁ ପଙ୍କୋଦ୍ଧାର ନ ହେବାରୁ ଏହାର ଜଳ ଅତୀବ ପଙ୍କିଳ ଓ ଦଳପୂର୍ଣ୍ଣ ହୋଇଗଲାଣି । ଏହାକୁ ପାପନାଶିନୀ ନ କହି ପାପବର୍ଦ୍ଧିନୀ କହିଲେ ଅତ୍ୟୁକ୍ତି ହେବନାହିଁ ।

ଏହାର ଖନନକାଳ ନିର୍ଣ୍ଣୟ କରିବା ଅତିକଷ୍ଟସାଧ୍ୟ । ତଥାପି ଏହା ଲିଙ୍ଗରାଜ ମନ୍ଦିର ନିର୍ମିତ ହେବା ଅଳ୍ପ ସମୟପରେ ନିର୍ମିତ ହୋଇଥିବା ମନେହୁଏ । କାରଣ ଲିଙ୍ଗରାଜ ଓ ପାର୍ବତୀଙ୍କ ପାଦୁକନଳା ଏହା ସହିତ ସଂଯୁକ୍ତ ହୋଇ ଥିବାର ଲୋକେ କହନ୍ତି । ପାଦୁକା ନଳାଟି ନିଶ୍ଚୟ ମନ୍ଦିର ନିର୍ମାଣ ସମୟରେ ନିର୍ମିତ ହୋଇଥିଲା । ପାଦୋଦକ ଜଳ ବେଶୀ ହୋଇଗଲେ ମନ୍ଦିରର ପରିସର ଖରାପ ହେବା ସମ୍ଭାବନା । ପାର୍ବତୀ ମନ୍ଦିର ନିକଟରେ ଗୋଟିଏ କୂଅପରି ପାଦୁକ କୁଣ୍ଡ ଦେଖାଯାଏ । ତେଣୁ

ଏଠାରୁ ଜଳକୁ ଅନ୍ୟତ୍ର ନେଇଯିବାର ବ୍ୟବସ୍ଥା ହୋଇଥିବାର ମନେହୁଏ ଓ ପାଦୁକଜଳ ନିଷ୍କାସନ ପାଇଁ ଏ କୁଣ୍ଡ ନିର୍ମିତ ହୋଇଥିଲା । ତାହା ମନ୍ଦିର ନିର୍ମାଣର ପରବର୍ତ୍ତୀ । ଦ୍ୱିତୀୟତଃ ପାଦୁକନଳା ଜଳ ପାପନାଶିନୀ କୁଣ୍ଡରେ ନିଷ୍କାସନରୁ ଜଣାଯାଏ ଯେ, ପାପନାଶିନୀ କୁଣ୍ଡ ମନ୍ଦିରରେ ଥିବା ପାଦୁକାନଳାର ପୂର୍ବବର୍ତ୍ତୀ ହୋଇପାରେ । ମନ୍ଦିର ନିର୍ମାଣ ପୂର୍ବରୁ ଏଠାରେ ଗୋଟିଏ କୁଣ୍ଡ ଥିଲା । ମନ୍ଦିର ନିର୍ମାତା ପାଦୁକାଜଳ ଏଠାରେ ଛାଡ଼ିବା ସୁବିଧାଜନକ ମନେକରି ବାୟୁଦିଗରେ ପାଦୁକନଳା ଖୋଳାଇଥିଲେ । ମୋ ମତରେ ପ୍ରଥମ ମତଟି ସମୀଚୀନ । ପାଦୁକନଳା ସହିତ ଏହାର ଯେଉଁ ସମ୍ପର୍କ ବିଜ୍ଞ ଲୋକମାନେ କହନ୍ତି ସେଥିରୁ ଏହାର ଖନନ ସମ୍ବନ୍ଧରେ ଏତିକିମାତ୍ର ଜଣାଯାଏ । ଏହା ଜୀର୍ଣ୍ଣ ଓ ଭଗ୍ନ ଅବସ୍ଥା ପ୍ରାୟ ।

ପୁନଶ୍ଚ ଲିଙ୍ଗରାଜ ମହାପ୍ରଭୁଙ୍କ ଆଦ୍ୟଯାତ୍ରା ପ୍ରଥମାଷ୍ଟମୀ ଏଠାରେ ଅନୁଷ୍ଠିତ ହୁଏ । ଏହା ନିକଟରେ ନାଥ ସଂପ୍ରଦାୟର ଯୋଗୀମଠ କପାଳୀ ମଠ ମଧ ବିଦ୍ୟମାନ । ଏ ସମସ୍ତ ଏହାର ପ୍ରାଚୀନତାଜ୍ଞାପକ । 'ସ୍ୱର୍ଣ୍ଣାଦ୍ରିମହୋଦୟ'ରେ ଏହାର ପ୍ରାଚୀନତା ଓ ମାହାତ୍ମ୍ୟଜ୍ଞାପକ ଗୋଟିଏ ଆଖ୍ୟାୟିକା ପ୍ରଦତ୍ତ ହୋଇଛି । ଯଥା- କାଶୀରେ ବରୁଣ ନାମକ ରାଜା ଥିଲେ । ତାଙ୍କର ମିତ୍ରା ନାମରେ ରାଣୀ ଥିଲେ । ତାଙ୍କର ମୁଖ ବ୍ୟତୀତ ସର୍ବାଙ୍ଗ ସୁନ୍ଦରଥିଲା । ସେ ଥିଲେ ବାନରୀମୁଖସଂଯୁକ୍ତା, ସର୍ବାବୟବସୁନ୍ଦରୀ । କିନ୍ତୁ ରାଣୀ ଜାତିସ୍ମରା ଓ ତାଙ୍କ ଦାନ ଅନନ୍ୟ ଥିଲା । ତାଙ୍କର ଦାତୃତ୍ୱ ଶୁଣି ଭୁବନେଶ୍ୱରର ଜଣେ ଦରିଦ୍ର ବ୍ରାହ୍ମଣ ବା ଦାନଗ୍ରହଣାର୍ଥୀ କାଶୀ ଯାଇଥିଲା ଓ ଦ୍ୱାରୀ ନିକଟରେ ନିଜର ପ୍ରାର୍ଥନା ଜଣାଇଥିଲା । ରାଣୀ ମିତ୍ରା ଦ୍ୱାରୀଠାରୁ ସମସ୍ତ ବୃତ୍ତାନ୍ତ ଜାଣିପାରି ଅତି ଆନନ୍ଦିତା ହେଲେ । ସେ ସଖୀମାନଙ୍କ ଦ୍ୱାରା ବ୍ରାହ୍ମଣକୁ ଡକାଇନେଇ ପାପନାଶିନୀ କୁଣ୍ଡ ବିଷୟ ଜିଜ୍ଞାସା କଲେ । ମିତ୍ରା ଜାତିସ୍ମରା ଥିବାରୁ ବ୍ରାହ୍ମଣକୁ ପୂର୍ବଜନ୍ମବୃତ୍ତାନ୍ତ କହିଲେ । ସେ କହିଲେ- "ଗଭୀର ବେଣୁକାରକ ବନମଧରେ ଅଛି ପାପନାଶିନୀ ଗୋଟିଏ ସ୍ୱଚ୍ଛକୁଣ୍ଡ । ମୁନିବର ସୁଜ୍ୟୋତିଙ୍କ ତପଃ ପ୍ରଭାବରୁ ଏହା ତୀର୍ଥ ହୋଇଥିଲା । ସେଠାରେ ଗୋଟିଏ ବାଉଁଶ ଗଛରେ ମର୍କଟୀର ମୁଣ୍ଡଲାଗି ରହିଛି । ହେ ବ୍ରାହ୍ମଣ, ତୁମ୍ଭେ ସେଠାକୁ ଫେରିଯାଇ ମୁଣ୍ଡଟିକୁ ପାପନାଶିନୀ ଜଳରେ ନିଃକ୍ଷେପ କରିବ ଓ ତଦନନ୍ତର ମୋ ନିକଟକୁ ଆସିଲେ ମୁଁ ତୁମକୁ ଗଜ, ଅଶ୍ୱ, ବସନ ଓ ବିପୁଳ ଅର୍ଥ ଦାନ କରିବି ।" ମିତ୍ରାଙ୍କ ଆଦେଶାନୁସାରେ ଦ୍ୱିଜବର ଭୁବନେଶ୍ୱରକୁ ଫେରିଆସି ବାନରମୁଖଟିକୁ କୁଣ୍ଡଜଳରେ ପକାଇଦେଲା । ଠିକ୍ ସେହି ସମୟରେ ମିତ୍ରାର ବାନରମୁଖ ପରିବର୍ତ୍ତିତ ହୋଇଗଲା । ସେ ମାନବୀମୁଖ ଧାରଣ

କଲେ । ସେହିଦିନଠାରୁ ମିତ୍ରାଙ୍କର ଅପୂର୍ବ ରୂପଲାବଣ୍ୟ ସମଗ୍ର କାଶୀଦେଶରେ ପ୍ରଚାରିତ ହେଲା । ବ୍ରାହ୍ମଣ ପୁନର୍ବାର କାଶୀଯାଇ ମିତ୍ରାଙ୍କଠାରୁ ବିପୁଳ ଦାନ ଗ୍ରହଣ କଲେ । ରାଜା ରାଣୀଙ୍କଠାରୁ ସମସ୍ତ ବିଷୟ ଅବଗତ ହୋଇ ସପରିବାର ଏବଂ ଚତୁରଙ୍ଗବଳ ସହିତ ପରମପାବନ ଏକାମ୍ର କ୍ଷେତ୍ରକୁ ଆଗମନ କରିଥିଲେ । ସେଠାରେ ପାପନାଶିନୀକୁଣ୍ଡ ଦର୍ଶନ କରି ରାଜଦମ୍ପତି ଅପାର ଆନନ୍ଦ ଲାଭ କରିଥିଲେ ଓ ନିଜ ନାମରେ ମିତ୍ରେଶ୍ୱର ଓ ବରୁଣେଶ୍ୱର ନାମକ ଦୁଇଟି ଶିବମନ୍ଦିର ପ୍ରତିଷ୍ଠା କରିଥିଲେ ।

"ସପତ୍ନୀକୋ ନୃପଶ୍ରେଷ୍ଠୋ ଲିଙ୍ଗସ୍ଥାପନକଂ କୃତଂ ।
ମୈତ୍ରେଶଂ ବାରୁଣେଶଂ ଚ ପୂଜୟିତ୍ୱା ଯଥାବିଧି ।୫୬।"

*(ସ୍ୱର୍ଣ୍ଣାଦ୍ରି ମହୋଦୟ, ୯ମ ଅଧ୍ୟାୟ)*

ଉକ୍ତ ଆଖ୍ୟାୟିକାରୁ ଏତିକିମାତ୍ର ଜଣାଯାଏ ପାପନାଶିନୀ ଗୋଟିଏ ପ୍ରାଚୀନ କୁଣ୍ଡ ଓ କାଶୀ ରାଜଦମ୍ପତି ଏହାର ଉତ୍ତର ଦିଗରେ ମିତ୍ରେଶ୍ୱର ଓ ବରୁଣେଶ୍ୱର ମନ୍ଦିର ପ୍ରତିଷ୍ଠା କରିଥିଲେ । ଏହାର ସତ୍ୟତା ଜାଣିବା ସହଜ ନୁହେଁ ।

ଏହି କୁଣ୍ଡର ସଂସ୍କାର ସର୍ବାଦୌ ଆବଶ୍ୟକ । ତାହା ନହେଲେ ଭୁବନେଶ୍ୱର ପ୍ରାଚୀନତୀର୍ଥ ଅଚିରେ ଲୋପ ପାଇଯିବ । ଏହାର ସଂସ୍କାର ପାଇଁ ଉଦ୍ୟମ ହେଉଥିବା ପ୍ରଶଂସନୀୟ ।

**ବ୍ରହ୍ମକୁଣ୍ଡ:** ବ୍ରହ୍ମେଶ୍ୱରର ଦକ୍ଷିଣଦିଗରେ ବ୍ରହ୍ମକୁଣ୍ଡ ଅଛି । ଏହାର ଦକ୍ଷିଣ ଦିଗରେ ଆହୁରି ଗୋଟିଏ ଛୋଟକୁଣ୍ଡ ଥିବାର ମନେହୁଏ । ବ୍ରହ୍ମେଶ୍ୱର ମନ୍ଦିରର ଦୁଇଟି ବେଢା । ଭିତରବେଢା ଓ ବାହାରବେଢା । ଏହି କୁଣ୍ଡଟି ବାହାରବେଢାରେ ଅବସ୍ଥିତ । ଏହା ମଧ୍ୟରେ ଗୋଟିଏ ଦୀପଦଣ୍ଡି ଅଛି । ଏହାର ପଶ୍ଚିମକୂଳରେ ଘାଟଗୁଡ଼ିକର ଭଗ୍ନାବଶେଷ ଦେଖାଯାଏ । ଏଠାରେ ପୂର୍ବେ ଅନେକ ଲୋକ ବାସ କରୁଥିଲେ । ଏହି କୁଣ୍ଡକୁ ଜଳପ୍ଲାବନରୁ ରକ୍ଷାକରିବା ପାଇଁ ବାହାରବେଢା ନିର୍ମିତ ହୋଇଥିଲା । ଏହାର ନିର୍ମାଣ ସମୟ ବ୍ରହ୍ମେଶ୍ୱର ଶିଳାଲିପିରୁ ଜଣାଯାଏ । ଉଦ୍ୟୋତକେଶରୀଙ୍କ ରାଜତ୍ୱର ୧୮ ବର୍ଷରେ (୫୯୩+୧୮=)୬୧୧ ଖ୍ରୀଷ୍ଟାବ୍ଦରେ ତାଙ୍କ ମାତା ରାଣୀ କୋଳାବତୀଙ୍କଦ୍ୱାରା ଖୋଦିତ ହୋଇଥିଲା । ଏହି କୁଣ୍ଡରେ ଦୀପଦଣ୍ଡି ଥିବାରୁ ମନେହୁଏ ଯେ ଅତି ପ୍ରାଚୀନ କାଳରୁ ଉତ୍କଳର ପୋଖରୀ ମାନଙ୍କରେ ଦୀପଦଣ୍ଡି ନିର୍ମାଣ ପ୍ରଥା ପ୍ରଚଳିତ ଅଛି ।

**ମେଘକୁଣ୍ଡ:** ମେଘକୁଣ୍ଡ ମେଘେଶ୍ୱର ମନ୍ଦିରର ଉତ୍ତରଦିଗରେ ଅବସ୍ଥିତ । ଏହା

ଗୌରୀକୁଣ୍ଡ ପରି ଗୋଟିଏ କ୍ଷୁଦ୍ର ପୁଷ୍କରିଣୀ । ଏହା ମଧ୍ୟରେ ଦୀପଦଣ୍ଡି ଅଛି । ଏହା ବର୍ତ୍ତମାନ ଜଳପୂର୍ଣ୍ଣ । ଏହାର ଐଶାନ୍ୟକୋଣରେ ଅନତିଦୂରରେ ଗନ୍ଧବତୀ ନଦୀ ପ୍ରବାହିତ । ଏହା ମେଘେଶ୍ୱର ମନ୍ଦିର ନିର୍ମାଣ (୧୧୯୫ ଖ୍ରୀଷ୍ଟାବ୍ଦ) ପରେ ସ୍ୱପ୍ନେଶ୍ୱର ଓ ସୁରମାଦେବୀଙ୍କ ଦ୍ୱାରା ଖୋଦିତ ହୋଇଥିଲା ।

**ଅଲାବୁକୁଣ୍ଡ:** ଅଲାବୁକେଶ୍ୱର ମନ୍ଦିରର ସମ୍ମୁଖରେ ଅର୍ଥାତ୍ ଦକ୍ଷିଣଦିଗରେ ଏହା ଗୋଟିଏ ଅତି ଗଭୀର ପୁଷ୍କରିଣୀ । ଏହା ମଧ୍ୟରେ ଦପଦାଣ୍ଡି ଥିବାର ଜଣାଯାଏନାହିଁ । ମନ୍ଦିର ନିର୍ମାଣ କାଳରେ ଏହା ଖୋଦିତ ହୋଇଥିଲା । ଏହା ଭୁବନେଶ୍ୱରର ଗୋଟିଏ ପ୍ରାଚୀନକୁଣ୍ଡ ।

**ରାମକୁଣ୍ଡ:** ରାମେଶ୍ୱର ମନ୍ଦିରର ପଶ୍ଚାତ୍ ଭାଗରେ (ପଶ୍ଚିମ ଦିଗରେ) ରାମେଶ୍ୱରକୁଣ୍ଡ । ଏହା ଅଲାବୁକୁଣ୍ଡ ପରି ଅତି ଗଭୀର । ଏହାକୁ ଅଶୋକକୁଣ୍ଡ ବୋଲି ଲୋକମାନେ କହନ୍ତି । 'କପିଳସଂହିତା' ଗ୍ରନ୍ଥରେ ମଧ୍ୟ ଏହା 'ଅଶୋକଝରେ' ନାମରେ ଖ୍ୟାତ । ଏହା ମଧ୍ୟରେ ଗୋଟିଏ ଦୀପଦଣ୍ଡି ଅଛି । ସମ୍ଭବତଃ ଅଶୋକଙ୍କ ସମୟରେ ଏଠାରେ ଗୋଟିଏ ନୈସର୍ଗିକ ପ୍ରସବତା ଥିଲା ଓ ଏଠାରେ ସ୍ତମ୍ଭ ସ୍ଥାପିତ ହେବା ପରେ ଏହାର ନାମ ଅଶୋକଝର ହେଲା । ପରବର୍ତ୍ତୀକାଳରେ ରାମେଶ୍ୱର ମନ୍ଦିର ନିର୍ମାଣହେବା ସମୟରେ ଏହା ଖୋଦିତ ହୋଇ ଆଧୁନିକ ଆକାର ଧାରଣ କଲା । ସେହିଦିନୁ ଏହା ରାମକୁଣ୍ଡ ନାମରେ ଖ୍ୟାତ । ରାମେଶ୍ୱର ଯଯାତିକେଶରୀଙ୍କ କୀର୍ତ୍ତି ବୋଲି ମନେହୁଏ । ତେଣୁ ଏହା ଭୁବନେଶ୍ୱରର ଗୋଟିଏ ପ୍ରାଚୀନ ପୁଷ୍କରିଣୀ । ଅଶୋକାଷ୍ଟମୀ ଯାତ୍ରାଦିନ ଏହାର ଜଳରେ ଅସଂଖ୍ୟ ଲୋକ ସ୍ନାନ କରନ୍ତି । 'ଅଶୋକଝରବିଖ୍ୟାତଂ ସର୍ବପାପହରଂ ଦ୍ୱିଜାଃ ।'

**କୋଟୀତୀର୍ଥ:** କୋଟୀତୀର୍ଥେଶ୍ୱର ମନ୍ଦିରର ପଶ୍ଚାତ୍‌ରେ ବା ପୂର୍ବଦିଗରେ କେଦାରଗୌରୀ ବାଟରେ ଏହି କୁଣ୍ଡଟି ବିଦ୍ୟମାନ । ଏହା କେଦାରକୁଣ୍ଡ ପରି ଅତି କ୍ଷୁଦ୍ର ।

**ଗଙ୍ଗାଯମୁନା:** ନୂତନ ଧର୍ମଶାଳାର ପୂର୍ବଦିଗରେ ସୁବର୍ଣ୍ଣେଶ୍ୱର ମହାଦେବଙ୍କ ନିକଟରେ ଗଙ୍ଗାଯମୁନା ନାମକ ଦୁଇଟି କ୍ଷୁଦ୍ର ପୁଷ୍କରିଣୀ ବିଦ୍ୟମାନ । ଗୋଟିକର ନାମ ଗଙ୍ଗା ଓ ଅନ୍ୟଟିର ନାମ ଯମୁନା । ଏହା କେଶରୀବଂଶୀୟ ରାଜାମାନଙ୍କର କୀର୍ତ୍ତି । ସୁବର୍ଣ୍ଣେଶ୍ୱର ମହାଦେବ ସୋନପୁରର ସୁବର୍ଣ୍ଣେଶ୍ୱର ମନ୍ଦିରର ଅନୁକରଣରେ ନିର୍ମିତ ।

କେଶରୀବଂଶୀୟ ରାଜାମାନେ ନିଜର ପୂର୍ବ ରାଜଧାନୀ ବିନୀତପୁର ଓ ସୁବର୍ଣ୍ଣପୁର ନଗରର ମନ୍ଦିରମାନଙ୍କର ଅନୁକରଣରେ ପରବର୍ତ୍ତୀକାଳର ରାଜଧାନୀ ଯାଜପୁର ଓ ଭୁବନେଶ୍ୱର ମନ୍ଦିରଗୁଡ଼ିକ ନିର୍ମାଣ କରିଥିଲେ । ସୁବର୍ଣ୍ଣେଶ୍ୱର ମହାଦେବଙ୍କ ସମ୍ବନ୍ଧରେ ପ୍ରଚଳିତ କିମ୍ବଦନ୍ତୀ ସହିତ ସୋନପୁରର ସୁବର୍ଣ୍ଣମେରୁ ମହାଦେବଙ୍କ ସମ୍ବନ୍ଧରେ ପ୍ରଚଳିତ କିଂବଦନ୍ତୀର ଅନେକ ସାମଞ୍ଜସ୍ୟ ଅଛି ।

ଭୁବନେଶ୍ୱର କ୍ଷେତ୍ରରେ ଦୁଇଶତାଧିକ ପୁଷ୍କରିଣୀ ଥିଲା । ସେମାନଙ୍କ ମଧ୍ୟରେ ଲକ୍ଷ୍ମୀସାଗର, କୌଶଲ୍ୟାଗଙ୍ଗ ପ୍ରଭୃତି ବିନ୍ଦୁସାଗରଠାରୁ ମଧ୍ୟ ବୃହତ୍ତର । ଏ ତୀର୍ଥରେ ଅନେକ ବୃହତ୍ ପୁଷ୍କରିଣୀ ଥାଉଁ ଥାଉଁ କୋଟୀତୀର୍ଥ ଓ ଗଙ୍ଗା ଯମୁନା ପରି କ୍ଷୁଦ୍ରତମ ପୁଷ୍କରିଣୀମାନ କାହିଁକି ତୀର୍ଥରୂପେ କୀର୍ତ୍ତିତ ହେଉଛନ୍ତି ? କବିବରଙ୍କ ଭାଷାରେ କହିଲେ-

'କ୍ଷୁଦ୍ରସିପ୍ରା ସ୍ରୋତ ବିଖ୍ୟାତ ଜଗତେ ।
ମହାନଦୀ ନାମ ରହିଲା ଗୁପତେ ।
ପୂଜାସ୍ପଦ ହେଲା ଗୋଷ୍ପଦ ପୁଷ୍କର ।
ସ୍ୱରୂପା ଅଂଶୁପା ଲୋକେ ଅଗୋଚର ।'

'ଅଣ୍ୱାପି ଯାତି ଦେବତ୍ୱଂ ମହଭିଃ ସୁପ୍ରତିଷ୍ଠିତଃ' । ସେହିପରି ବିଶିଷ୍ଟ ଐତିହାସିକ ଘଟଣାମାନଙ୍କ ଯୋଗୁ ଏହି କ୍ଷୁଦ୍ରକୁଣ୍ଡଗୁଡ଼ିକ ତୀର୍ଥରୂପେ ପରିଗଣିତ ହେଉଛନ୍ତି । ଭୁବନେଶ୍ୱରବିଷୟକ ପୁରାଣ ଓ ଉପପୁରାଣମାନ ବାରମ୍ବାର ପଢ଼ିଲେ ଜଣାଯାଏ ଯେ, ଏହି କୁଣ୍ଡମାନଙ୍କ ନିକଟରେ ବିରାଟ ଯଜ୍ଞମାନ ସଂପାଦିତ ହୋଇଥିଲା ଓ ଯଜ୍ଞସାଧନ ଯୋଗୁ ଏମାନଙ୍କର ପବିତ୍ରତା ବୃଦ୍ଧି ପାଇଥିବା ସମ୍ଭବପର ।

'ଯଥା ରାମକୁଣ୍ଡଂ ଚ ତତ୍ରାସ୍ତେଽପ୍ୟଶ୍ୱମେଧାଙ୍ଗସମ୍ଭବମ୍ ।'

ରାମଚନ୍ଦ୍ର ଏଠାରେ ଅଶ୍ୱମେଧ ଯଜ୍ଞ ସମ୍ପନ୍ନ କରି ରାମେଶ୍ୱର ଲିଙ୍ଗ ପ୍ରତିଷ୍ଠା ଓ ରାମକୁଣ୍ଡ ଖୋଦନ କରିଥିଲେ ।

'ତତଃ ପ୍ରପୂଜିତସ୍ତେନ ଦେବେଶୋ ଭୁବନେଶ୍ୱରଃ ।
ଅଶ୍ୱମେଧାଦିକଂ କୃତ୍ୱା ସମାପ୍ତଂ ବରଦକ୍ଷିଣୈଃ ।'

କୋଟିତୀର୍ଥ ବିଷୟକ ପୌରାଣିକ ବିବରଣ ଆଲୋଚନା କଲେ ମଧ୍ୟ ଏକଥା ସତ୍ୟ ବୋଲି ଜଣାଯାଏ ।

'ତତ୍ରାସ୍ତେ କୋଟିଲିଙ୍ଗଂ ଚ କୋଟିଯଜ୍ଞାଙ୍ଗସମ୍ଭବମ୍ ।' ଏକ ସମୟରେ

ଇନ୍ଦ୍ରାଦି ଦେବତାମାନେ ଏକାମ୍ରକ୍ଷେତ୍ରକୁ ଆଗମନ କରି ସେଠାରେ ଏକ ମନ୍ଦିର ନିର୍ମାଣ କରିବାପାଇଁ ଉଦ୍ୟୋଗ କଲେ । ଦୈବବାଣୀ ହେଲା ଯେ, 'ଲିଙ୍ଗରାଜଙ୍କ ଐଶାନ୍ୟକୋଣରେ ମନ୍ଦିର ନିର୍ମାଣ କର ।' ସେମାନେ ଯଥାବିଧି ମନ୍ଦିର ନିର୍ମାଣ କରିଥିଲେ । ମନ୍ଦିର ନିର୍ମାଣପରେ ପ୍ରତିଷ୍ଠା ସମୟରେ ଯଜ୍ଞ ଓ ହୋମାଦି ବୈଦିକ କ୍ରିୟା ସଂପନ୍ନ ହୋଇଥିଲା ।

ଯାଜପୁରରେ ଦଶସହସ୍ର ବ୍ରାହ୍ମଣ ଯେଉଁ ଦଶାଶ୍ୱମେଧ ଯଜ୍ଞ କରିଥିଲେ ତାହା ବର୍ତ୍ତମାନ ବ୍ରହ୍ମାଙ୍କ କୁଣ୍ଡ ବା ବ୍ରହ୍ମକୁଣ୍ଡନାମରେ ପ୍ରସିଦ୍ଧ । ହୋମ ଓ ଯଜ୍ଞପରେ ବ୍ରାହ୍ମଣମାନଙ୍କୁ ନାନାବିଧଦାନ ଓ ବ୍ରାହ୍ମଣଶାସନ ପ୍ରତିଷ୍ଠା ହୋଇଥାଏ । ଏହି କୁଣ୍ଡମାନଙ୍କ ନିକଟରେ ମଧ୍ୟ ବ୍ରାହ୍ମଣଶାସନ ଥିବାର ଜଣାଯାଏ । ଭୁବନେଶ୍ୱରରେ ଅଷ୍ଟତୀର୍ଥ ବ୍ୟତୀତ ଆହୁରି ଅନେକ ପୁଷ୍କରିଣୀ ଦେଖାଯାଏ । ଏମାନଙ୍କ ମଧ୍ୟରେ କେଦାରକୁଣ୍ଡ, ଗୌରୀକୁଣ୍ଡ, ସିଦ୍ଧକୁଣ୍ଡ (ମଡ଼ଛୀ), ଦେବୀପାଦହରା, ଗୋସାଗରେଶ୍ୱର, କପିଳକୁଣ୍ଡ, ଭୀମକୁଣ୍ଡ ପ୍ରଭୃତି ପବିତ୍ର ତୀର୍ଥ ରୂପେ ଗୃହୀତ ହୁଏ ।

କେଦାରକୁଣ୍ଡ ଓ ଗୌରୀ କୁଣ୍ଡ ତୀର୍ଥ ନ ହେଲେ ମଧ୍ୟ ଏହାର ଜଳରେ ଲୌହଭାଗଥିବାରୁ ସ୍ନାନ ଓ ପାନ ନିମିତ୍ତ ପ୍ରକୃଷ୍ଟ ବୋଲି ବିବେଚିତ ହୁଏ । ଚାଉଳଧୁଆ କୁଣ୍ଡର ଜଳ ବର୍ତ୍ତମାନ ଦେଶବିଦେଶରେ ସୁଦ୍ଧା ବିକ୍ରୀ ହେଉଅଛି । ବର୍ତ୍ତମାନ ଯୁଗରେ ଏହି ତିନିକୁଣ୍ଡର ଜଳପାଇଁ ଭୁବନେଶ୍ୱର ସମଗ୍ର ଭାରତରେ ପ୍ରସିଦ୍ଧ ଓ ଏହାର ଜଳପାନକରି ସ୍ୱାସ୍ଥ୍ୟଲାଭ କରିବାପାଇଁ ଅନେକ ବିଦେଶଯାତ୍ରୀ ଏଠାକୁ ଆସୁଛନ୍ତି ।

**ମଡ଼ଛୀକୁଣ୍ଡ:** ମୁକ୍ତେଶ୍ୱରର ପ୍ରକୃତନାମ ସିଦ୍ଧେଶ୍ୱର । ଏହାର ଦକ୍ଷିଣ ପାଖରେ ଥିବା କୁଣ୍ଡର ନାମ ସିଦ୍ଧକୁଣ୍ଡ ।

'ଅସ୍ୟ ପାର୍ଶ୍ୱେଽସ୍ତି କୁଣ୍ଡଂ ସର୍ବାଘନାଶନଂ ।

ବିଖ୍ୟାତଂ ତସ୍ୟ ନାମ୍ନାତୁ ସ୍ୱାଦୁତୋୟଂ ସୁନିର୍ମଳମ୍ ।'

ଏହା ପରବର୍ତ୍ତୀ କାଳରେ ମଡ଼ଛୀ କୁଣ୍ଡ ନାମରେ ଆଖ୍ୟାତ ହୋଇଥିଲା । ଲୋକେ କହନ୍ତି ଯେ, ମୃତବତ୍ସା ଓ ନିଃସନ୍ତାନସ୍ତ୍ରୀମାନେ ଏଠାରେ ନେତୋତ୍ସବ (ଅଶୋକାଷ୍ଟମୀର ପୂର୍ବଦିନ) ଦିନ ରାତ୍ରିରେ ସ୍ନାନକଲେ ସନ୍ତାନ ଲାଭକରନ୍ତି । ଉତ୍କଳୀୟମାନଙ୍କ ମଧ୍ୟରେ ଏହି ଜଳର ସନ୍ତାନ ଉତ୍ପାଦିକା ଶକ୍ତି ବିଶେଷ ପ୍ରଚାରିତ

ହୋଇଛି । ତେଣୁ ସେଦିନ ଏ ଜଳ ବହୁମୂଲ୍ୟରେ ବିକ୍ରିତ ହୁଏ ।

**କପିଳକୁଣ୍ଡ:** କେଦାରେଶ୍ୱର ପରି କପିଳକୁଣ୍ଡର ଜଳ ମଧ୍ୟ ଅତି ସ୍ୱଚ୍ଛ ଓ ନିର୍ମଳ । ଏହା ଅତି ଗଭୀର ଓ ସୁଦୃଢ଼ ସୋପାନବଦ୍ଧ । ଏହାର ମଧ୍ୟରେ ଦୀପଦଣ୍ଡି ଅଛି । ଏଠାରେ ଶତଶତ ପ୍ରସବଣଥିବାରୁ ଏହି ପୁଷ୍କରିଣୀର ଜଳସର୍ବଦା ନିର୍ମଳଥାଏ । କପିଳେଶ୍ୱର ମନ୍ଦିର ଓ କପିଳେଶ୍ୱର ପୁଷ୍କରିଣୀ ଲଲାଟେନ୍ଦୁଙ୍କ କୀର୍ତ୍ତି ବୋଲି କିମ୍ବଦନ୍ତୀ ଶୁଣାଯାଏ । ଏହା ଭୁବନେଶ୍ୱରର ଗୋଟିଏ ପ୍ରାଚୀନ କୁଣ୍ଡ ।

**ଦେବୀପାଦହରା:** ଏହା 'ସହସ୍ରଲିଙ୍ଗମ୍ ପୁଷ୍କରିଣୀ' ନାମରେ ମଧ୍ୟ ଅଭିହିତ ହୁଏ । ଅତି ଗଭୀର ଓ ଦୃଢ଼ ସୋପାନ ଶ୍ରେଣୀ ଶୋଭିତ । ଏହା ମଧ୍ୟରେ ଗୋଟିଏ ପଥର ଦୀପଦଣ୍ଡୀ ଥିଲା । କିନ୍ତୁ ଏହା ସାଧାରଣ ଦୀପଦଣ୍ଡୀଠାରୁ ପୃଥକ୍ । ଏହାର ଚତୁଃପାର୍ଶ୍ୱରେ ୧୦୮ ଶିବମନ୍ଦିର ନିର୍ମିତ ହୋଇଥିଲା । ବର୍ତ୍ତମାନ ୭୭ଟି ମନ୍ଦିର ବିଦ୍ୟମାନ । ଅନ୍ୟ ୩୧ଗୋଟି ଭଗ୍ନ ହୋଇଅଛି । ଏହାର ଜଳ ଆବଦ୍ଧ ହୋଇଥିବାରୁ ସୁଶୀତଳ ଓ ଅପରିଷ୍କାର ହୋଇଅଛି । ଏହାର ପଶ୍ଚିମରେ ଗୋଟିଏ ମନ୍ଦିର ଭୂମିଗର୍ଭରୁ ବାହାରିଥିଲା । ପଶ୍ଚିମଦିଗରେ ୩୦ହାତ ତଳୁ ଗୋଟିଏ ସିଂହାସନାରୂଢ଼ ଦେବୀମୂର୍ତ୍ତି ବାହାରିଥିଲା । ତେଣୁ ମୋର ମନେହୁଏ, ଏହି ପୁଷ୍କରିଣୀର ଚତୁର୍ଦ୍ଦିଗରେ ଅନେକ ପ୍ରାଚୀନକୀର୍ତ୍ତି (ସମ୍ଭବତଃ ବୌଦ୍ଧ କୀର୍ତ୍ତି) ଥିଲା ।

ଦେବୀ ଭୁବନେଶ୍ୱରୀ କୀର୍ତ୍ତି ଓ ବାସ ରାକ୍ଷସଦ୍ୱୟଙ୍କ ସହିତ ଏହି ସ୍ଥାନରେ ଯୁଦ୍ଧ କରିଥିଲେ । ଦେବୀଙ୍କ ପାଦଭାରରେ ଯୁଦ୍ଧସ୍ଥାନର ନିମ୍ନଦେଶ ଜଳାଶୟରେ ପରିଣତ ହୋଇଥିବାରୁ ଏହି ପୁଷ୍କରିଣୀର ନାମ 'ଦେବୀ ପାଦହରା' ହୋଇଅଛି । କିଂବଦନ୍ତୀ ଅନୁସାରେ ପୁଷ୍କରିଣୀମଧ୍ୟସ୍ଥ ଦୀପଦଣ୍ଡୀ ନିକଟରେ କୀର୍ତ୍ତିବାସ ରାକ୍ଷସଦ୍ୱୟ ରସାତଳଗାମୀ ହୋଇଥିଲେ । ଏହାର ସହସ୍ରଲିଙ୍ଗମ୍ ନାମ ଦେଖି ମନେହୁଏ ଏହା ଗଙ୍ଗବଂଶର କୀର୍ତ୍ତି । କାରଣ ଅନୁସ୍ୱାର ଦାକ୍ଷିଣାତ୍ୟର ପ୍ରଭାବସୂଚକ । ଭୁବନେଶ୍ୱରର ପୁଷ୍କରିଣୀମାନଙ୍କ ମଧ୍ୟରେ ଏହା ସୁଦୃଢ଼ ଅବସ୍ଥାରେ ଅଛି । ଭୁବନେଶ୍ୱର ଗଙ୍ଗବଂଶ ସମୟରେ କୀର୍ତ୍ତିବାସ କଟକ ନାମରେ ଅଭିହିତ ହେଲା । ତେଣୁ କୀର୍ତ୍ତିବାସ ବିନାଶନ ସ୍ମୃତି ଏଥିରେ ନିହିତଥିବାରୁ ଏହାକୁ ଗଙ୍ଗବଂଶୀୟ କୀର୍ତ୍ତି ବୋଲି କହିବା ସମୀଚୀନ ।

**ଗୋସାଗର :** ଭୁବନେଶ୍ୱରର ଉତ୍ତର ଦିଗରେ ରଥଦାଣ୍ଡ ପୂର୍ବଦିଗରେ ଗୋସାଗର ନାମକ କ୍ଷୁଦ୍ର ପୁଷ୍କରିଣୀ ଅଛି । ଏହାର ପୂର୍ବଦିଗରେ ଗୋସାଗରେଶ୍ୱରଙ୍କ ମନ୍ଦିର । ଏହି ମନ୍ଦିର ଦକ୍ଷିଣରେ କୂପପରି ଗୋଟିଏ କୁଣ୍ଡ ଅଛି । 'କପିଳସଂହିତା'ରେ ଗୋସାଗରେଶ୍ୱର ଲିଙ୍ଗଙ୍କ ନାମ ନାହିଁ । ତେଣୁ ଏହା ତ୍ରୟୋଦଶ ଶତାବ୍ଦୀର ପରବର୍ତ୍ତୀ

ବୋଲି ଭାବିବା ସୁସଙ୍ଗତ । ଏହି ମନ୍ଦିରର ଗଠନପ୍ରଣାଳୀ ମଧ୍ୟ ଏହି ଯୁକ୍ତିର ପୋଷକତା କରେ । ଦୁର୍ଗାଷ୍ଟମୀଦିନ ଲିଙ୍ଗରାଜମହାପ୍ରଭୁ ଏଠାକୁ ସ୍ନାନାର୍ଥେ ଯାତ୍ରା କରନ୍ତି ।

**ଭୀମକୁଣ୍ଡ-** ଲିଙ୍ଗରାଜଙ୍କ ନୈଋତ କୋଣରେ ଭୀମକୁଣ୍ଡ ଅବସ୍ଥିତ । ଏହା ନିକଟରେ ପାଞ୍ଚଟି ଶିବମନ୍ଦିର ଅଛି । ଏହା ମଧ୍ୟ ପରବର୍ତ୍ତୀକାଳର କୀର୍ତ୍ତି ।

ଏହାବ୍ୟତୀତ ସୁନ୍ଦରପଦାର ସୁନ୍ଦରେଶ୍ୱର ମହାଦେବଙ୍କ ଦକ୍ଷିଣରେ ଥିବା ପୁଷ୍କରିଣୀ ମଧ୍ୟ ଗୋଟିଏ ପବିତ୍ର ତୀର୍ଥ । ସୂକ୍ଷ୍ମେଶ୍ୱର ନିକଟସ୍ଥ କୁଣ୍ଡ ପିଣ୍ଡ ଓ ଶ୍ରାଦ୍ଧାଦି କ୍ରିୟା ନିମିତ୍ତ ପ୍ରସିଦ୍ଧ ।



## ନବମ ଅଧ୍ୟାୟ

## ଭୁବନେଶ୍ୱରର ଯାତ୍ରା ଓ ଉପଯାତ୍ରା

ବର୍ଷକ ମଧ୍ୟରେ ଲିଙ୍ଗରାଜ ମହାପ୍ରଭୁଙ୍କର ଚଉଦଟି ଯାତ୍ରା ଓ ବାରଟି ଉପଯାତ୍ରା ଅନୁଷ୍ଠିତ ହୋଇଥାଏ । ସାଧାରଣତଃ ଯାତ୍ରା ଓ ଉପଯାତ୍ରା ମାନଙ୍କରେ ଲିଙ୍ଗରାଜ ମହାପ୍ରଭୁଙ୍କ ଚଳନ୍ତିପ୍ରତିମା ଚନ୍ଦ୍ରଶେଖରଙ୍କୁ ରଥ ବା ବିମାନ ପ୍ରଭୃତି ଦ୍ୱାରା କୌଣସି ଗୋଟିଏ ମନ୍ଦିରକୁ ନିଆ ହୋଇଥାଏ । ଅଧିକାଂଶ ସମୟରେ ପାର୍ବତୀ, ଦୁର୍ଗା, ବାସୁଦେବ ଓ କପିଳେଶ୍ୱରଙ୍କ ଚଳନ୍ତି ପ୍ରତିମୂର୍ତ୍ତି ମଧ୍ୟ ଲିଙ୍ଗରାଜଙ୍କ ସହଗାମୀ ହୋଇଥାନ୍ତି । ଏମାନଙ୍କ ପ୍ରଧାନ ଉଦ୍ଦେଶ୍ୟ ଯାତ୍ରା ଓ ଉପଯାତ୍ରାଦି ଅନୁଷ୍ଠିତ ହେଉଥିବା ସ୍ଥାନମାନଙ୍କର ମାହାତ୍ମ୍ୟ ବୃଦ୍ଧିକରିବା ଓ ସେମାନଙ୍କ ପ୍ରତି ଲୋକମାନଙ୍କର ଦୃଷ୍ଟି ଆକର୍ଷଣ କରିବା । ଏହି ହେତୁରୁ ମନ୍ଦିରର ସଂଖ୍ୟା ବୃଦ୍ଧି ସଙ୍ଗେ ସଙ୍ଗେ ଯାତ୍ରା ଓ ଉପଯାତ୍ରାଦିର ସଂଖ୍ୟା ବୃଦ୍ଧିଲାଭ କରିଛି । କପିଳସଂହିତା, ଏକାମ୍ର ପୁରାଣ, ସ୍ୱର୍ଣ୍ଣାଦ୍ରିମହୋଦୟ ପ୍ରଭୃତି ଗ୍ରନ୍ଥରେ ଏମାନଙ୍କର ବିଶଦ ବିବରଣ ପ୍ରଦତ୍ତ ହୋଇଅଛି । କିନ୍ତୁ 'କପିଳସଂହିତା'ରେ ପ୍ରଥମାଷ୍ଟମୀ, ମାଘସପ୍ତମୀ, କପିଳଯାତ୍ରା, ଅଶୋକାଷ୍ଟମୀ, ଦମନକଭଞ୍ଜିକା, ପର୍ଶୁରାମାଷ୍ଟମୀ, ଯମଦ୍ୱିତୀୟା ଏହି ସାତୋଟି ଯାତ୍ରା ବିଷୟ ବର୍ଣ୍ଣିତ ହୋଇଅଛି । "ତସ୍ମିନ୍ନେକାମ୍ରକବନେ ସପ୍ତଯାତ୍ରାଃ ପ୍ରକୀର୍ତ୍ତିତାଃ" *(କପିଳସଂହିତା, ୧୯୨)* / ଉପଯାତ୍ରାମାନଙ୍କ ବିଷୟରେ ଏଥିରେ କୌଣସି ଉଲ୍ଲେଖ ନାହିଁ ।

କିନ୍ତୁ ପରବର୍ତ୍ତୀକାଳର ଗ୍ରନ୍ଥ ସ୍ୱର୍ଣ୍ଣାଦିମହୋଦୟରେ ଯାତ୍ରା ଓ ଉପଯାତ୍ରାମାନଙ୍କର ସୁବିସ୍ତୃତ ବିବରଣ ଦିଆଯାଇଛି । ତେଣୁ ବର୍ତ୍ତମାନ ଏହା ନିଃସନ୍ଦେହରେ କୁହାଯାଇ ପାରେ ଯେ କପିଳସଂହିତା ରଚନା ପରେ ଏହି ସାତଟି ଯାତ୍ରା ବ୍ୟତୀତ ଅନ୍ୟ ସମସ୍ତ ଯାତ୍ରା ଓ ଉପଯାତ୍ରାମାନ ଆରମ୍ଭ ହୋଇଥିଲା । ବର୍ତ୍ତମାନ କେତେକ ଯାତ୍ରା ଓ ଉପଯାତ୍ରା ସମ୍ବନ୍ଧରେ ଆଲୋଚନା କରିବା ଆବଶ୍ୟକ ।

**ପ୍ରଥମାଷ୍ଟମୀ** – ଆମ୍ଭମାନଙ୍କର ଉତ୍କଳ ପ୍ରଦେଶରେ ମାର୍ଗଶୀରମାସ ବର୍ଷର ଆଦ୍ୟମାସ ରୂପେ ଗଣନା କରିବା ବହୁକାଳରୁ ପ୍ରଚଳିତ । ସୁତରାଂ ମାର୍ଗଶୀରମାସ କୃଷ୍ଣପକ୍ଷ ଅଷ୍ଟମୀଦିନ ଲିଙ୍ଗରାଜଙ୍କ ପ୍ରଥମଯାତ୍ରା ଅନୁଷ୍ଠିତ ହୁଏ । ଏହାର ନାମ ପ୍ରଥମାଷ୍ଟମୀ ବା ପୋଢୁଆଁଷ୍ଟମୀ । ସମଗ୍ର ଉତ୍କଳରେ

ଏହା ପାଳିତ ହୁଏ । ଏଦିନ ଜ୍ୟେଷ୍ଠସନ୍ତାନମାନେ ନବବସ୍ତ୍ର ପରିଧାନ କରନ୍ତି । ସେଦିନ ଭୁବନେଶ୍ୱରରେ ଗୋଟିଏ କ୍ଷୁଦ୍ର ଯାତ୍ରା ହୁଏ । ପ୍ରଥମାଷ୍ଟମୀର ଉପରବେଳା ଲିଙ୍ଗରାଜମହାପ୍ରଭୁଙ୍କ ଚଳନ୍ତି ପ୍ରତିମା ବିମାନ ଆରୋହଣ କରି ପାପନାଶିନୀ କୁଣ୍ଡନିକଟକୁ ବିଜେ କରନ୍ତି । ସେଠାରେ ଗୋଟିଏ ମଣ୍ଡପରେ ଲିଙ୍ଗରାଜମହାପ୍ରଭୁ ସ୍ନାନ ସମାପନକରି ଉପବେଶନ କରନ୍ତି । ସନ୍ଧ୍ୟାସମୟକୁ ମହାପ୍ରଭୁ ନିଜ ମନ୍ଦିରକୁ ଫେରିଆସନ୍ତି । ଏହିଯାତ୍ରା ପ୍ରାଚୀନଗ୍ରନ୍ଥ କପିଳସଂହିତାରେ ମଧ୍ୟ ଆଦ୍ୟ ଯାତ୍ରା ରୂପେ ବର୍ଣ୍ଣିତ ହୋଇଅଛି । ଏହା ପାପନାଶିନୀ କୁଣ୍ଡର ପ୍ରାଚୀନତା ଓ ମାହାତ୍ମ୍ୟଜ୍ଞାପକ । ପୂର୍ବେ ଏହା ମହାସମାରୋହରେ ସଂପାଦିତ ହେଉଥିଲା । କିନ୍ତୁ ବର୍ତ୍ତମାନ ସେ ପ୍ରାଚୀନ ଗୌରବ ଓ ଆଡ଼ମ୍ବର ନାହିଁ ।

କପିଳସଂହିତାରେ ମାଘସପ୍ତମୀ ଦ୍ୱିତୀୟ ଯାତ୍ରା ବୋଲି ବର୍ଣ୍ଣିତ ହୋଇଛି । କିନ୍ତୁ ସ୍ୱର୍ଣ୍ଣାଦ୍ରିମହୋଦୟରେ ପ୍ରଥମାଷ୍ଟମୀ ଓ ମାଘସପ୍ତମୀ ମଧ୍ୟରେ ପ୍ରାବରଣ ଷଷ୍ଠୀ ବା ଓଢ଼ଣଷଷ୍ଠୀ, ପୁଷ୍ୟାଭିଷେକ ଓ ମକର ସଂକ୍ରାନ୍ତି ଏହି ତିନୋଟି ଯାତ୍ରାର ଉଲ୍ଲେଖ ଅଛି । ଏ ସମସ୍ତ କପିଳ ସଂହିତା ରଚନାର (୧୪ ଶତାବ୍ଦୀର) ପରବର୍ତ୍ତୀ ଯାତ୍ରା । ଏହା ଗଙ୍ଗବଂଶ ଓ ସୂର୍ଯ୍ୟବଂଶ ରାଜାମାନଙ୍କ ଦ୍ୱାରା ପ୍ରଚଳିତ ହୋଇଥିଲା । ଭୁବନେଶ୍ୱରରେ ଶୈବ ଓ ବୈଷ୍ଣବଧର୍ମର ସମନ୍ୱୟ ଯୁଗରେ ଏହି ତିନୋଟି ଯାତ୍ରା ଅନୁଷ୍ଠିତ ହୋଇଥିବା ସୁନିଶ୍ଚିତ । ଅନନ୍ତବାସୁଦେବଙ୍କ ମନ୍ଦିର ନିର୍ମାଣପରେ ଅର୍ଥାତ୍ ୧୨୭୮ ଖ୍ରୀଷ୍ଟାବ୍ଦରେ ଭୁବନେଶ୍ୱରରେ ବୈଷ୍ଣବଧର୍ମ ପ୍ରଚାରିତ ହୋଇଥିଲା । ଅନନ୍ତ ବାସୁଦେବ ଜଗନ୍ନାଥ ଓ ବଳଭଦ୍ରଙ୍କର ପ୍ରତିମୂର୍ତ୍ତିସ୍ୱରୂପ ଏ ସ୍ଥାନରେ ବିଦ୍ୟମାନ ହେଲେ । ଜଗନ୍ନାଥଙ୍କ ଯାତ୍ରାର ଅନୁକରଣରେ ଏହି ତିନୋଟି ଯାତ୍ରା ଅନୁଷ୍ଠିତ ହୋଇଥିବାର ମନେହୁଏ । ଗଙ୍ଗବଂଶରାଜତ୍ୱ ଶେଷରେ ଜଗନ୍ନାଥପୁରୀ ଉତ୍କଳର ଆଦର୍ଶସ୍ଥାନ ରୂପେ ପରିଗଣିତ ହେଲା । ପ୍ରାବରଣୋତ୍ସବରେ ତ୍ରିଭୁବନେଶ୍ୱର ଗ୍ରୀଷ୍ମବସ୍ତ୍ର ତ୍ୟାଗକରି ଶୀତବସ୍ତ୍ର ପରିଧାନ କରନ୍ତି । ପୁରୁଷୋତ୍ତମ କ୍ଷେତ୍ରରେ ଏହାର ଅନୁରୂପ ଅନୁଷ୍ଠାନ ଉକ୍ତ ଦିବସରେ ଅନୁଷ୍ଠିତ ହୋଇ ତ୍ରିମୂର୍ତ୍ତିଙ୍କ ଶରୀର ଶୀତବସ୍ତ୍ରାବୃତ ହୁଏ । ଭୁବନେଶ୍ୱରର ପୁଷ୍ୟାଭିଷେକ ଓ ମକର ସଂକ୍ରାନ୍ତି ପରି ଜଗନ୍ନାଥଙ୍କର ଉକ୍ତ ଦୁଇଟି ଯାତ୍ରା ଅନୁଷ୍ଠିତ ହୁଏ । ଏଗୁଡ଼ିକ କପିଳସଂହିତା ରଚନାର ପରବର୍ତ୍ତୀ ଓ କୌଣସି ପ୍ରକାର ଚତୁର୍ଦ୍ଦଶ ଶତାବ୍ଦୀର ପୂର୍ବବର୍ତ୍ତୀ ହୋଇନପାରେ ।

**ପ୍ରାବରଣ ଷଷ୍ଠୀ ବା ଓଢ଼ଣଷଷ୍ଠୀ** : ମାର୍ଗଶୀର ଶୁକ୍ଳପକ୍ଷ ଷଷ୍ଠୀଦିନ ଏହି ଉତ୍ସବ ସଂପାଦିତ ହୁଏ । ପଞ୍ଚମୀଦିନ ଶୁଦ୍ଧବସ୍ତ୍ର ସଂଗୃହୀତ ହୁଏ । ଷଷ୍ଠୀଦିନ ପ୍ରଭାତ ସମୟରେ ଲିଙ୍ଗରାଜମହାପ୍ରଭୁଙ୍କ ଅଭିଷେକ ଓ ଷୋଡ଼ଶୋପଚାରରେ ପୂଜା ହୁଏ । ଶୀତଋତୁ ଆରମ୍ଭ ହେତୁରୁ ସେଦିନ ଲିଙ୍ଗରାଜଙ୍କର ଶୀତବସ୍ତ୍ର ଲାଗି ହୁଏ । ମନୁଷ୍ୟ ନିଜର ଆରାଧ୍ୟ ଦେବତାଙ୍କୁ ନିଜ ପରିକଳ୍ପନା ଅନୁସାରେ ଶୀତକଷ୍ଟରୁ ରକ୍ଷା କରିବା ନିମିତ୍ତ ତାଙ୍କ ଅଙ୍ଗରେ ବସ୍ତ୍ର ପ୍ରାବରଣ କରିଥାଏ ।

**ପୁଷ୍ୟାଭିଷେକ** : ଏହା ପୌଷପୂର୍ଣ୍ଣିମାଦିନ ଅନୁଷ୍ଠିତ ହୁଏ । ଶୁକ୍ଳଚତୁର୍ଦ୍ଦଶୀ ରାତ୍ରିରେ ତୀର୍ଥମାନଙ୍କରୁ କଳସମାନଙ୍କରେ ଜଳ ଅଣାହୋଇଥାଏ । ପୂର୍ଣ୍ଣିମାର ଅରୁଣୋଦୟ ସମୟରେ ଲିଙ୍ଗରାଜ ମହାପ୍ରଭୁଙ୍କର ଅଭିଷେକ ହୁଏ ।

**ମକର ସଂକ୍ରାନ୍ତି** : ମାଘମାସ ସଂକ୍ରାନ୍ତିଦିନ ଏ ଯାତ୍ରା ଅନୁଷ୍ଠିତ ହୋଇଥାଏ । ଏହାର ଅପରନାମ ଘୃତକମ୍ବଳ ଯାତ୍ରା । ଲିଙ୍ଗରାଜଙ୍କୁ ବିନ୍ଦୁସରୋବର ଜଳରେ ସ୍ନାନକରାଇ ତାଙ୍କୁ କମ୍ବଳ ଲାଗିହୁଏ ଓ ନବାନ୍ନ ଭୋଗ ହୁଏ । ଘୃତକମ୍ବଳ ସମ୍ବନ୍ଧରେ 'ସ୍ୱର୍ଣ୍ଣାଦ୍ରିମହୋଦୟ'ରେ ବିସ୍ତୃତ ବର୍ଣ୍ଣନା ଦିଆଯାଇଛି । ଏଠାରେ ତାହା ଲେଖିବା ଅନାବଶ୍ୟକ । ମକରସଂକ୍ରାନ୍ତି ଦିନ ରଥଗଡ଼ା ପଡ଼ିଆରେ ବେଢ଼ା ମଧ୍ୟରେ ଯାତ୍ରା ହୁଏ । ଏଥିରେ ମକରଚାଉଳ ବିକ୍ରିତ ହୁଏ । 'ସ୍ୱର୍ଣ୍ଣାଦ୍ରିମହୋଦୟ'ରେ ମକରଚାଉଳ ସମ୍ବନ୍ଧରେ କୌଣସି ବର୍ଣ୍ଣନା ନାହିଁ । ଏହା ସମ୍ଭବତଃ ପରବର୍ତ୍ତୀକାଳରେ ଉଦ୍ଭାବିତ ହୋଇଥିଲା । ଏହି ଯାତ୍ରାକୁ ଅନେକ ଉତ୍କଳୀୟ ଆସନ୍ତି ।

**ମାଘସପ୍ତମୀ** : ମାଘ ଶୁକ୍ଳ ସପ୍ତମୀଦିନ ଏହି ଯାତ୍ରା ଅନୁଷ୍ଠିତ ହୁଏ । ଉକ୍ତ ଦିବସରେ ଲିଙ୍ଗରାଜ ମହାପ୍ରଭୁ ଭାସ୍କରେଶ୍ୱରଲିଙ୍ଗ ନିକଟକୁ ଯାତ୍ରା କରନ୍ତି । ଏହା ଗୋଟିଏ ପ୍ରାଚୀନ ଯାତ୍ରା, କାରଣ ଉକ୍ତଦିବସରେ କୋଣାର୍କରେ ମଧ୍ୟ ଗୋଟିଏ ଯାତ୍ରା ହେଉଥିଲା । ଖଣ୍ଡଗିରି ନିକଟରେ ମଧ୍ୟ ଗୋଟିଏ ଯାତ୍ରା ହୁଏ । କପିଳସଂହିତାରେ ଏହା ଦ୍ୱିତୀୟ ଯାତ୍ରା ନାମରେ ଆଖ୍ୟାତ । ବ୍ରହ୍ମପୁରାଣରେ ମଧ୍ୟ ଏ ଯାତ୍ରା ବିଷୟ ବର୍ଣ୍ଣିତ ହୋଇଅଛି । ଏହା ଭାସ୍କରେଶ୍ୱର ଲିଙ୍ଗର ପ୍ରାଚୀନତ୍ୱ ଜ୍ଞାପକ ।

**ଶିବରାତ୍ରି** : 'କପିଳସଂହିତା'ରେ କପିଳଯାତ୍ରା (ଫାଲ୍ଗୁନ ଶୁକ୍ଳ ଚତୁର୍ଦ୍ଦଶୀ) ତୃତୀୟ ସ୍ଥାନ ଅଧିକାର କରିଛି । 'ସ୍ୱର୍ଣ୍ଣାଦ୍ରିମହୋଦୟ' ପ୍ରଭୃତିରେ ଏହା ଉପଯାତ୍ରା ରୂପେ ବର୍ଣ୍ଣିତ ହୋଇଛି । କିନ୍ତୁ ଶିବରାତ୍ରି ଏହା ଫାଲ୍ଗୁନକୃଷ୍ଣ

ଚତୁର୍ଦ୍ଦଶୀଦିନ ଅନୁଷ୍ଠିତ ହୁଏ । ଏହାକୁ ଲୋକେ ଉଜାଗର ଯାତ୍ରା ମଧ୍ୟ କହନ୍ତି । ଢେଙ୍କାନାଳର ପ୍ରସିଦ୍ଧ କପିଳାସ, ଖୋରଧାର ଧବଳେଶ୍ୱର, ପୁରୀର ଲୋକନାଥ ଏବଂ ଉତ୍କଳ ତଥା ଭାରତର ଅନ୍ୟାନ୍ୟ ଶିବକ୍ଷେତ୍ର ମାନଙ୍କରେ ଶିବରାତ୍ରି ଯାତ୍ରା ମହାସମାରୋହରେ ଅନୁଷ୍ଠିତ ହୁଏ । ଭୁବନେଶ୍ୱରରେ ଏହି ଯାତ୍ରା ହୁଏ । ଅନେକସ୍ଥାନରୁ ଲୋକମାନେ ଏହି ଯାତ୍ରା ଉପଲକ୍ଷରେ ଏଠାକୁ ଆସନ୍ତି । କପିଳସଂହିତାରେ ଭୁବନେଶ୍ୱରର ଏହି ପ୍ରସିଦ୍ଧ ଯାତ୍ରାର ବର୍ଣ୍ଣନା ଦିଆହୋଇ ନ ଥିବାର ମନେହୁଏ ଯେ ଏହି ଗ୍ରନ୍ଥ ରଚନାପରେ ଅର୍ଥାତ୍ ତ୍ରୟୋଦଶ ଶତାବ୍ଦୀ ପରେ କୌଣସି ଗଙ୍ଗବଂଶ ରାଜାଙ୍କଦ୍ୱାରା ଏହା ଅନୁଷ୍ଠିତ ହୋଇଥିଲା ।

**ଅଶୋକାଷ୍ଟମୀ** : ଭୁବନେଶ୍ୱରର ଯାତ୍ରାମାନଙ୍କ ମଧ୍ୟରେ ଅଶୋକାଷ୍ଟମୀ ଶ୍ରେଷ୍ଠ । ଏହା ଚୈତ୍ର ଶୁକ୍ଳ ଅଷ୍ଟମୀ ଦିନ ଅନୁଷ୍ଠିତ ହୁଏ । ପୂର୍ବକାଳରୁ ଏହା ସମଗ୍ର ଉତ୍କଳରେ ଖ୍ୟାତିଲାଭ କରିଅଛି । ପୁରୀର ଗୁଣ୍ଡିଚାଯାତ୍ରା ପରି ଲିଙ୍ଗରାଜ ମହାପ୍ରଭୁଙ୍କ ଅଶୋକାଷ୍ଟମୀ ଯାତ୍ରା ଦେଖିବାପାଇଁ ନାନା ସ୍ଥାନରୁ ଯାତ୍ରୀ ଆସନ୍ତି । ଲିଙ୍ଗରାଜମହାପ୍ରଭୁଙ୍କ ଚଳନ୍ତିପ୍ରତିମା ଚନ୍ଦ୍ରଶେଖର, ଦୁର୍ଗା(ରକ୍ତୁଣା) ଓ ଦୋଳଗୋବିନ୍ଦ(ବିଷ୍ଣୁ)ଙ୍କ ସହିତ ରଥରେ ବସନ୍ତି । ରଥଟି ରଥଗଡା ପଡ଼ିଆଠାରୁ ଓ ବଡ଼ ଦେଉଳଠାରୁ ପ୍ରାୟ ଅର୍ଦ୍ଧକୋଶ ଦୂରବର୍ତ୍ତୀ ରାମେଶ୍ୱର ମନ୍ଦିର ନିକଟକୁ ନିଆଯାଏ । ଗୁଣ୍ଡିଚାଦିନ ଉତ୍କଳର ନାନାସ୍ଥାନରେ ରଥଯାତ୍ରା ହୁଏ । କିନ୍ତୁ ଅଶୋକାଷ୍ଟମୀଦିନ ଅନ୍ୟତ୍ର ରଥଯାତ୍ରା ହେବାର ଜଣାଯାଏ ନାହିଁ । ବହୁ ପ୍ରାଚୀନ ବୈଦିକ ଯୁଗରୁ ରଥ ଭାରତୀୟମାନଙ୍କର ଯାନରୂପେ ବ୍ୟବହୃତ ହୋଇ ଆସୁଅଛି । ଏହା ଭାରତୀୟଙ୍କ ନିଜସ୍ୱ । କିନ୍ତୁ ବୈଦିକ ଯୁଗରେ ରଥ ଯୁଦ୍ଧଯାନରୂପେ ବ୍ୟବହୃତ ହେଉଥିଲା । ବୌଦ୍ଧଯୁଗରେ ଦେବ ଉପଭୋଗାର୍ଥେ ରଥର ବ୍ୟବହାର ବହୁଳଭାବରେ ପ୍ରଚଳିତ ହୋଇଥିବାର ଜଣାଯାଏ । ଫାହିଆନ ଖ୍ରୀଷ୍ଟୀୟ ୩ୟ ଶତାବ୍ଦୀର ଶେଷଭାଗରେ ପାଟଳୀପୁତ୍ରରେ ରଥଯାତ୍ରାର ବିଶଦ ବର୍ଣ୍ଣନା ତାଙ୍କ ରଚିତ ଭାରତ ବିବରଣରେ ଦେଇଛନ୍ତି ।

ଅଶୋକଙ୍କ ଅନୁଶାସନମାନଙ୍କରେ ରଥଯାତ୍ରା ଓ ବିମାନ ଯାତ୍ରା ବିଷୟ ବର୍ଣ୍ଣିତ ହୋଇଛି । ଜୈନମାନଙ୍କ ମଧ୍ୟରେ ରଥଯାତ୍ରା ମଧ୍ୟ ପ୍ରଚଳିତ

ଥିଲା । ଏହାକୁ "Paryusana Parva" କୁହାଯାଏ । ସାଞ୍ଚିସ୍ତୂପରେ ରଥର ଦୃଶ୍ୟ ଖୋଦିତ ହୋଇଅଛି । ବୃନ୍ଦାବନରେ ଶ୍ରୀକୃଷ୍ଣଙ୍କର ରଥଯାତ୍ରା ହୁଏ । ସିଂହଳଦ୍ୱୀପରେ ବୁଦ୍ଧଦେବଙ୍କର ଦନ୍ତ ରଥଦ୍ୱାରା ନିଆ ହେଉଥିଲା । ଚୀନ ପରିବ୍ରାଜକ ଫାହିଆନ ଖୋଟାନଠାରେ ରଥଯାତ୍ରା ଦେଖିବାପାଇଁ ୩ ମାସ କାଳ କଟାଇଥିଲେ । ବୌଦ୍ଧସାହିତ୍ୟରେ ରଥଯାତ୍ରାର ଭୂରି ଭୂରି ପ୍ରମାଣ ମିଳେ । ଏକ ସମୟରେ ଏସିଆଖଣ୍ଡର ଅଧିକାଂଶ ସ୍ଥାନରେ ବୌଦ୍ଧମାନଙ୍କ ମଧ୍ୟରେ ରଥଯାତ୍ରା ପ୍ରଚଳିତ ଥିଲା । ରଥଯାତ୍ରା ବୌଦ୍ଧମାନଙ୍କର ଗୋଟିଏ ପ୍ରଧାନ ଉତ୍ସବ ଥିବା ନିଃସନ୍ଦେହରେ ପ୍ରମାଣିତ ହୋଇପାରେ । ଭାରତର ଅସଂଖ୍ୟ ବୌଦ୍ଧରଥଯାତ୍ରା ବିଷୟ ଚିନ୍ତା କଲାବେଳେ ସ୍ୱତଃ ମନରେ ଏ ପ୍ରଶ୍ନ ଉଠେ; ଭୁବନେଶ୍ୱରର ରଥଯାତ୍ରା କଣ ଗୋଟିଏ ବୌଦ୍ଧ ଉତ୍ସବ ହୋଇପାରେ । ଆଜିପର୍ଯ୍ୟନ୍ତ ଏ ଯାତ୍ରା ସମ୍ବନ୍ଧରେ ସମ୍ୟକ୍ ଆଲୋଚନା ହୋଇନାହିଁ । କୋଣାର୍କ ଓ ପୁରୀର ରଥଯାତ୍ରା ବୌଦ୍ଧରଥଯାତ୍ରା ବୋଲି କହିଲେ ଅସଙ୍ଗତ ହେବନାହିଁ । କୋଣାର୍କରେ ହୁଏନ୍‌ସାଙ୍କ ସମୟରେ ରଥଯାତ୍ରା ପ୍ରଚଳିତ ଥିଲା । ଚୋଡ଼ଗଙ୍ଗଦେବଙ୍କ ପୂର୍ବରୁ ପୁରୀରେ ରଥଯାତ୍ରା ହେଉଥିଲା । ଏହା ଗୋଟିଏ ବୌଦ୍ଧ ଅନୁଷ୍ଠାନ ବୋଲି କହିବା ସମୀଚୀନ । ଚୋଡ଼ଗଙ୍ଗଦେବଙ୍କ ପାଟମହିଷୀ ଗୁଣ୍ଡିଚୋଡ଼ିଙ୍କ ନାମାନୁସାରେ ଏହାର ନାମ ଗୁଣ୍ଡିଚାଯାତ୍ରା ହୋଇଥିଲା ।

ବ୍ରହ୍ମପୁରାଣ ରଚନା ସମୟରେ ମଧ୍ୟ ଭୁବନେଶ୍ୱରରେ ରଥଯାତ୍ରା ହେଉଥିଲା । ନିମ୍ନଲିଖିତ କାରଣମାନଙ୍କ ଯୋଗୁ ଭୁବନେଶ୍ୱରର ରଥଯାତ୍ରା ବୌଦ୍ଧଉତ୍ସବ ବୋଲି ମନେହୁଏ । ପ୍ରଥମ କାରଣ ତୋଷାଳୀ ଯେ ଭୁବନେଶ୍ୱରର ନିକଟବର୍ତ୍ତୀ ଥିଲା ଏହା ସର୍ବବାଦୀସମ୍ମତ । ଏ ବିଷୟରେ ଅକାଟ୍ୟ ପ୍ରମାଣ 'ଧଉଳୀର ଇତିହାସ'ରେ ଦିଆଯାଇଛି । କଳିଙ୍ଗ ସାମ୍ରାଜ୍ୟର ରାଜଧାନୀ ତୋଷାଳୀ ଅଶୋକଙ୍କ ପରେ ବହୁଶତାବ୍ଦୀ ପର୍ଯ୍ୟନ୍ତ ଗୋଟିଏ ପ୍ରଧାନ ବୌଦ୍ଧ କେନ୍ଦ୍ରଥିଲା । ସମଗ୍ର ବୌଦ୍ଧ ଜଗତରେ ରଥଯାତ୍ରାର ବହୁଳ ପ୍ରଚଳନଥିବାରୁ ମନେହୁଏ ଯେ ଭୁବନେଶ୍ୱର ପରି ଭାରତବିଖ୍ୟାତ ବୌଦ୍ଧ କେନ୍ଦ୍ରରେ ରଥଯାତ୍ରା ଅନୁଷ୍ଠିତ ହେଉଥିବ ।

ଦ୍ୱିତୀୟତଃ ଏହି ଯାତ୍ରାର ନାମ ଅଶୋକାଷ୍ଟମୀ । ଫାହିଆନ ବର୍ଣ୍ଣିତ ବିବରଣରୁ ଜଣାଯାଏ ଯେ ଦ୍ୱିତୀୟ ମାସର ଅଷ୍ଟମୀ ଦିନ ପାଟଳୀପୁତ୍ରରେ ରଥଯାତ୍ରା ହେଉଥିଲା । ଭାରତରେ ନାନା ପ୍ରକାର ବର୍ଷ ଗଣନା ହୁଏ ।

ଚାନ୍ଦ୍ରମାସ, ସୌରମାସ ବ୍ୟତୀତ ଉତ୍କଳରେ ସୁନିଆ ଓ ମାର୍ଗଶିର ମାସଠାରୁ ମଧ୍ୟ ବର୍ଷ ଆରମ୍ଭ ହେବାର ଜଣାଯାଏ । ସେହିପରି ବୌଦ୍ଧମାନଙ୍କ ବର୍ଷ କେଉଁମାସରୁ ଗଣା ହେଉଥିଲା ତାହା କହିବା ସହଜ ନୁହେଁ । ତଥାପି ପାଟଳୀପୁତ୍ର ଓ ଭୁବନେଶ୍ୱରରେ ଗୋଟିଏ ମାସର ଅଷ୍ଟମୀରେ ରଥଯାତ୍ରା ହେଉଥିବାର ମନେହୁଏ । ଏମାନଙ୍କ ମଧ୍ୟରେ ବିଶେଷ ସମ୍ପର୍କ ବିଦ୍ୟମାନ । ଅଷ୍ଟମୀ ସହିତ ଅଶୋକଙ୍କନାମ ମଧ୍ୟ ସଂଯୁକ୍ତ । ସଂପୃକ୍ତ ଅଶୋକବୃକ୍ଷ, ଅଶୋକକଳିକାବୃତ୍ତାନ୍ତ ଓ ରାବଣଅପହୃତା ସୀତାଙ୍କ ଲଙ୍କାପୁର ନିବାସ ପରବର୍ତ୍ତୀକାଳର ବୋଲି ମନେହୁଏ । ସମ୍ଭବତଃ ଏହା ବୌଦ୍ଧ ପ୍ରଭାବ ପୁନଶ୍ଚ ଅଶୋକାଷ୍ଟମୀ ସହିତ ସଂପୃକ୍ତ କୁଣ୍ଡର ନାମ ଅଶୋକକୁଣ୍ଡ ବା ଅଶୋକଝର । ଏଠାରେ ମଧ୍ୟ ଅଶୋକଙ୍କର ଗୋଟିଏ ପଦ୍ମବନ୍ଧ ବା ଚିତ୍ରଘଣ୍ଟିଶିଳା (Bell - capital) ଅଛି । ଭାସ୍କରେଶ୍ୱର ଶିବଲିଙ୍ଗ ଅଶୋକସ୍ତମ୍ଭ ବୋଲି ପ୍ରମାଣିତ ହୋଇଅଛି । 'ସଂତରଣସି' ବା Public road ଅର୍ଥାତ୍ ଜନସାଧାରଣଙ୍କ ଯାତାୟତ ପଥରେ ଅଶୋକସ୍ତମ୍ଭ ପ୍ରୋଥିତ ହେଉଥିଲା । ତେଣୁ ଏହି ଅଞ୍ଚଳରେ ଅଶୋକଙ୍କ ସମୟରେ ରଥଯାତ୍ରା ହେଉଥିବାର ମନେହୁଏ । ଗୋସାଗରେଶ୍ୱର ନିକଟରେ ଅସୁରକିଆରୀ ନାମକ ଗୋଟିଏ ଜଳାର୍ଦ୍ର ସ୍ଥାନ ଅଛି । ଅସୁର ନାମ ବୌଦ୍ଧବାଚକ, କାରଣ ଏକାମ୍ରପୁରାଣରେ ପ୍ରଦତ୍ତ ଦେବାସୁର ସଂଗ୍ରାମ ବ୍ରାହ୍ମଣ ଓ ବୌଦ୍ଧମାନଙ୍କ ସଂଗ୍ରାମ ବୋଲି ପ୍ରମାଣିତ ହୋଇଅଛି ।

ତୃତୀୟତଃ ଫାହିଆନ୍‌ବର୍ଣ୍ଣିତ ପାଟଳୀପୁତ୍ରର ରଥ ଆକୃତି ସହିତ ଭୁବନେଶ୍ୱର ରଥର ଅନେକ ସାମଞ୍ଜସ୍ୟ ବିଦ୍ୟମାନ । ପାପନାଶିନୀ ନିକଟସ୍ଥ ଯୋଗୀମଠର ଯୋଗୀମାନଙ୍କର (ହିନ୍ଦୁଧର୍ମାନ୍ତର୍ଭୁକ୍ତ ବୌଦ୍ଧ ସମ୍ପ୍ରଦାୟ) ରଥଯାତ୍ରାରେ ସହଯୋଗର ବିଶେଷ ଉଦ୍ଦେଶ୍ୟ ଥିଲା ପରି ଜଣାଯାଏ । ଏ ସମସ୍ତ ବିଷୟ ଆଲୋଚନା କରି ପୁରୀର ରଥଯାତ୍ରା ପରି ଭୁବନେଶ୍ୱର ରଥଯାତ୍ରା ଗୋଟିଏ ବୌଦ୍ଧଉତ୍ସବ ଥିବାର ଧାରଣା ଜାତ ହୋଇଛି । ହିନ୍ଦୁଧର୍ମର ପୁନରୁତ୍ଥାନ ଯୁଗରେ ଉକ୍ତ ବୌଦ୍ଧ ଅନୁଷ୍ଠାନ ହିନ୍ଦୁମାନଙ୍କର ପ୍ରଧାନ ଉତ୍ସବରୂପେ ପରିଣତ ହେଲା । ହିନ୍ଦୁ ଅନୁଷ୍ଠାନ ହେବାପରେ ଏଥିରେ ନାନାବିଧ ସଂସ୍କାର ହୋଇଥିବା ଅବଶ୍ୟମ୍ଭାବୀ । ରାମେଶ୍ୱର ମନ୍ଦିର ନିର୍ମାଣ ହେବାପରେ ଏହା ଆଧୁନିକ ଆକାର ଧାରଣ କରିଥିବା ସମ୍ଭବପର । ବୌଦ୍ଧପ୍ରଥାଟି ବ୍ରାହ୍ମଣ୍ୟ ଆବରଣରେ ଆଚ୍ଛାଦିତ ହେବାରୁ ବୌଦ୍ଧମାନେ

କାଳକ୍ରମେ ନିଜଧର୍ମର ମାହାତ୍ମ୍ୟ ବିସ୍ମରଣକରି ବିଶାଳ ଉଦାରହିନ୍ଦୁଧର୍ମରେ ନିଜର ଅସ୍ତିତ୍ୱ ମିଶାଇ ଦେଲେ । ବର୍ତ୍ତମାନ ଭୁବନେଶ୍ୱର ରଥଯାତ୍ରାଟି ସମ୍ପୂର୍ଣ୍ଣ ବ୍ରାହ୍ମଣ୍ୟ ଅନୁଷ୍ଠାନ ।

ଚତୁର୍ଥତଃ ଏହି ରଥର ନାମ ଦେବଦଳନ । ଶିବ ଏଥିରେ ଶତ୍ରୁଜୟ କରିବାକୁ ଯା'ନ୍ତି । ବୌଦ୍ଧରଥପରି ଏହି ରଥର ଚତୁର୍ଦ୍ଦିଗର ଖୁଣ୍ଟମାନଙ୍କରେ ଦେବତାମାନଙ୍କର କାଷ୍ଠନିର୍ମିତ ମୂର୍ତ୍ତି ସ୍ଥାପିତ ହୁଏ । ରଥର ସମ୍ମୁଖରେ ଚାରୋଟି ଅଶ୍ୱ । ଚତୁର୍ବେଦ ସ୍ମାରକ ସ୍ୱରୂପ ବିଦ୍ୟମାନ । ସ୍ୱୟଂ ବ୍ରହ୍ମା ଏହାର ସାରଥୀକାର୍ଯ୍ୟ କରନ୍ତି । ବ୍ରହ୍ମାଙ୍କର କାଷ୍ଠନିର୍ମିତ ମୂର୍ତ୍ତି ଲିଙ୍ଗରାଜଙ୍କ କିଞ୍ଚିତ୍ ଦୂରରେ ସ୍ଥାପିତ ହୁଏ ।

## ଭୁବନେଶ୍ୱର ଓ ପୁରୀର ଯାତ୍ରା

**ଭୁବନେଶ୍ୱର ଯାତ୍ରା :**

୧. ଅକ୍ଷୟ ତୃତୀୟା - ବୈଶାଖ ଶୁକ୍ଳ ତୃତୀୟା
୨. ପର୍ଶୁରାମାଷ୍ଟମୀ - ଆଷାଢଶୁକ୍ଳାଷ୍ଟମୀ
୩. ଶୟନ ଚତୁର୍ଦ୍ଦଶୀ - ଆଷାଢ ଶୁକ୍ଳଚତୁର୍ଦ୍ଦଶୀ
୪. ପବିତ୍ରାରୋପଣ - ଶ୍ରାବଣ ଶୁକ୍ଳ ଚତୁର୍ଦ୍ଦଶୀ
୫. ଯମଦ୍ୱିତୀୟା - କାର୍ତ୍ତିକ ଶୁକ୍ଳ ଦ୍ୱିତୀୟା
୬. ଶିବ ଉତ୍ଥାପନ - କାର୍ତ୍ତିକ ଶୁକ୍ଳ ଚତୁର୍ଦ୍ଦଶୀ
୭. ପ୍ରଥମାଷ୍ଟମୀ - ମାର୍ଗଶିର କୃଷ୍ଣ ଅଷ୍ଟମୀ
୮. ପ୍ରାବରଣଷଷ୍ଠୀ - ମାର୍ଗଶିର ଶୁକ୍ଳ ଷଷ୍ଠୀ
୯. ପୁଷ୍ୟାଭିଷେକ - ପୌଷ ପୂର୍ଣ୍ଣିମା
୧୦. ମକର ସଂକ୍ରାନ୍ତି
୧୧. ମାଘ ସପ୍ତମୀ - ମାଘ ଶୁକ୍ଳ ସପ୍ତମୀ
୧୨. ଶିବରାତ୍ରି - ଫାଲ୍‌ଗୁନ କୃଷ୍ଣ ଚତୁର୍ଦ୍ଦଶୀ
୧୩. ଅଶୋକାଷ୍ଟମୀ - ଚୈତ୍ର ଶୁକ୍ଳ ଅଷ୍ଟମୀ
୧୪. ଦମନକ ଚତୁର୍ଦ୍ଦଶୀ- ଚୈତ୍ର ଶୁକ୍ଳ ଚତୁର୍ଦ୍ଦଶୀ ।

**ପୁରୀର ଯାତ୍ରା**

୧. ଅକ୍ଷୟ ତୃତୀୟା - ବୈଶାଖ ଶୁକ୍ଳ ତୃତୀୟା
୨. ସ୍ନାନ ଯାତ୍ରା - ଜ୍ୟେଷ୍ଠ ପୂର୍ଣ୍ଣିମା

| | | | |
|---|---|---|---|
| ୩. | ଶ୍ରୀ ଗୁଣ୍ଡିଚା | - | ଆଷାଢ ଶୁକ୍ଳ ଦ୍ୱିତୀୟା |
| ୪. | ଶୟନ ଯାତ୍ରା | - | ଆଷାଢ ଶୁକ୍ଳ ଏକାଦଶୀ |
| ୫. | କର୍କଟ ସଂକ୍ରାନ୍ତି | | |
| ୬. | ପାର୍ଶ୍ୱ ପରିବର୍ତ୍ତନ | - | ଭାଦ୍ର ଶୁକ୍ଳ ଏକାଦଶୀ |
| ୭. | ଦେବୋତ୍ଥାପନ | - | କାର୍ତ୍ତିକ ଶୁକ୍ଳ ଏକାଦଶୀ |
| ୮. | ପ୍ରାବରଣ ଷଷ୍ଠୀ | - | ମାର୍ଗଶୀର ଶୁକ୍ଳ ଷଷ୍ଠୀ |
| ୯. | ପୁଷ୍ୟାଭିଷେକ | - | ପୌଷ ପୂର୍ଣ୍ଣିମା |
| ୧୦. | ମକର ସଂକ୍ରାନ୍ତି | | |
| ୧୧. | ଦୋଳଯାତ୍ରା | - | ଫାଲ୍‌ଗୁନ ଶୁକ୍ଳ ପୂର୍ଣ୍ଣିମା |
| ୧୨. | ଦମନକ ଯାତ୍ରା | - | ଚୈତ୍ର ଶୁକ୍ଳ ଚତୁର୍ଦ୍ଦଶୀ । |



## ଦଶମ ଅଧ୍ୟାୟ

# ଦୁର୍ଦ୍ଦିନରେ ଭୁବନେଶ୍ୱର

୧୫୬୮ ଖ୍ରୀଷ୍ଟାବ୍ଦରେ ଉତ୍କଳର ଶେଷ ସ୍ୱାଧୀନ ନରପତି ମୁକୁନ୍ଦଦେବ ଯୁଦ୍ଧରେ ପ୍ରାଣତ୍ୟାଗ କରିବାରୁ ଉତ୍କଳର ସ୍ୱାଧୀନତାରବି ଚିରକାଳ ନିମିତ୍ତ ଅସ୍ତମିତ ହେଲେ । ଉତ୍କଳର ପ୍ରତାପଶାଳୀ ଗଜପତି ରାଜାମାନେ ପ୍ରାୟ ୩୫୦ବର୍ଷ ପର୍ଯ୍ୟନ୍ତ ସମଗ୍ର ଭାରତବର୍ଷରେ ପ୍ରତିଷ୍ଠିତ ପ୍ରବଳ ମୁସଲମାନଶକ୍ତିର ଗତିରୋଧ କରିଥିଲେ ଓ ଅନେକ ସମୟରେ ମୁସଲମାନ ଶକ୍ତିକୁ ପଦଦଳିତ କରିଥିଲେ । କିନ୍ତୁ ପ୍ରତାପରୁଦ୍ରଦେବଙ୍କ ରାଜତ୍ୱ ଆରମ୍ଭସମୟରୁ ଉତ୍କଳରେ ଗୋଟିଏ ନବଯୁଗର ସଞ୍ଚାର ହେଲା । ତାଙ୍କ ରାଜତ୍ୱର ୧୪୯୯ ଖ୍ରୀଷ୍ଟାବ୍ଦରେ ଓ ୧୫୦୯ରେ ବଙ୍ଗର ମୁସଲମାନରାଜା 'ହୁସେନ ସାହା' ଦୁଇଥର ଉତ୍କଳ ଆକ୍ରମଣ କରିଥିଲେ । ମାଦଳା ପାଞ୍ଜିରେ ନବାବ ସେନାପତି ଇସ୍‌ମାଇଲ ଗାଜୀ ମନ୍ଦିର ଧ୍ୱଂସ କରିବା କଥା ବର୍ଣ୍ଣିତ ହୋଇଅଛି । 'ଚୈତନ୍ୟ ଭାଗବତ'ରେ ଉଲ୍ଲେଖ ଅଛି –

'ଯେ ହୁସେନ ସାହା ସର୍ବ ଉଡ଼ିଷ୍ୟାର ଦେଶେ
ଦେବମୂର୍ତ୍ତି ଭାଙ୍ଗିଲେକ ଦେଉଳ ବିଶେଷେ ।'

ଭୁବନେଶ୍ୱରକୁ ହୁସେନସାହା ଆସିଥିଲେ କି ନାହିଁ ତାହା କହିବା ସହଜ ନୁହେଁ । ତେବେ ଏହି ସମୟରେ ଉତ୍କଳୀୟ ମନ୍ଦିର ପ୍ରଥମେ ନୃଶଂସ ଯବନମାନଙ୍କର ସର୍ବବିଧ୍ୱଂସିନୀ ଶକ୍ତି ଅନୁଭବ କଲେ । କିନ୍ତୁ ଉତ୍କଳର ସ୍ୱାଧୀନତା ଲୋପପରେ ଉତ୍କଳର ମନ୍ଦିରମାନଙ୍କର ଭାଗ୍ୟବିପର୍ଯ୍ୟୟ ଆରମ୍ଭ ହେଲା ।

ନରାଧମ ନୃଶଂସ କାଳସ୍ୱରୂପ କଳାପାହାଡ଼ ଉତ୍କଳର ପ୍ରତ୍ୟେକ ହିନ୍ଦୁମନ୍ଦିର ଧ୍ୱଂସ କରିବାକୁ ଚେଷ୍ଟା କରିଥିଲା । ୧୫୬୮ରେ କଳାପାହାଡ଼ ଉତ୍କଳ ଆକ୍ରମଣ କରିଥିଲା । ସେ କଟକଠାରୁ ଭୁବନେଶ୍ୱରକୁ ଆସିଥିଲା । କଳାପାହାଡ଼ ଆଗମନ ବାର୍ତ୍ତା ଶ୍ରବଣକରି ପଣ୍ଡାମାନେ ଅତ୍ୟନ୍ତ ଭୟବିହ୍ୱଳ ହୋଇ ମନ୍ଦିର ଓ ଜଗମୋହନ ଦେହରେ ଧାନ ଭରତି କରିଦେଲେ । ପୂର୍ବେ ନାଟମନ୍ଦିରରେ ଗୋଟିଏ କାଠର ଛାତ ଥିଲା । ପ୍ରବାଦରୁ ଜଣାଯାଏ

ଯେ ଏହା ଅତିରମଣୀୟ କାରୁକଳାଶୋଭିତ ହୋଇ ଦର୍ଶକମାନଙ୍କ ମନରେ ବିସ୍ମୟ ଜାତ କରୁଥିଲା । ନୃଶଂସ ରାକ୍ଷସ କଳାପାହାଡ଼ ଏହାକୁ ପୋଡ଼ି ଦେଲା । ଘଣ୍ଟାକ ମଧ୍ୟରେ ଶତଶତ ଶିଳ୍ପୀଙ୍କର କମନୀୟ ଶିଳ୍ପ କାରୁକାର୍ଯ୍ୟ ଚିରକାଳ ପାଇଁ ଧ୍ୱଂସ ପାଇଲା । ଶତ ଶତ ସହସ୍ର ମୁଦ୍ରା ବ୍ୟର୍ଥ ହୋଇଗଲା । ମନ୍ଦିର ଶ୍ରୀହୀନ ହୋଇଗଲା । ମହମ୍ମଦ ଗଜନୀଙ୍କ ସୋମନାଥମନ୍ଦିର ଆକ୍ରମଣପରି ଏହା ଅତୀବ ଭୟାବହ । କ୍ଷଣକ ମଧ୍ୟରେ ବିମାନ ଓ ଜଗମୋହନ ମଧ୍ୟରେ ଥିବା ଧାନ ପୋଡ଼ିଗଲା ଓ ଏମାନଙ୍କ ଭିତର ପାଖ ଫାଟିଗଲା । ଲେଖକ ନିଜେ ୧୯୨୯ ସାଲର ମରାମତି ସମୟରେ ମନ୍ଦିର ଭିତରେ ଗର୍ଭମୁଦ୍ରାଙ୍କ ପର୍ଯ୍ୟନ୍ତ ଦେଖିଛି । ଏହାକୁ ଦେଖିଲେ ସ୍ପଷ୍ଟ ଜଣାଯାଏ ଯେ, ଅଗ୍ନିଦ୍ୱାରା ମନ୍ଦିର ପଥରଗୁଡ଼ିକ ଫାଟି ଯାଇଥିଲା । ଲକ୍ଷ୍ମୀନାରାୟଣମୂର୍ତ୍ତି ପଣ୍ଡାମାନେ ଭୋଗମଣ୍ଡପ ଦେହରେ ଲୁଚାଇ ଦେଇଥିଲେ । ଏହାଛଡ଼ା କଳାପାହାଡ଼ ଅସଂଖ୍ୟ ପଠାଣସୈନ୍ୟଙ୍କୁ ପ୍ରତ୍ୟେକ ମୂର୍ତ୍ତିର ମୁଖ ଭାଙ୍ଗି ବିକୃତ କରିଦେବାକୁ ଆଦେଶ ଦେଇଥିଲା । ଲୌକିକ ପ୍ରବାଦ ଅନୁସାରେ କଳାପାହାଡ଼ ଏପରି ଏକପ୍ରକାର ବାଦ୍ୟ ବଜାଇଥିଲା ଯେ ତାହାର ଶବ୍ଦ ଶ୍ରବଣ ମାତ୍ରକେ ପ୍ରତ୍ୟେକ ମୂର୍ତ୍ତିର ଅଙ୍ଗପ୍ରତ୍ୟଙ୍ଗ ସ୍ଥାନଚ୍ୟୁତ ହୋଇଥିଲା । ମୁସଲମାନଙ୍କ ଯୋଗୁ ଭାରତର ଶତଶତ ପ୍ରାଚୀନ କୀର୍ତ୍ତି ଧ୍ୱଂସପାଇଛି । କୋଟି କୋଟି ମୁଦ୍ରା ବିନିମୟରେ ନିର୍ମିତ ବିଜୟନଗର ଅସ୍ୱପ୍ନକଳ୍ପିତକୀର୍ତ୍ତିମାନଙ୍କୁ ପଞ୍ଚବାହମନୀ ରାଜ୍ୟର ରାଜାମାନେ କ୍ରମାନ୍ୱୟରେର ଛଅମାସକାଳ ନଷ୍ଟ କରିଥିଲେ । ସ୍ୱାଧୀନ ଉତ୍କଳରେ ଧ୍ୱଂସର ପ୍ରଥମ ତରଙ୍ଗ ଖେଳିଗଲା । ଓଡ଼ିଆଙ୍କର ଶତଶତ ଯୁଗର ସ୍ୱାଧୀନତା ନିର୍ମମ ପଠାଣଶକ୍ତି ଦ୍ୱାରା ଅପହୃତ ହେଲା । ଓଡ଼ିଆଙ୍କର ପ୍ରିୟାତିପ୍ରିୟ ଜନ୍ମଭୂମିର ଅସଂଖ୍ୟ କୀର୍ତ୍ତି କଳାପାହାଡ଼ ଓ ତାହାର ବିରାଟ ବାହିନୀ ଦ୍ୱାରା ନଷ୍ଟ ହୋଇଥିଲା । ୧୮ ଦିନ ପର୍ଯ୍ୟନ୍ତ ଲିଙ୍ଗରାଜ ମନ୍ଦିରରେ ସେବା ପୂଜା ହୋଇ ନ ଥିଲା । ଲୋକମାନେ ଘରଦ୍ୱାର ଛାଡ଼ି ଦୁର୍ଭେଦ୍ୟ ଅରଣ୍ୟାନୀ ଓ ପାହାଡ଼ମଧ୍ୟକୁ ପଳାଇଗଲେ । ଧ୍ୱଂସଲୀଳା ଅଭିନୀତ ହେଲା । ଅସଂଖ୍ୟ ପାଷାଣମୂର୍ତ୍ତି ଉତ୍କଳର ଦୁଃଖଦୁର୍ଦ୍ଦଶା ଦେଖି କ୍ରନ୍ଦନ କରିବାକୁ ଲାଗିଲେ । ସେହିଦିନୁ ଭୁବନେଶ୍ୱରର ମୂର୍ତ୍ତିମାନଙ୍କର ମୁଖରେ ହସ ନାହିଁ । ଏଗୁଡ଼ିକ ବିଷାଦକାଳିମାଛନ୍ନ ।

ସୁପ୍ରସିଦ୍ଧ ଐତିହାସିକ ଯଦୁନାଥ ସରକାରଙ୍କ ମତରେ ଭୁବନେଶ୍ୱରର ମନ୍ଦିରାଦି ବର୍ଣ୍ଣନା ଓ ଶିବମୂର୍ତ୍ତିର ଅବମାନନା ସମ୍ବନ୍ଧେ ମୁସଲମାନ ଇତିହାସରେ କୌଣସିଠାରେ ଉଲ୍ଲେଖ ନାହିଁ, ଯଦ୍ୟପି ମୁସଲମାନଙ୍କ ଏଲୋରାଦର୍ଶନ ସମ୍ବନ୍ଧରେ ବର୍ଣ୍ଣନା ଦିଆଯାଇଛି । କିନ୍ତୁ ସେମାନେ ଭୁବନେଶ୍ୱର ଆକ୍ରମଣ କରିଥିଲେ । ଏ ବିଷୟରେ ବଙ୍ଗଳାରେ ଲିଖିତ 'ଚୈତନ୍ୟ ଭାଗବତ'ରେ 'ଉଡ୍ର ଦେଶ'ରେ କୋଟି କୋଟି ପ୍ରତିମା ଓ ପ୍ରାସାଦ ଭାଙ୍ଗିବା କଥା ଉଲ୍ଲିଖିତ ହୋଇଛି ।

ମୁସଲମାନର ବିଶ୍ୱାସ ଅନୁସାରେ ପ୍ରତିମୂର୍ତ୍ତିମାନଙ୍କର ମୁଖ ନଷ୍ଟ କରିଦେଲେ ସେମାନଙ୍କର ଜୀବନୀଶକ୍ତି ନଷ୍ଟ ହୋଇଯାଏ । ସେମାନଙ୍କର ଧର୍ମଶାସ୍ତ୍ରରେ ଅଛି - ପ୍ରତିମୂର୍ତ୍ତି ସକଳରେ ଜୀବନୀ ଶକ୍ତି ପ୍ରବେଶ କରେ । କିନ୍ତୁ ସେମାନେ ମନୁଷ୍ୟ ହୋଇନଥିବାର ସୃଷ୍ଟିର ଶେଷ ବିଚାର (କୟାମତ) **last day of judgement)** ଦିନ ଭଗବାନ ସେମାନଙ୍କର ବିଚାର କରିପାରନ୍ତି ନାହିଁ । ପ୍ରତିମୂର୍ତ୍ତିମାନଙ୍କର ଜୀବନ ଶରୀରାବଦ୍ଧ ରହି କଷ୍ଟ ଭୋଗ କରିବାରୁ ସେମାନେ ସେମାନଙ୍କର ନିର୍ମାତାମାନଙ୍କୁ ଅଭିଶାପ ଦିଅନ୍ତି । ତେଣୁ ପ୍ରତିମୂର୍ତ୍ତିର ମୁଖ ଭାଙ୍ଗିଦେଲେ ତନ୍ମଧ୍ୟରେ ଆବଦ୍ଧ ଜୀବନୀଶକ୍ତି ଚାଲିଯାଏ ଓ ମୁସଲମାନ ଧର୍ମଅନୁସାରେ ଏହା ଗୋଟିଏ ଧର୍ମକାର୍ଯ୍ୟ । କାରଣ ସେମାନେ ଏହାଦ୍ୱାରା ଅନେକ ପ୍ରାଣୀଙ୍କୁ ମୁକ୍ତି ଦିଅନ୍ତି । ଭୁବନେଶ୍ୱରର ପ୍ରାୟ ସମୁଦାୟ ମୂର୍ତ୍ତିର ମୁଖ ବିକୃତ ହୋଇଯାଇଛି । ଏଗୁଡ଼ିକ ମୁସଲମାନ ଅତ୍ୟାଚାରର ଫଳ, ସେଥିରେ କୌଣସି ସନ୍ଦେହ ନାହିଁ । ମୂର୍ତ୍ତିମାନଙ୍କର ସର୍ବାଙ୍ଗ ସୁନ୍ଦରଥିଲେ ଓ ଅକ୍ଷୁଣ୍ଣ ଥିଲେ ମଧ୍ୟ ମୁଖଟି ନଷ୍ଟ ହୋଇଥିବା ଅତୀବ ଆଶ୍ଚର୍ଯ୍ୟର ବିଷୟ । ହିନ୍ଦୁଧର୍ମ ଅନୁସାରେ ମୂର୍ତ୍ତିଟି କୌଣସି ପ୍ରକାର କ୍ଷୁଣ୍ଣ ହୋଇଗଲେ ତାହା ପୂଜନୀୟ ନୁହେଁ । ତେଣୁ ସେମାନେ ସେଗୁଡ଼ିକ ପୂଜା କରନ୍ତି ନାହିଁ । କାରଣ ମୂର୍ତ୍ତିଦେହରେ ଜୀବନ୍ୟାସ ହୋଇପାରିବ ନାହିଁ । ମୂର୍ତ୍ତିଟିର ସୌନ୍ଦର୍ଯ୍ୟ ଅପେକ୍ଷା ଅକ୍ଷୁଣ୍ଣତା ପ୍ରତି ସେମାନେ ବିଶେଷ ଦୃଷ୍ଟି ଦେଉଥିଲେ । ତେଣୁ ମୁସଲମାନଙ୍କ ଦ୍ୱାରା ବିକୃତ ମୂର୍ତ୍ତିଗୁଡ଼ିକ କ୍ରମଶଃ ରାଜାମାନଙ୍କ ଦ୍ୱାରା ପରିତ୍ୟକ୍ତ ହେବାକୁ ଲାଗିଲା । ଏହା ହିଁ ଭୁବନେଶ୍ୱର ତଥା ଭାରତର ଅସଂଖ୍ୟ ହିନ୍ଦୁତୀର୍ଥର ପତନର କାରଣ ।

ମୂର୍ତ୍ତିର ପୂଜା ନ ହେଲେ ସେଗୁଡ଼ିକ ଲୋକମାନଙ୍କର ବିଶେଷ ଅନିଷ୍ଟ କରନ୍ତି ବୋଲି ଆମ୍ଭମାନଙ୍କର ଅନ୍ଧବିଶ୍ୱାସ । ଏଭଳି ବିଶ୍ୱାସ ଅନୁସାରେ ଅପୂଜା ମୂର୍ତ୍ତି ସକଳ ନିର୍ଜନ ରାତ୍ରିରେ ପୂଜା ପାଇବା ପାଇଁ ନାନା ରୂପ ଧାରଣକରି ଭ୍ରମଣ କରନ୍ତି । ଅପୂଜିତ ମୂର୍ତ୍ତି ସକଳ ଗ୍ରାମରେ ବସନ୍ତ-ହଇଜାର କାରଣ ଓ ଅନେକ ସ୍ଥାନରେ ଅପୂଜା ଠାକୁର ଅନେକଙ୍କର ବଂଶନଷ୍ଟ କରି ପକାଏ ବୋଲି ଲୋକେ କହନ୍ତି । ଏ ସମସ୍ତ ମୋର ନିଜ ଅନୁଭୂତିରୁ ଜାଣିଛି । ତେଣୁ ଅପୂଜିତ ମୂର୍ତ୍ତିଗୁଡ଼ିକ ନିକଟରେ ଅନ୍ଧ-କୁସଂସ୍କାରାଚ୍ଛନ୍ନ ଲୋକମାନେ ବାସକରିବାକୁ ଭୟ କରନ୍ତି । ମନ୍ଦିରଗୁଡ଼ିକ ମଧ୍ୟ ଚୋର, ଶତ୍ରୁ ଓ ବୃକ୍ଷମାନଙ୍କଠାରୁ ସୁରକ୍ଷିତ ହୋଇପାରେ ନାହିଁ । କଳାପାହାଡ଼ର ଅତ୍ୟାଚାରର ଫଳ ଏହିପରି ନାନା ରୂପରେ ଭୁବନେଶ୍ୱରର ଅବନତି ଘଟାଇବା ପାଇଁ ପ୍ରଧାନ ଓ ପ୍ରଥମ କାରଣ ହେଲା ।

କଳାପାହାଡ଼ର ଅତ୍ୟାଚାର, ନିର୍ଯାତନା ଓ ଧର୍ମଧ୍ୱଂସ ଚେଷ୍ଟାଦ୍ୱାରା ବୀର ଓଡ଼ିଆମାନେ ବିଶେଷ ଅପମାନିତ ହୋଇ ରାଜ୍ୟର ଶାନ୍ତି ପ୍ରତିଷ୍ଠା କରିବା ପାଇଁ ଚେଷ୍ଟା କଲେ । ମନ୍ତ୍ରୀ ଓ ରାଜ୍ୟର ପ୍ରଧାନ ପ୍ରଧାନ ନେତାମାନେ ଦନେଇ ବିଦ୍ୟାଧରଙ୍କ ପୁତ୍ର ରାମଚନ୍ଦ୍ର ବିଦ୍ୟାଧରଙ୍କୁ ସିଂହାସନରେ ବସାଇଥିଲେ । ରାମଚନ୍ଦ୍ରଦେବ ଖୋରଧାରେ ନିଜର ରାଜଧାନୀ ସ୍ଥାପନ କରିଥିଲେ । ୧୫୭୮ ଖ୍ରୀଷ୍ଟାବ୍ଦରେ ଉତ୍କଳ ଦିଲ୍ଲୀ ସାମ୍ରାଜ୍ୟଭୁକ୍ତ ହେଲା । ସମ୍ରାଟ ଆକବର ସେନାପତି ଶିବାଇ ଜୟସିଂହ ସାମ୍ରାଜ୍ୟ ସଂପର୍କୀୟ କାର୍ଯ୍ୟ ଦେଖିବା ଲାଗି ଓଡ଼ିଶାକୁ ଆସିଥିଲେ । ଭୁବନେଶ୍ୱରର ଅସଂଖ୍ୟ ଦେବାଳୟ ଓ ବ୍ରାହ୍ମଣଶାସନମାନ ଦେଖି ତାଙ୍କ ମନରେ ଭକ୍ତିଭାବ ଉଦିତ ହେଲା । ଏହା ଯବନଦ୍ୱାରା ଶାସିତ ହେବପାଇଁ ଉପଯୁକ୍ତ ନୁହେଁ ବୋଲି ସ୍ଥିର କରି ରାମଚନ୍ଦ୍ର ଦେବଙ୍କ ଉପରେ ଏହାର ଶାସନଭାର ଅର୍ପଣ କରି ଚାଲିଗଲେ । ମହାମହିମ ଭାରତସମ୍ରାଟ ଆକବରଙ୍କ ପ୍ରଧାନ ରାଜସ୍ୱସଚିବ ତୋଡ଼ରମଲ୍ଲ ରାମଚନ୍ଦ୍ରଦେବଙ୍କୁ ଖୋରଧା ଓ ତନ୍ନିକଟବର୍ତ୍ତୀ କେତେକ ସ୍ଥାନର ରାଜାବୋଲି ସ୍ୱୀକାର କଲେ । ସେହିଦିନୁ ଇଂରେଜମାନଙ୍କର ଆଗମନ ପର୍ଯ୍ୟନ୍ତ ଭୁବନେଶ୍ୱର ଭୋଇବଂଶ ରାଜାମାନଙ୍କ ଦ୍ୱାରା ଶାସିତ ହେଲା ।

୧୫୭୮ ପର୍ଯ୍ୟନ୍ତ ଭୁବନେଶ୍ୱର ନିକଟରେ ଅନେକ ବ୍ରାହ୍ମଣଶାସନ

ଥିବାର ସ୍ପଷ୍ଟ ଜଣାଯାଏ । କିନ୍ତୁ ଆଜିକାଲି ଭୁବନେଶ୍ୱର ନିକଟରେ ଗୋଟିଏ ସୁଦ୍ଧା ପ୍ରାଚୀନ ବ୍ରାହ୍ମଣଶାସନ ଦେଖାଯାଏ ନାହିଁ ।

ଭୁବନେଶ୍ୱର ଖୋରଧାରାଜାଙ୍କ ଅଧୀନରେ ଥିଲେ ମଧ ପ୍ରବଳ ମୁସଲମାନ ନରପତିଙ୍କ ଆକ୍ରମଣରୁ ରକ୍ଷା ପାଇନଥିଲା, କାରଣ ଖୋରଧାର ରାଜା ମୁସଲମାନ ସମ୍ରାଟଙ୍କ ଅଧୀନରେ ଥିଲେ । ଗଙ୍ଗ ବା ସୂର୍ଯ୍ୟବଂଶ ରାଜାମାନଙ୍କ ପରି ଭୋଇବଂଶ ରାଜାମାନେ ବିରାଟ ସାମ୍ରାଜ୍ୟର ଅଧୀଶ୍ୱର ନ ଥିଲେ । ତେଣୁ ଉତ୍ତର ଓ ଦକ୍ଷିଣ ଉଭୟ ଦିଗରୁ ମୁସଲମାନଙ୍କର ଆକ୍ରମଣର ଆଶଙ୍କା ସର୍ବଦା ବିଦ୍ୟମାନ ଥିଲା । ସେ ସମୟରେ କଟକ ମୁସଲମାନ ରାଜାମାନଙ୍କର ରାଜଧାନୀ ଥିଲା । ଭୁବନେଶ୍ୱର କଟକଠାରୁ ଅଳ୍ପ ଦୂର । ତେଣୁ ସମୟ ସମୟରେ ଜଣେ ଜଣେ ଧର୍ମାନ୍ଧ ମୁସଲମାନ ସେନାପତି ବା ରାଜା ଅପ୍ରତ୍ୟାଶିତ ଭାବରେ ଭୁବନେଶ୍ୱର ଆକ୍ରମଣ କରୁଥିଲେ । ମୁସଲମାନମାନଙ୍କ ଆକ୍ରମଣର ଭୟ ଯୋଗୁଁ ଏ ସ୍ଥାନର ଅନେକ ଲୋକ ଘରଦ୍ୱାର ଛାଡ଼ି ଅନ୍ୟତ୍ର ପଳାଇ ଯାଇଥିଲେ । ଭୁବନେଶ୍ୱର କ୍ରମଶଃ ଜନଶୂନ୍ୟ ହେବାକୁ ଲାଗିଲା । ଜନଶୂନ୍ୟ ହେବାଦ୍ୱାରା ମନ୍ଦିରମାନଙ୍କର କେହି ତତ୍ତ୍ୱ ନିଅନ୍ତି ନାହିଁ । ମନ୍ଦିରର ପ୍ରଧାନ ଶତ୍ରୁ ପ୍ରସ୍ତରଭେଦୀ ଉଦ୍ଭିଦ । ମନ୍ଦିରର ଜୀର୍ଣ୍ଣସଂସ୍କାର ନହେଲେ ଫାଟିଥିବା ସ୍ଥାନମାନଙ୍କରେ ବଡ଼ ବଡ଼ ଗଛମାନ ଉଠି ମନ୍ଦିରଗୁଡ଼ିକୁ ଏକାବେଳକେ ନଷ୍ଟ କରିଦିଏ । ପ୍ରସ୍ତରଭେଦୀ ହିଁ ଭୁବନେଶ୍ୱରର ଅଧିକାଂଶ ମନ୍ଦିରର ପତନର କାରଣ ।

ମୁସଲମାନମାନେ କେତେଥର ଭୁବନେଶ୍ୱର ଆକ୍ରମଣ କରିଥିଲେ ତାହା କହିବା ସହଜନୁହେଁ । କିନ୍ତୁ ମୁସଲମାନ ରାଜାମାନେ ପୁରୀକୁ ଆକ୍ରମଣ କରିବା ସମୟରେ ପୁରୀରାସ୍ତାର ନିକଟବର୍ତ୍ତୀ ଭୁବନେଶ୍ୱରରେ ଧ୍ୱଂସଲୀଳା ଅଭିନୟ କରିବାକୁ ଭୁଲନ୍ତି ନାହିଁ । ୧୫୬୮ ଖ୍ରୀଷ୍ଟାବ୍ଦଠାରୁ ୧୬୧୧ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଉତ୍କଳ ପଠାଣ ଓ ମୋଗଲମାନଙ୍କର ସମରାଙ୍ଗଣ ଥିଲା । ପଠାଣମାନେ ବାରମ୍ବାର ମୋଗଲମାନଙ୍କ ଦ୍ୱାରା ପରାସ୍ତ ହୋଇଥିଲେ ସୁଦ୍ଧା ବିଦ୍ରୋହଭାବ ପରିତ୍ୟାଗ କରୁନଥିଲେ । ୧୫୮୨ ଖ୍ରୀଷ୍ଟାବ୍ଦରେ 'କୁତୁଲଖାଁ' ରାମଚନ୍ଦ୍ର ଦେବଙ୍କୁ ପରାସ୍ତକରି ପୁରୀ ଆକ୍ରମଣ କରିଥିଲା । ୧୬୧୧

ଖ୍ରୀଷ୍ଟାବ୍ଦରେ ସେମାନଙ୍କ ବିଦ୍ରୋହ ହେବାରୁ ସୁଜାଏତ୍ ଖାଁ ନାମକ ଜଣେ ମୋଗଲ ସେନାପତି ପଠାଣମାନଙ୍କ ବିଦ୍ରୋହ ଦମନ କରିବା ନିମିତ୍ତ ପ୍ରେରିତ ହେଲେ । ସେ ଉତ୍କଳର ପଠାଣମାନଙ୍କୁ ସମ୍ପୂର୍ଣ୍ଣ ପରାଜିତ କରି ସେମାନଙ୍କର ଦଳ ଭାଙ୍ଗିଦେଲେ । ଓଡ଼ିଶାର ଗ୍ରାମମାନଙ୍କରେ ପଠାଣମାନଙ୍କୁ ଜମିବାଡ଼ି ଦେଇ ରଖାଇଲେ । ଭୁବନେଶ୍ୱର ନିକଟବର୍ତ୍ତୀ ଯଦୁପୁର ଓ ସୁନ୍ଦରପଦା ପ୍ରଭୃତିର ପଠାଣମାନେ ସମ୍ଭବତଃ ସେହି ସମୟରେ ହିନ୍ଦୁମାନଙ୍କ ମଧ୍ୟରେ ବାସ କରିବାକୁ ଲାଗିଲେ । ହିନ୍ଦୁ ମନ୍ଦିରମାନଙ୍କ ନିକଟରେ ସେମାନଙ୍କର ଅବସ୍ଥିତି ଯୋଗୁଁ ଭୁବନେଶ୍ୱରର ହିନ୍ଦୁମାନେ ସର୍ବଦା ଅସନ୍ତୁଷ୍ଟ ଥିଲେ । କାରଣ ସେମାନେ ସର୍ବଦା ପଠାଣ ବା ମୋଗଲ ଆକ୍ରମଣକାରୀମାନଙ୍କୁ ମନ୍ଦିର ଭାଙ୍ଗିଦେବାପାଇଁ ସାହାଯ୍ୟ ଦେଉଥିଲେ ।

## ତକିଖାଁ

ସୁଜାଉଦ୍ଦିନ ଖାଁ (୧୭୦୬-୧୭୨୪) ପର୍ଯ୍ୟନ୍ତ ୧୮ବର୍ଷକାଳ ଓଡ଼ିଶାକୁ ଶାସନ କରିଥିଲେ । ତାଙ୍କ ସମୟରେ ହିନ୍ଦୁ ଓ ମୁସଲମାନଙ୍କ ମଧ୍ୟରେ ସାମ୍ୟ ଓ ମୈତ୍ରୀ ଭାବ ପ୍ରତିଷ୍ଠିତ ହୋଇଥିଲା । ତାଙ୍କ ପରେ ମହମ୍ମଦ ତକିଖାଁ ୧୭୨୪ଠାରୁ ଓଡ଼ିଶାର ନବାବ ହେଲେ । ସେ ବଡ଼ ଅର୍ଥଲୋଭୀ ପ୍ରଜାପୀଡ଼କ ଥିଲେ । ସେ ଜଗନ୍ନାଥଙ୍କର ପବିତ୍ର ମନ୍ଦିର ଆକ୍ରମଣ କରିବାରୁ ଅନେକଦିନ ପର୍ଯ୍ୟନ୍ତ ସେବାପୂଜା ବନ୍ଦହୋଇଗଲା । ପଣ୍ଡାମାନେ ଜଗନ୍ନାଥଙ୍କୁ ନେଇ ପଳାଇଲେ । ଦ୍ୱିତୀୟ ରାମଚନ୍ଦ୍ର ଦେବ ବନ୍ଦୀ ହେଲେ । ତକି ମଧ୍ୟ ଭୁବନେଶ୍ୱର ମନ୍ଦିରମାନଙ୍କ ଉପରେ ଆକ୍ରମଣ ଚଳାଇଥିବାର ଜଣାଯାଏ । ଖୋରଧାର ପ୍ରଜାମାନେ ବିଦ୍ରୋହୀ ହୋଇ ଯୁଦ୍ଧ କଲେ । ଏହି ସମୟରେ ମହମ୍ମଦ ତକିଖାଁର ସୈନ୍ୟମାନେ ଭୁବନେଶ୍ୱରର ବିରାଟ ସୁଦୃଢ଼ ଶିଶୁପାଳଗଡ଼କୁ ଆକ୍ରମଣ କରି ୧୭୩୨ରେ ଏହାକୁ ଭାଙ୍ଗି ପକାଇଥିଲେ । ଶିଶୁପାଳଗଡ଼ ଉତ୍କଳର ଗୋଟିଏ ପ୍ରାଚୀନଗଡ଼ । ତାହା ସେ ସମୟକୁ ଜୀର୍ଣ୍ଣ ଅବସ୍ଥାରେ ଉପନୀତ ହୋଇଥିଲା । ମହମ୍ମଦ ତକି ତାକୁ ଭାଙ୍ଗିପକାଇବାରୁ ଲୋକମାନେ ହାହାକାର କରିଥିଲେ । ଏଠାରେ ପ୍ରଧାନ ପାଇକମାନେ ଭୁବନେଶ୍ୱରର ମନ୍ଦିର ରକ୍ଷାନିମିତ୍ତ ସର୍ବଦା ନିଯୁକ୍ତ ଥିଲେ । ଦୁର୍ଗଟି ଭାଙ୍ଗିଯିବାରୁ ସେମାନେ କ୍ରମଶଃ ହୀନବଳ ହୋଇଗଲେ ।

ଶିଶୁପାଳଗଡ଼ର ଅନେକଲୋକ ଅନ୍ୟତ୍ର ପଳାଇଯାଇଥିଲେ । ପ୍ରାଚୀନକାଳରେ ଦୁର୍ଗ ହିଁ ଯୁଦ୍ଧ ସମୟରେ ଲୋକମାନଙ୍କର ପ୍ରଧାନ ଆଶ୍ରୟସ୍ଥଳ ଥିଲା । ଦୁର୍ଗଭାଙ୍ଗିଯିବାର ଦେଖି ଲୋକମାନେ ବିପଦ ଓ ଶତ୍ରୁଭୟ ସମୟରେ ଅନ୍ୟ କୌଣସି ନିରାପଦ ସ୍ଥାନ ନପାଇ ଭୁବନେଶ୍ୱରରେ ରହିବାପାଇଁ ଭୟ କରୁଥିଲେ । କଳାପାହାଡ଼ ପରି ମହମ୍ମଦ ତକି ଖାଁଙ୍କ ଆକ୍ରମଣ ଭୁବନେଶ୍ୱର ପତନର ଗୋଟିଏ ପ୍ରଧାନ କାରଣ । ସେ ଧଉଳୀଗଡ଼ ମଧ୍ୟ ଆକ୍ରମଣ କରିଥିଲେ ।

ମୋଗଲମାନେ ୧୫୬୮ ରୁ ୧୭୫୧ ପର୍ଯ୍ୟନ୍ତ ପ୍ରାୟ ୨୦୦ବର୍ଷ ପର୍ଯ୍ୟନ୍ତ ଉତ୍କଳ ଶାସନ କରିଥିଲେ । ଉକ୍ତ ସମୟରେ ଭୋଇବଂଶର ୧୧ଜଣ ରାଜା ରାଜତ୍ୱ କରିଥିଲେ । ପ୍ରତ୍ୟେକ ରାଜାଙ୍କ ରାଜତ୍ୱରେ ମୁସଲମାନମାନେ ପୁରୀର ଜଗନ୍ନାଥ ମନ୍ଦିର ଥରେ ବା ବହୁଥର ଆକ୍ରମଣ କରିଥିଲେ । ତେଣୁ ନୃଶଂସ ମୁସଲମାନଙ୍କ ଦୃଷ୍ଟି ଭୁବନେଶ୍ୱର ପ୍ରତି ସର୍ବଦା ପଡୁଥିଲା । ପୁନଶ୍ଚ ଆଉରଙ୍ଗଜେବ ୧୬୮୦ଖ୍ରୀଷ୍ଟାବ୍ଦରେ ସମଗ୍ର ଭାରତବର୍ଷରେ ପ୍ରାଚୀନ ମନ୍ଦିର ମାନଙ୍କର ଜୀର୍ଣ୍ଣ ସଂସ୍କାର ଓ ନୂତନ ମନ୍ଦିର ନିର୍ମାଣ ପ୍ରଥା ଏକାବେଳକେ ବନ୍ଦ କରିଦେଲେ । ଏହି ଆଦେଶ ଫଳରେ ଉତ୍କଳର ଅନେକ ପ୍ରାଚୀନ ମନ୍ଦିର ବିଧ୍ୱସ୍ତ ହୋଇଥିବାର ଜଣାଯାଏ । ଭୁବନେଶ୍ୱର ୨୦୦ବର୍ଷକାଳ ମୁସଲମାନମାନଙ୍କ ଅଧୀନରେ ଥାଇ ସୁଦ୍ଧା ଭୁବନେଶ୍ୱରର କୌଣସି ମନ୍ଦିର ଏକାବେଳକେ ମୁସଲମାନମାନଙ୍କ ଦ୍ୱାରା ବିଧ୍ୱସ୍ତ ହୋଇ ପାରିନଥିଲା । କାରଣ ଏହା ଖାସ ମୋଗଲବନ୍ଦୀ ମଧ୍ୟରେ ନଥିଲା । ଭୋଇବଂଶର ରାଜାମାନେ ଏହାର ଶାସନକର୍ତ୍ତା ଥିଲେ । ତେଣୁ ସେମାନେ ଭୁବନେଶ୍ୱରର ପ୍ରାଚୀନ କୀର୍ତ୍ତିସକଳ ରକ୍ଷାକରିବା ନିମିତ୍ତ ଯଥାସାଧ ଚେଷ୍ଟା କରୁଥିଲେ । ପୂର୍ବରାଜାମାନେ ଭୁବନେଶ୍ୱରର ମନ୍ଦିରମାନ ରକ୍ଷାକରିବା ପାଇଁ ଭୁବନେଶ୍ୱରର ଚତୁର୍ଦ୍ଦିଗରେ ଗଡ଼ ବସାଇ ପାଇକ ସୈନ୍ୟମାନ ରଖାଇଥିଲେ । ଭୁବନେଶ୍ୱର ନିକଟବର୍ତ୍ତୀ ନୂଆପଲ୍ଲୀ, ବଡ଼ଗଡ଼, କପିଳପ୍ରସାଦ, ଶିଶୁପାଳ, ଧଉଳି, ନହରକଣ୍ଟା, ପଟିଆ ପ୍ରଭୃତିରେ ଗୋଟିଏ ଲେଖାଏଁ ଗଡ଼ ଥିଲା । ସେ ଗଡ଼ମାନଙ୍କରେ ଓଡ଼ିଆ ପାଇକମାନେ ଭୁବନେଶ୍ୱର ରକ୍ଷା କରିବା ନିମିତ୍ତ ବୃତ୍ତି ଭୋଗ କରୁଥିଲେ । ତେଣୁ ମୁସଲମାନମାନଙ୍କର

ଆକ୍ରମଣ ବାର୍ତ୍ତା ପହଞ୍ଚାଇବା ମାତ୍ରେ ସେମାନେ ସ୍ୱର୍ଗାଦପି ଗରୀୟସୀ ଜନନୀ ଜନ୍ମଭୂମିର କୀର୍ତ୍ତିରକ୍ଷା କରିବା ନିମିତ୍ତ ମୁସଲମାନମାନଙ୍କ ସହିତ ତୁମୁଳ ଯୁଦ୍ଧ କରୁଥିଲେ । ମହମ୍ମଦ ତକିଖାଁର ଆକ୍ରମଣ ସମୟରେ ଶିଶୁପାଳର ଦକ୍ଷିଣ କବାଟଙ୍କର ବୀରତ୍ୱ କାହାଣୀ ଅଦ୍ୟାପି ଲୋକମୁଖରେ ପ୍ରଚଳିତ । ଓଡିଆମାନେ ରାଜପୁତମାନଙ୍କ ପରି ଭାରି ଯୁଦ୍ଧପ୍ରିୟ ଓ ଦେଶପ୍ରେମୀ ଥିଲେ । ଜନନୀ ଜନ୍ମଭୂମିର ରକ୍ଷା ନିମିତ୍ତ ସମରାଙ୍ଗନରେ ଶତ୍ରୁର ଆକ୍ରମଣକୁ ପ୍ରତିହତ କରି ନଥିଲେ ମନ୍ଦିରମାନଙ୍କର ଧ୍ୱଂସସ୍ତୂପ ଉପରେ ମୁସଲମାନମାନଙ୍କ ମସଜିଦ୍ ଶୋଭା ପାଉଥାନ୍ତା ।

ଭୁବନେଶ୍ୱର ଅବନତି ନିମିତ୍ତ ମୁସଲମାନମାନଙ୍କର ୨୦୦ବର୍ଷର ଅତ୍ୟାଚାର ଏକାବେଳକେ ଦାୟୀ ନୁହେଁ । ଭୋଇବଂଶ ରାଜାମାନଙ୍କର ଉଦାସୀନତା ଏହା ପାଇଁ କେତେକାଂଶରେ ଦାୟୀ । ଉକ୍ତବଂଶର ରାଜାମାନେ ରକ୍ଷଣଶୀଳ ବୈଷ୍ଣବ ସଂପ୍ରଦାୟର ଅନ୍ତର୍ଭୁକ୍ତ । ସେମାନେ ଜଗନ୍ନାଥଙ୍କର 'ଚଳନ୍ତି-ପ୍ରତିମା' ବୋଲି ଲୋକମାନେ ବିଶ୍ୱାସ କରୁଥିଲେ । ଇତିହାସରୁ ଜଣାଯାଏ, ସେମାନେ ଭୁବନେଶ୍ୱର ଅପେକ୍ଷା ଖୁରୁଧା ଓ ପୁରୀର ଜଗନ୍ନାଥଙ୍କ ରକ୍ଷା ନିମିତ୍ତ ସର୍ବଦା ତତ୍ପର ଥିଲେ । ଚୈତନ୍ୟଙ୍କ ବୈଷ୍ଣବଧର୍ମ ପ୍ରଚାର ପରେ ଭୁବନେଶ୍ୱରର ମାହାତ୍ମ୍ୟ କ୍ରମଶଃ କ୍ଷୀଣ ହୋଇଥିଲା । ମାଦଳାପାଞ୍ଜିରୁ ଜଣାଯାଏ ଯେ, ୧୫୪୫ ଶକ ବା ୧୬୨୩ ଖ୍ରୀଷ୍ଟାବ୍ଦରେ ପୁରୁଷୋତ୍ତମଦେବଙ୍କ ପୁତ୍ର ନୃସିଂହଦେବ ରାଜାହୋଇ ଭୁବନେଶ୍ୱର ଯାନିଯାତ୍ରା ସବୁ ବନ୍ଦ କରିବା ସହିତ ପାଚେରୀ କାଙ୍ଗୁଲା ବାହାର କରାଇଥିଲେ । ଏଠାରୁ ବସ୍ତି ଭାଙ୍ଗି ପୁରୁଷୋତ୍ତମରେ ସାତସାହି ବୟାଳିଶ ବନ୍ଦି କଲେ । ଏଥିରୁ ସ୍ପଷ୍ଟ ଜଣାଯାଏ ଯେ, ଭୁବନେଶ୍ୱରରୁ ଅନେକଲୋକ ରାଜାଦେଶରେ ପୁରୀକୁ ଚାଲିଯାଇଥିଲେ । ଏହାଦ୍ୱାରା ଭୁବନେଶ୍ୱରର ବିଶେଷ ଅବନତି ଘଟିଲା । ଭୋଇବଂଶ ରାଜାମାନଙ୍କ ମଧ୍ୟରୁ ଅବଶ୍ୟ କେତେଜଣ ଭୁବନେଶ୍ୱରରେ ଦାନ ଓ ବୃତ୍ତି ଖଞ୍ଜିଥିଲେ ଓ ମନ୍ଦିର ସଂସ୍କାର କରିଥିଲେ । କିନ୍ତୁ ଗଙ୍ଗବଂଶ ଓ ସୂର୍ଯ୍ୟବଂଶର ଦାୟାଦଗଣ ଭୁବନେଶ୍ୱର ପ୍ରତି ବିଶେଷ ଦୃଷ୍ଟି ଦେଉନଥିଲେ । ତେଣୁ ଭୁବନେଶ୍ୱର ରାଜପୃଷ୍ଠପୋଷକତାରୁ ବଞ୍ଚିତ ହୋଇ କ୍ରମଶଃ ଲୋକମାନଙ୍କଦ୍ୱାରା ପରିତ୍ୟକ୍ତ ହେଲା । ଉତ୍କଳରେ ମୋଗଲ

ରାଜତ୍ୱ ୧୭୫୧ରେ ଶେଷ ହେଲା । ଦେଶ ମରହଟ୍ଟାମାନଙ୍କ ଦ୍ୱାରା ୧୮୦୩ ପର୍ଯ୍ୟନ୍ତ ଶାସିତ ହେଲା । ମରହଟ୍ଟାମାନେ ହିନ୍ଦୁ ସତ୍ୟ, ତେଣୁ ସେମାନେ ପଠାଣମାନଙ୍କ ପରି ଆମ୍ଭମାନଙ୍କର ଧର୍ମମନ୍ଦିର ଧ୍ୱଂସ କରୁନଥିଲେ । କିନ୍ତୁ ମରହଟ୍ଟା ବର୍ଗୀମାନେ ବିଶେଷ ଅତ୍ୟାଚାରୀ ଓ ଅର୍ଥଲୋଭୀ ଥିଲେ । ଧନାର୍ଜନ ସେମାନଙ୍କର ମୁଖ୍ୟ ଉଦ୍ଦେଶ୍ୟ ଥିଲା । ତେଣୁ ସେମାନେ ବହୁବାର ଉତ୍କଳର ପୁରପଲ୍ଲୀ ଲୁଣ୍ଠନ କରିଥିଲେ । ଲୌକିକ ପ୍ରବାଦ ଅନୁସାରେ ମରହଟ୍ଟାମାନେ ଭୁବନେଶ୍ୱରର କେତେକ ମନ୍ଦିରରେ ଥିବା ଚନ୍ଦନ କବାଟ ଓ ଚଳନ୍ତି ସ୍ୱର୍ଣ୍ଣପ୍ରତିମା ନେଇ ଯାଇଥିଲେ । ପୂର୍ବେ ଲିଙ୍ଗରାଜଙ୍କର ଗୋଟିଏ ସ୍ୱର୍ଣ୍ଣ ଚନ୍ଦ୍ରଶେଖର ମୂର୍ତ୍ତିଥିଲା । ଲିଙ୍ଗରାଜଙ୍କ ମୋହନର ଦକ୍ଷିଣ ଦିଗରେ ଥିବା ଦକ୍ଷିଣ ଘରେ ପୂର୍ବେ ଅନେକ ସ୍ୱର୍ଣ୍ଣ ଚଳନ୍ତି ପ୍ରତିମା ବିଦ୍ୟମାନ ଥିଲେ । ଏ ସମସ୍ତ ମରହଟ୍ଟାମାନଙ୍କ ଦ୍ୱାରା ଅପହୃତ ହୋଇଥିବାର ଲୋକମାନେ କହନ୍ତି । ମରହଟ୍ଟାମାନଙ୍କ ଭୟରେ ଲୋକମାନେ ଭଲ ଘରଖଣ୍ଡିଏ ସୁଦ୍ଧା ତୋଳୁନଥିଲେ । ଏମାନେ ଭୁବନେଶ୍ୱରକୁ କେତେଥର ଲୁଣ୍ଠନ କରିଥିବେ ତାହା କହିବା ସହଜ ନୁହେଁ । ମରହଟ୍ଟାମାନଙ୍କର ବାରମ୍ବାର ଆକ୍ରମଣଦ୍ୱାରା ଭୁବନେଶ୍ୱରର କୌଣସି ମନ୍ଦିର ନଷ୍ଟ ନ ହୋଇ ସୁଦ୍ଧା ଭୁବନେଶ୍ୱର କ୍ରମଶଃ ଜନଶୂନ୍ୟ ହୋଇଗଲା । ଯାତ୍ରୀମାନେ ଏ ସ୍ଥାନକୁ ଆସିବାପାଇଁ ଭୟ କରୁଥିଲେ । ସର୍ବଦା ଶତ୍ରୁଆକ୍ରମଣର ଭୟଥିବାରୁ ମହାପ୍ରଭୁଙ୍କ ସେବାପୂଜା ମଧ୍ୟ ସୁଚାରୁରୂପେ ସଂପାଦିତ ହୋଇପାରୁ ନଥିଲା । କିନ୍ତୁ ଉତ୍କଳର ସୌଭାଗ୍ୟକୁ ମରହଟ୍ଟା ରାଜତ୍ୱ କେବଳ ୫୦ ବର୍ଷରେ ଶେଷ ହୋଇଥିଲା । ତଥାପି ଏହି ଅଳ୍ପ କାଳ ମଧ୍ୟରେ ଭୁବନେଶ୍ୱର ଶ୍ରୀହୀନ ଓ ଶ୍ମଶାନାକାର ଧାରଣ କରିଥିଲା । ଇଂରେଜମାନଙ୍କର ଆଗମନ ସମୟକୁ ଭୁବନେଶ୍ୱର ଗୋଟିଏ ଶ୍ମଶାନ ଆକାର ଧାରଣ କରିଥିଲା । ଖଣ୍ଡାଚଳଠାରୁ କୁଣ୍ଡଳେଶ୍ୱର ଓ ବାରାହୀଦେବୀଙ୍କଠାରୁ ବହିରଙ୍ଗେଶ୍ୱର ପର୍ଯ୍ୟନ୍ତ ବିସ୍ତୃତ ବିରାଟ ଭୁବନେଶ୍ୱର କ୍ଷେତ୍ର କ୍ରମଶଃ ହ୍ରାସ ହୋଇ ଲିଙ୍ଗରାଜଙ୍କଠାରୁ ଗୋଡ଼ିପୋଖରୀ ଓ ବିନ୍ଦୁସାଗରର ପୂର୍ବ ତଟରୁ ବିନାୟକ ଦଣ୍ଡା ସୀମା ମଧ୍ୟରେ ଆବଦ୍ଧ ରହିଲା ।

ଏହି ଦୀର୍ଘକାଳମଧ୍ୟରେ ଭୁବନେଶ୍ୱର ନିକଟବର୍ତ୍ତୀ ନୂଆପଲ୍ଲୀ,

ବଡ଼ଗଡ଼, କପିଳପ୍ରସାଦ, ଶିଶୁପାଳ, ଧଉଳୀ, ପଟିଆର ସାରଙ୍ଗଗଡ, ନହରକଣ୍ଟାର ଗଡ଼ମାନ ବହୁବାର ଆକ୍ରମଣ ସହିଥିଲା ଓ କେତେକ ଧ୍ୱଂସ ପାଇଥିଲା । ଦୁର୍ଗଗୁଡ଼ିକ ନଷ୍ଟ ହୋଇଯିବାରୁ ଲୋକମାନେ ଏଠାରେ ବାସକରିବାକୁ ନିରାପଦ ମନେ କରୁନଥିଲେ । ଭୁବନେଶ୍ୱରର ଉତ୍ତରରେ ନୂଆପଲ୍ଲୀନିକଟସ୍ଥ ବରାହଦେବୀଙ୍କନିକଟରେ ଅନେକ କଂସାରି ବାସ କରୁଥିଲେ । ସେମାନେ ମୁସଲମାନଙ୍କର ବାରମ୍ବାର ଆକ୍ରମଣ ଭୟରେ ଏ ସ୍ଥାନ ଛାଡ଼ିଦେଇ ବାଲକାଟୀ ରଥିଜଙ୍ଗା ନିକଟରେ ବସତିସ୍ଥାପନ କରି ବାସ କଲେ । କିନ୍ତୁ କଂସାରିପୋଖରୀ ନିକଟରେ ସେମାନଙ୍କର ଶାଳର ଚିହ୍ନମାନ ଅଦ୍ୟାପି ଦେଖାଯାଏ । ରାମେଶ୍ୱର, ବ୍ରହ୍ମେଶ୍ୱର ଓ ମେଘେଶ୍ୱର ନିକଟରେ ଅନେକଲୋକ ବାସ କରୁଥିଲେ । ସେଠାରେ ଲୋକବସତିର ଚିହ୍ନ ଅଦ୍ୟାପି ସ୍ପଷ୍ଟ ଦେଖାଯାଏ । କିନ୍ତୁ ସେଗୁଡ଼ିକ ପରିତ୍ୟକ୍ତ ହୋଇ ଜଙ୍ଗଲରେ ପରିପୂର୍ଣ୍ଣ ହୋଇଗଲା । ପର୍ଶୁରାମେଶ୍ୱର ମନ୍ଦିରର ପଶ୍ଚିମଦିଗରେ ଶୁଣ୍ଢି ମହାଜନମାନେ ବାସ କରୁଥିଲେ । ତାହାର ଲୌକିକ ନାମ ଶୁଣ୍ଢିପଡ଼ିଆ । କିନ୍ତୁ ସେଠାରେ ବସତି ଲୋପ ପାଇଗଲା ଓ ହିଂସ୍ରଜନ୍ତୁସମାକୁଳ ବନରେ ପରିଣତ ହୋଇଗଲା । ଷ୍ଟେସନ ନିକଟବର୍ତ୍ତୀ ବୁଦ୍ଧେଶ୍ୱରୀ, ଚିନ୍ତାମଣୀଶ୍ବର ଓ ଲକ୍ଷ୍ମୀସାଗରର ବିରାଟ ପୋଖରୀ ନିକଟରେ ମଧ୍ୟ ଲୋକବସତି ଥିଲା । କିନ୍ତୁ ତାହା ପରବର୍ତ୍ତୀ କାଳରେ ଜନଶୂନ୍ୟ ହୋଇଥିଲା । ବ୍ରହ୍ମେଶ୍ୱର, ମେଘେଶ୍ୱର ଓ ଅନନ୍ତବାସୁଦେବ, କପିଳେଶ୍ୱର, ପୋଖରୀପୁଟ ଓ ଶିଶୁପାଳ ଗଡ଼ ନିକଟରେ ସାତଗୋଟି ବ୍ରାହ୍ମଣଶାସନ ଥିଲା । ପୂର୍ବେ ଭୁବନେଶ୍ୱର ନିକଟରେ ସାତଗୋଟି ବ୍ରାହ୍ମଣଶାସନ ଥିଲା କିନ୍ତୁ ଇଂରେଜ ରାଜତ୍ୱ ସମୟକୁ ଏଠାରେ କୌଣସି ବ୍ରାହ୍ମଣଶାସନର ଅସ୍ତିତ୍ୱ ମଧ୍ୟ ନଥିଲା । ତଥାପି ବ୍ରହ୍ମେଶ୍ୱର, ମେଘେଶ୍ୱର ଓ ଅନନ୍ତବାସୁଦେବ (ନୂଆ ଓ ପୁରୁଣା ଧର୍ମଶାଳା ଏବଂ ଗଙ୍ଗାଯମୁନା) ନିକଟରେ ଶାସନର ଚିହ୍ନମାନ ଦେଖାଯାଏ । କପିଳେଶ୍ୱର ନିକଟବର୍ତ୍ତୀ ତ୍ରିଦଣ୍ଡୀମଠର ଦକ୍ଷିଣରେ ସୂକ୍ଷ୍ମେଶ୍ୱରଙ୍କଠାରେ ଗୋଟିଏ ଶାସନ ଥିଲା । ସେହି ବିରାଟ ପଡ଼ିଆର ନାମ ଶାସନ ପଡ଼ିଆ । କମାଡ଼ିହ, କମାବାଡ଼ି, କମା ପଡ଼ିଆ ପ୍ରଭୃତି ସ୍ଥାନରୁ କମାବ୍ରାହ୍ମଣମାନଙ୍କର ବସତିର ପରିଚୟ ମିଳେ । ସାମନ୍ତରାୟପୁରରେ ଗୋଟିଏ ବ୍ରାହ୍ମଣଶାସନ ଥିବାର ଜଣାଯାଏ । ମନ୍ଦିର ଅଫିସର ପୂର୍ବବର୍ତ୍ତୀ ସ୍ଥାନର ନାମ କଞ୍ଚ । ଏହା ପୂର୍ବେ

ଗୋଟିଏ ବିଖ୍ୟାତ ମହାଜନସ୍ଥଳୀ ଥିଲା, କିନ୍ତୁ ଏହା କାଳକ୍ରମେ ଶ୍ମଶାନରେ ପରିଣତ ହୋଇଥିଲା । ଭୁଆସୁଣୀର ନିକଟବର୍ତ୍ତୀ ଗଙ୍ଗୁଆନଈ ପୂର୍ବକୂ କାହାଳିଆ ଢିପରେ ପୂର୍ବେ ଅନେକ କାହାଳିଆ ବାସ କରୁଥିଲେ । କିନ୍ତୁ ଏହା ଧ୍ୱଂସସ୍ତୂପରେ ପରିଣତ ହୋଇଥିଲା । ପୋଖରୀପୁଟ ଗ୍ରାମନିକଟରେ ଶତାଧିକ ବାମ୍ପୀ ଦେଖାଯାଏ । ଏହା ପୂର୍ବେ ପ୍ରାଚୀନ ଭୁବନେଶ୍ୱରର ଗୋଟିଏ ପ୍ରଧାନଅଂଶ ଥିଲା, କିନ୍ତୁ ବର୍ତ୍ତମାନ ତାହା ଧାନଜମିରେ ପରିଣତ ହେଲାଣି । ଗୋବିନ୍ଦବାମ୍ପୀ ନିକଟରେ ମଧ ଲୋକମାନେ ବାସ କରୁଥିଲେ ।

ଏହା ପ୍ରାଚୀନ ଭୁବନେଶ୍ୱରର କଙ୍କାଳ ମାତ୍ର । ଏହି କ୍ଷୁଦ୍ର ଭୁବନେଶ୍ୱରର ଚତୁର୍ଦ୍ଦିଗ-ନିବିଡ଼ ଅରଣ୍ୟରେ ପରିପୂର୍ଣ୍ଣ ହୋଇଗଲା । ଲୋକମାନେ ଦ୍ୱିପ୍ରହର ସମୟରେ ସୁଦ୍ଧା ବ୍ୟାଘ୍ର ଭୟରେ କେଦାରେଶ୍ୱର ଓ କପିଳେଶ୍ୱରପର୍ଯ୍ୟନ୍ତ ଯିବାକୁ ଭୟ କରୁଥିଲେ । ମନ୍ଦିରଗୁଡ଼ିକ ଗୁଳ୍ମଲତାଚ୍ଛାଦିତ ହୋଇ ଲୋକଲୋଚନର ଅଗୋଚରରେ ଲୁକ୍କାୟିତ ହେଲା । ବିଦେଶାଗତ ଯାତ୍ରୀମାନେ ଭୁବନେଶ୍ୱର ଦେଖିବାକୁ ପ୍ରାୟ ଆସୁନଥିଲେ ।

ଜନଶୂନ୍ୟଧ୍ୱଂସପ୍ରାପ୍ତ ଭୁବନେଶ୍ୱର ନଗର ନିର୍ଜନ, ପରିତ୍ୟକ୍ତ, ଭଗ୍ନଦଶାପନ୍ନ ମନ୍ଦିର ଓ ପ୍ରାସାଦମାନଦ୍ୱାରା ପରିପୂର୍ଣ୍ଣ । ଅନେକ ମନ୍ଦିର ଅଦ୍ୟାପି ସୁରକ୍ଷିତ ଓ ସୁଦୃଢ ଥିଲେ ମଧ ପରିତ୍ୟକ୍ତ ଓ ଅବହେଳିତ ଅବସ୍ଥାରେ ପଡ଼ିରହିଛି । ଅଧିକାଂଶ ଗୁଳ୍ମଲତାଚ୍ଛାଦିତ ହୋଇ ମାନବଦୃଷ୍ଟିର ଅନ୍ତରାଳରେ ରହିଅଛି । ଅନେକ ମନ୍ଦିରର ଭଗ୍ନାବଶେଷ ଓ ଧ୍ୱଂସସ୍ତୂପ ଉପରେ ଗୁଳ୍ମଲତା ଓ ବୃକ୍ଷମାନେ ବହୁଳ ଭାବରେ ବିସ୍ତୃତ ହୋଇଛନ୍ତି । ଲିଙ୍ଗରାଜମନ୍ଦିର ବ୍ୟତୀତ ଅନ୍ୟ ସମସ୍ତ ମନ୍ଦିର ବହୁକାଳ ହେଲା ନିର୍ଜନ ବନ ମଧ୍ୟରେ ଦଣ୍ଡାୟମାନ ରହିଛି ଓ ସେ ସ୍ଥାନମାନଙ୍କୁ ଲୋକସମାଗମ ହୁଏନାହିଁ । ଲିଙ୍ଗରାଜଙ୍କ ସେବାପୂଜା ନିମିତ୍ତ ଖଞ୍ଜାହୋଇଥିବା ଭୂମିବୃତ୍ତି ଆଦୌ ଯଥେଷ୍ଟ ନୁହେଁ । ଖୋରଧାରାଜାଙ୍କ କର୍ମଚାରୀଙ୍କ ଦ୍ୱାରା ମନ୍ଦିର ପରିଚାଳିତ ହୁଏ । କିନ୍ତୁ ପରିଚାଳନ ବ୍ୟବସ୍ଥା ଆଦୌ ସନ୍ତୋଷଜନକ ନୁହେଁ । ସମୟ ସମୟରେ ପୁରୀଯାତ୍ରୀମାନେ ଏଠାକୁ ଦର୍ଶନ ନିମିତ୍ତ ଆସନ୍ତି ।

ଭୋଇବଂଶର ରାଜାମାନେ ସମୟ ସମୟରେ ଭୁବନେଶ୍ୱର

ଲିଙ୍ଗରାଜ ମହାପ୍ରଭୁଙ୍କୁ ଦର୍ଶନ କରିବାକୁ ଆସୁଥିଲେ । ସେମାନେ ପ୍ରାୟ ତିନିଦିଗରୁ ଭୁବନେଶ୍ୱରକୁ ଆସୁଥିଲେ । ଖୋରଧାରୁ ଆସିଲେ ଭୀମକୁଣ୍ଡଠାରେ ସେମାନଙ୍କର ଛତା, ତ୍ରାସ ଓ କାହାଳୀ ବନ୍ଦ ହେଉଥିଲା ଓ ସେମାନେ ଲିଙ୍ଗରାଜ ମହାପ୍ରଭୁଙ୍କ କାହାଳୀ ଛତା ତ୍ରାସ ସହିତ ମନ୍ଦିରକୁ ବିଜେ କରୁଥିଲେ । ପୁରୀପଥରେ ଶିଶୁପାଳଗଡ଼ଠାରୁ ସେମାନେ ସେବକମାନଙ୍କଦ୍ୱାରା ଅଭିନନ୍ଦିତ ହୋଇ ମନ୍ଦିରକୁ ଆସୁଥିଲେ । ଉତ୍ତରଦିଗରୁ କଟକଠାରୁ ଆସିଲେ ରାମେଶ୍ୱରଠାରେ ସେମାନଙ୍କର ଛତା ତ୍ରାସ ପରିବର୍ତ୍ତନ ହେଉଥିଲା । ସେମାନଙ୍କର ଆଗମନ ସମୟରେ ସେବକ ଓ ଅନ୍ୟାନ୍ୟ ଲୋକମାନେ ନିଜର ହାରିଗୁହାରି ଜଣାଉଥିଲେ । ସେମାନେ ମହାପ୍ରଭୁଙ୍କ ନୀତି ସେବାପୂଜାର ସମ୍ବାଦ ବୁଝୁଥିଲେ । ରଥଯାତ୍ରା, ଶିବରାତ୍ରି ପ୍ରଭୃତି ସମୟରେ ସେମାନଙ୍କର ଆଗମନ ବାଧ୍ୟତାମୂଳକ ଥିଲା । ସେମାନେ ଭୁବନେଶ୍ୱରର କେଉଁଠାରେ ରହୁଥିଲେ ତାହା ଜଣାଯାଏ ନାହିଁ । ଏହିପରି ସାମୟିକ ଆଗମନ ବ୍ୟତୀତ ସେମାନେ ଭୁବନେଶ୍ୱର ପ୍ରତି ବିଶେଷ ଦୃଷ୍ଟି ଦେଉନଥିଲେ । ପୁରୀ ସେମାନଙ୍କର ପ୍ରିୟସ୍ଥଳୀ ଥିଲା । ସେମାନଙ୍କ ସମୟରେ ପ୍ରାଚୀନ ଭୂବୃତ୍ତିଗୁଡ଼ିକ ବହୁ ପରିମାଣରେ କମି ଯାଇଥିଲା । ଅନେକ ଜମିବାଡ଼ି କର୍ମଚାରୀମାନେ ଆତ୍ମସାତ୍ କରିଥିଲେ । ଭୋଇବଂଶ ରାଜାମାନଙ୍କ ରାଜତ୍ୱ ସମୟରେ ଭୁବନେଶ୍ୱର ଏହିପରି ଅବନତି ପଥରେ କ୍ରମଶଃ ଗତି କରୁଥିଲା ।

**ପ୍ରକୃତିର ଧ୍ୱଂସଲୀଳା:** ରାଜଶକ୍ତି ହ୍ରାସ ହୋଇଯିବାରୁ ଖଣ୍ଡପାଇକମାନେ ମଧ୍ୟ ଅନେକ ସମୟରେ ଚୋରି କରୁଥିଲେ । ପଠାଣ, ମୋଗଲ ଓ ମରହଟ୍ଟାମାନଙ୍କର ଅତ୍ୟାଚାର ଏବଂ ଭୋଇବଂଶର ଉଦାସୀନତାପରି ପ୍ରକୃତିର ସର୍ବବିଧ୍ୱଂସିନୀ ଶକ୍ତି ମଧ୍ୟ ଏହାର ପତନର ଗୋଟିଏ ପ୍ରଧାନ କାରଣ । ସହସ୍ରମାନବର ଶକ୍ତି ପ୍ରକୃତିଶକ୍ତି ସମ୍ମୁଖରେ ଅତି ନଗଣ୍ୟ । ମିଶର, ପାରସ୍ୟ ଓ ଭାରତର ଶତ ଶତ କୀର୍ତ୍ତି ପ୍ରାକୃତିକ ପ୍ରକ୍ରିୟା ଦ୍ୱାରା ନଷ୍ଟ ହୋଇଯାଇଛି ।

ସର୍ବଧ୍ୱଂସୀ ବଜ୍ର, ପ୍ରଚଣ୍ଡ ରୌଦ୍ର, ପ୍ରବଳ ବୃଷ୍ଟି, ଭୀଷଣ ଝଞ୍ଜା ଆଦି ପ୍ରାକୃତିକ ଶକ୍ତିଦ୍ୱାରା ଅନେକ ମନ୍ଦିର ପ୍ରାସାଦ ଭଗ୍ନ ହୋଇଥିବାର

ଜଣାଯାଏ । ପରିଶେଷରେ ପାଷାଣଭେଦୀ ଉଦ୍ଭିଦ ପ୍ରାଚୀନକୀର୍ତ୍ତିମାନଙ୍କର ପ୍ରଧାନଶତ୍ରୁ । ପରିତ୍ୟକ୍ତ ମନ୍ଦିରମାନଙ୍କର ଜୀର୍ଣ୍ଣସଂସ୍କାର ନ ହେବା ଦ୍ୱାରା ଫାଟିଥିବା ସ୍ଥାନ ମାନଙ୍କରେ ପ୍ରବଳଦ୍ରୁମ ଓ ପ୍ରସ୍ତରଭେଦୀ ବୃକ୍ଷମାନ ଉତ୍ପତ୍ତି ଲାଭକରି ଅତି ଅଳ୍ପଦିନ ମଧ୍ୟରେ ମନ୍ଦିରକୁ ନଷ୍ଟ କରିଦିଅନ୍ତି । ଭୁବନେଶ୍ୱରର ଅଧିକାଂଶ ମନ୍ଦିର ପ୍ରସ୍ତରଭେଦୀଦ୍ୱାରା ନଷ୍ଟ ହୋଇଥିବାର ଦେଖାଯାଏ । ମାନବ ପ୍ରକୃତିର ଶକ୍ତିକୁ ଅବରୋଧକରି ନିଜର କଳା କୌଶଳ ଓ ବୁଦ୍ଧିମତ୍ତା ଦ୍ୱାରା ପ୍ରକାଣ୍ଡ କୀର୍ତ୍ତିମାନ ସ୍ଥାପନ କରିଥାଏ । କିନ୍ତୁ ମାନବଶକ୍ତି କ୍ଷୀଣ ହେବାମାତ୍ରେ ପ୍ରକୃତି ନିଜର ଧ୍ୱଂସଲୀଳା ଆରମ୍ଭ କରିଥାଏ । ଏହି ସମସ୍ତ କାରଣରୁ ଇଂରେଜମାନଙ୍କ ଆଗମନ ସମୟକୁ ଭୁବନେଶ୍ୱର ଭୋଳାନାଥଙ୍କର ପ୍ରିୟାତିପ୍ରିୟ ଶଶ୍ମାନରେ ପରିଣତ ହୋଇଥିଲା ।

**ଖଣ୍ଡମାନଙ୍କ ଚୋରି:** ନୂଆପଲ୍ଲୀର ନିଃଶଙ୍କରାୟ ଓ ଲୋକମାନଙ୍କଦ୍ୱାରା ଅର୍ଥଲୋଭ ହେତୁ ମନ୍ଦିରମାନଙ୍କ ଦେହରୁ ମୂର୍ତ୍ତି ଓ ପଥରମାନ ଅପହୃତ ହୋଇ ବିଦେଶରେ ବିକ୍ରି ହେଉଥିଲା । ଏହାଦ୍ୱାରା ମନ୍ଦିରଗୁଡ଼ିକ କ୍ରମଶଃ ଶ୍ରୀହୀନ ହୋଇଯାଇଥିଲେ । ଇଂରେଜମାନଙ୍କର ଆଗମନ ସମୟକୁ ଭୁବନେଶ୍ୱର ଗୋଟିଏ ଶ୍ମଶାନ ଆକାର ଧାରଣ କରିଥିଲା । ଖଣ୍ଡାଚଳଠାରୁ କୁଣ୍ଡଳେଶ୍ୱର ଓ ବାରାହୀଦେବୀଠାରୁ ବହିରଙ୍ଗେଶ୍ୱର ପର୍ଯ୍ୟନ୍ତ ବିସ୍ତୃତ ବିରାଟ ଭୁବନେଶ୍ୱର କ୍ଷେତ୍ର କ୍ରମଶଃ ହ୍ରାସ ହୋଇ ଲିଙ୍ଗରାଜଙ୍କଠାରୁ ଗୋଡ଼ିପୋଖରୀ ଓ ବିନ୍ଦୁସାଗରର ପୂର୍ବ ତଟରୁ ବିନାୟକ ଦଣ୍ଡା ସୀମା ମଧ୍ୟରେ ଆବଦ୍ଧ ରହିଲା ।

ଇଂରେଜମାନଙ୍କ ଆଗମନ ଦ୍ୱାରା ଉତ୍କଳ ଇତିହାସରେ ନବଯୁଗର ସୂଚନା ହେଲା । ଦେଶରେ କ୍ରମେ କ୍ରମେ ଶାନ୍ତି ସ୍ଥାପିତ ହେଲା ଓ ଶତ୍ରୁଭୟ କ୍ରମଶଃ ବିଦୂରିତ ହେଲା ଓ ପ୍ରଥମେ ମନ୍ଦିରର କୌଣସି ଉନ୍ନତି ନ ହେଲେ ମଧ୍ୟ ପରବର୍ତ୍ତୀ କାଳରେ ଏଠାରେ ବିଶେଷ ଉନ୍ନତି ହୋଇଥିଲା ।



# ଏକାଦଶ ଅଧ୍ୟାୟ

## ବ୍ରିଟିଶ୍ ଶାସନରେ ଭୁବନେଶ୍ୱର

୧୮୦୩ ସାଲରେ ପ୍ରଥମେ ଓଡ଼ିଶା ଇଂରେଜମାନଙ୍କର ହସ୍ତଗତ ହୋଇଥିଲା । କିନ୍ତୁ ଖୁରୁଧା ଇଂରେଜମାନଙ୍କର ଅଧୀନତା ସ୍ୱୀକାର କରିନଥିଲା । ପ୍ରାୟ ୧୫ବର୍ଷ ପର୍ଯ୍ୟନ୍ତ ଖୋରଧାର ପାଇକମାନେ ମେଳି କରିଥିଲେ । ୧୮୨୫ ବେଳକୁ ଖୋରଧାରେ ଶାନ୍ତି ସ୍ଥାପିତ ହୋଇଥିଲା । ଇଂରେଜରାଜତ୍ୱ ଆରମ୍ଭରେ ସେମାନେ ଭୁବନେଶ୍ୱର ପ୍ରତି ଆଦୌ ଦୃଷ୍ଟି ଦେଉନଥିଲେ । ସେ ସମୟରେ ଭୁବନେଶ୍ୱର ଗୋଟିଏ ବିରାଟ ଶ୍ମଶାନରେ ପରିଣତ ଥିଲା । ଭୁବନେଶ୍ୱରର ଚତୁର୍ଦ୍ଦିଗ ନିବିଡ଼ ଅରଣ୍ୟରେ ପରିପୂର୍ଣ୍ଣ ଥିଲା । ସମୟ ସମୟରେ ପୁରୀଯାତ୍ରୀମାନେ ଏଠାକୁ ଆସୁଥିଲେ ।

୧୮୦୩ଠାରୁ ଓଡ଼ିଶା ଇଂରେଜମାନଙ୍କ ଦ୍ୱାରା ଅଧିକୃତ ଓ ଶାସିତ ହେଉଥିଲେ ସୁଦ୍ଧା ୧୮୯୯ ପର୍ଯ୍ୟନ୍ତ ଭୁବନେଶ୍ୱରର କୌଣସି ମନ୍ଦିରର ମରାମତି ହୋଇନଥିଲା । ଇଂରେଜ ରାଜତ୍ୱର ଏହି ସମୟରେ ଓଡ଼ିଆମାନଙ୍କ ପାଇଁ ସ୍ୱତନ୍ତ୍ର ପ୍ରଦେଶ ନଥିଲା । ଓଡ଼ିଶା ସେତେବେଳେ ବଙ୍ଗଳାର ଗୋଟିଏ ବିଭାଗରୂପେ ଶାସିତ ହେଉଥିଲା । ତେଣୁ ପ୍ରାୟ ୧୦୦ବର୍ଷ ପର୍ଯ୍ୟନ୍ତ ବଙ୍ଗର ଗଭର୍ଣ୍ଣରମାନେ ଓଡ଼ିଶା ପ୍ରତି ବିଶେଷ ଦୃଷ୍ଟି ଦେଇ ନଥିଲେ । ଓଡ଼ିଶାର ସୌଭାଗ୍ୟକୁ ତତ୍‌କାଳୀନ ବଂଗର ଗଭର୍ଣ୍ଣର Sir John Woodburn ସାହେବଙ୍କର ଦୃଷ୍ଟି ଉତ୍କଳର ପ୍ରାଚୀନ କୀର୍ତ୍ତିମାନଙ୍କ ପ୍ରତି ଆକୃଷ୍ଟ ହୋଇଥିଲା । ଉତ୍କଳରେ ଅସଂଖ୍ୟ ପ୍ରାଚୀନ ମନ୍ଦିର ଓ ପ୍ରାସାଦ ଭଗ୍ନଦଶାପନ୍ନ ହୋଇଥିବା ଦେଖି ତାଙ୍କ ମନରେ ଘୋର ଦୁଃଖ ହେଲା । ମନ୍ଦିରମାନଙ୍କର ଜୀର୍ଣ୍ଣ ସଂସ୍କାର ଅତ୍ୟନ୍ତ ଆବଶ୍ୟକ ବୋଲି ସେ ସରକାରଙ୍କୁ ଜଣାଇଲେ । ତଦାନୀନ୍ତନ ଭାରତବର୍ଷର ବଡ଼ଲାଟ ଲର୍ଡ୍ କର୍ଜନ ଉତ୍କଳପ୍ରତି ବିଶେଷ ଆଦର ଦେଖାଇଥିଲେ । ଓଡ଼ିଆଜାତିର ପ୍ରାଚୀନ ଓ ବିରାଟ ଇତିହାସ ଶ୍ରବଣ କରି ସେ ଓଡ଼ିଆମାନଙ୍କର ଉପକାର ସାଧନ କରିବାପାଇଁ ଯଥାସାଧ ଯତ୍ନ କରିଥିଲେ । ତାଙ୍କର ସୁଦୃଷ୍ଟିଲାଭ କରିବାରୁ ଉତ୍କଳର ଅନେକ ମନ୍ଦିରର ଜୀର୍ଣ୍ଣସଂସ୍କାର ହୋଇଥିଲା । ଅଦ୍ୟାପି ଭୁବନେଶ୍ୱରର ଲୋକମାନେ ଉଡ୍‌ବର୍ଣ୍ଣ ସାହେବଙ୍କର ନାମ ଉଚ୍ଚାରଣ କରି ନିଜକୁ ଗୌରବାନ୍ୱିତ ମନେକରନ୍ତି ।

ତାଙ୍କଯୋଗୁ ଭୁବନେଶ୍ୱରର ଅନେକ ପ୍ରାଚୀନ ଓ ବହୁ କାରୁକାର୍ଯ୍ୟଖଚିତ ମନ୍ଦିର ମରାମତି ହୋଇଥିଲା । ଉଡ୍‌ବର୍ଣ୍ଣ ୧୮୯୮ ରୁ ୧୯୦୨ ପର୍ଯ୍ୟନ୍ତ ଲାଟଥିଲେ । ସେହିପରି ଲର୍ଡ଼ କର୍ଜନ ୧୮୯୯ରୁ ୧୯୦୫ ପର୍ଯ୍ୟନ୍ତ ବଡ଼ଲାଟ ଥିଲେ । କର୍ଜନଙ୍କ ପ୍ରବଳ ଚେଷ୍ଟାଦ୍ୱାରା "Ancient-monument-protection Act" ବା ପ୍ରାଚୀନ କୀର୍ତ୍ତି ସଂରକ୍ଷଣ ଆଇନ୍ ପାସ୍ ହୋଇ ଯାଇଥିଲା । ଏହାଦ୍ୱାରା ସରକାର ଭାରତର ପ୍ରାଚୀନ କୀର୍ତ୍ତିମାନଙ୍କର ସଂରକ୍ଷଣ ପାଇଁ ବାଧ ହେଲେ । ଏଥିପାଇଁ ଲର୍ଡ଼ କର୍ଜନ ଭାରତୀୟମାନଙ୍କର ପ୍ରାତଃସ୍ମରଣୀୟ ହେଲେ ।

ବଙ୍ଗଦେଶର ଛୋଟଲାଟ୍ ସାର୍ ଜନ୍ ଉଡ୍‌ବର୍ଣ୍ଣ ୧୮୯୮ ଖ୍ରୀଷ୍ଟାବ୍ଦରେ ଭୁବନେଶ୍ୱରକୁ ଆସିଥିଲେ । ଭଗ୍ନଦଶାପନ୍ନ ମନ୍ଦିରଗୁଡ଼ିକ ପୁରାତତ୍ତ୍ୱ ହିସାବରେ ଯେ କେତେ ମୂଲ୍ୟବାନ ତାହା ସମ୍ୟକ ଉପଲବ୍ଧିକରି ସେ ପ୍ରଥମେ ବ୍ରହ୍ମେଶ୍ୱର, ରାଜାରାଣୀ, ମୁକ୍ତେଶ୍ୱର ଓ ପରଶୁରାମେଶ୍ୱର ଏହି ଚାରୋଟି ମନ୍ଦିରର ଜୀର୍ଣ୍ଣସଂସ୍କାରର ଆନୁମାନିକ ବ୍ୟୟ ନିରୂପଣ କରିବାକୁ ଆଦେଶ ଦେଲେ । ତତ୍‌ସମ୍ବନ୍ଧୀୟ କାଗଜପତ୍ରାଦି ତାଙ୍କର ହସ୍ତଗତ ହେଲାରୁ ସମସ୍ତ ଖରଚା ମଞ୍ଜୁର କରିଥିଲେ । ଏହି ଉପଲକ୍ଷରେ ସେ ସ୍ଥାନୀୟ ହିନ୍ଦୁ ଭଦ୍ରଲୋକମାନଙ୍କୁ ଜଣାଇଦେଲେ ଯେ ପ୍ରତିବର୍ଷ ୪୦୦୦ଟଙ୍କା କରି ମରାମତ ଖର୍ଚ୍ଚ ଦେବେ । (Report of the Repairs by M H Arnott)

ପ୍ରଥମ ଚାରୋଟି ମନ୍ଦିର ମରାମତି କରିବାପାଇଁ ୧୬,୦୧୯ ଟଙ୍କା ବ୍ୟୟିତ ହୋଇଥିଲା । ଲିଙ୍ଗରାଜମନ୍ଦିରର ଜୀର୍ଣ୍ଣସଂସ୍କାର କାର୍ଯ୍ୟରେ ଟ.୨,୮୬୧ଟଙ୍କା ଲାଗିଥିଲା । Woodburn ସାହେବ ୧୯୦୦ ଖ୍ରୀଷ୍ଟାବ୍ଦ ଡିସେମ୍ବରଠାରୁ ପୁନର୍ବାର ଭୁବନେଶ୍ୱର ଦର୍ଶନକରିବାକୁ ଆସିଥିଲେ । ତାଙ୍କର ଏହି ଦ୍ୱିତୀୟବାର ଆଗମନ ଉପଲକ୍ଷେ କେତେକ କ୍ଷୁଦ୍ର ମନ୍ଦିରର ମରାମତିର ବ୍ୟବସ୍ଥା ହୋଇଥିଲା । ସେ ୧୯୦୨ ଅଗଷ୍ଟମାସରେ ଶେଷବାର ଭୁବନେଶ୍ୱର ଆସିଥିଲେ । ତାଙ୍କର କାର୍ଯ୍ୟକାଳରେ ଖଣ୍ଡଗିରି ଓ ଉଦୟଗିରିର ଗୁମ୍ଫାଗୁଡ଼ିକ ସଂସ୍କୃତ ଓ ସୁରକ୍ଷିତ ହୋଇଥିଲା । ଏହାଛଡ଼ା ୮,୪୦୭ଟଙ୍କା ବ୍ୟୟରେ ସହସ୍ରଲିଙ୍ଗ ସରୋବର, ସାରିଦେଉଳ ଓ ଭାସ୍କରେଶ୍ୱର ମନ୍ଦିର ଉତ୍ତମରୂପେ ମରାମତି କରାହୋଇଥିଲା ।'

୧୮୯୯ଠାରୁ ଭୁବନେଶ୍ୱରର ବ୍ରହ୍ମେଶ୍ୱର, ରାଜାରାଣୀ, ମୁକ୍ତେଶ୍ୱର, ଭାସ୍କରେଶ୍ୱର, ସିଦ୍ଧେଶ୍ୱର, ପରଶୁରାମେଶ୍ୱର, ସାରୀ, ମେଘେଶ୍ୱର, ବରୁଣେଶ୍ୱର, ଚିତ୍ରକର୍ଣ୍ଣୀ ପ୍ରଭୃତି ମନ୍ଦିର ଓ ଦେବୀପାଦହରା ପୁଷ୍କରିଣୀର ମରାମତି କାର୍ଯ୍ୟ ହୋଇଥିଲା । ପି.ଡବଲ୍ୟୁ.ଡି. ସଂସ୍ଥାଦ୍ୱାରା ଏହି ସମୟରେ ଟ.୩,୪୬୫ଙ୍କା ବ୍ୟୟକରି ପରଶୁରାମେଶ୍ୱରରେ ମରାମତି ହୋଇଥିଲା । ସେହିପରି ଉକ୍ତ ସଂସ୍ଥା ଦ୍ୱାରା ମୁକ୍ତେଶ୍ୱରରେ ମରାମତି ପାଇଁ ଟ.୪,୨୬୬ଙ୍କା ଓ ବ୍ରହ୍ମେଶ୍ୱର ମରାମତି ପାଇଁ ଟ.୫,୧୯୨ଙ୍କା ଖର୍ଚ୍ଚ ହୋଇଥିଲା ।

ଏହାଦ୍ୱାରା ଭୁବନେଶ୍ୱରର ବ୍ରହ୍ମେଶ୍ୱର, ମେଘେଶ୍ୱର, ମୁକ୍ତେଶ୍ୱର, ପର୍ଶୁରାମେଶ୍ୱର, ରାଜାରାଣୀ ପ୍ରଭୃତି ଅନେକ ପ୍ରାଚୀନମନ୍ଦିରର ମରାମତି ହୋଇଥିଲା ସତ୍ୟ, କିନ୍ତୁ ଭାରତର ଶ୍ରେଷ୍ଠ ଲିଙ୍ଗରାଜଙ୍କ ମନ୍ଦିର ଓ ଅପୂର୍ବ କାରୁକାର୍ଯ୍ୟଶୋଭିତ ପାର୍ବତୀ ଓ ଅନନ୍ତ ବାସୁଦେବ ପ୍ରଭୃତି ମନ୍ଦିର ପୁରାଣପ୍ରସିଦ୍ଧ ବିନ୍ଦୁସାଗରର ଜୀର୍ଣ୍ଣସଂସ୍କାର ହୋଇ ପାରିନଥିଲା । ଏହି ମନ୍ଦିରମାନଙ୍କର ସଂସ୍କାର ଏକାନ୍ତ ଆବଶ୍ୟକ ଥିଲା । କିନ୍ତୁ ଏହି କେତେକ ମନ୍ଦିରର ଜୀର୍ଣ୍ଣସଂସ୍କାରଦ୍ୱାରା ଭାରତର ପ୍ରସିଦ୍ଧବ୍ୟକ୍ତି ବିଶେଷତଃ ସ୍ୱନାମଧନ୍ୟ ବଂଗୀୟ ଯାତ୍ରୀମାନଙ୍କର ଦୃଷ୍ଟି ଅସଂସ୍କୃତ ଲିଙ୍ଗରାଜ, ପାର୍ବତୀ, ବାସୁଦେବ ପ୍ରଭୃତି ମନ୍ଦିରମାନଙ୍କ ପ୍ରତି ଆକୃଷ୍ଟ ହୋଇଥିଲା । ୧୯୧୬ ମସିହା ସେପ୍ଟେମ୍ବର ମାସରେ କାଶିମବଜାର ମହାରାଜା ସ୍ୱର୍ଗୀୟ ମନୀନ୍ଦ୍ରଚନ୍ଦ୍ର ନନ୍ଦୀଙ୍କ ଅକ୍ଳାନ୍ତ ପରିଶ୍ରମ ଓ ତତ୍‌କାଳୀନ ପୁରୀଜିଲ୍ଲା ମାଜିଷ୍ଟ୍ରେଟ S.N. Mazumdarଙ୍କ ସହାନୁଭୂତି ଓ ସହଯୋଗ ଫଳରେ ଗୋଟିଏ 'ମନ୍ଦିର ଜୀର୍ଣ୍ଣ ସଂସ୍କାର ସମିତି' ଗଠିତ ହୋଇଥିଲା । ଜିଲ୍ଲା ମାଜିଷ୍ଟ୍ରେଟ୍ ଏହି ସମିତିର ସଭାପତି ଥିଲେ । ସେମାନେ ଲିଙ୍ଗରାଜ, ପାର୍ବତୀ ଓ ଅନନ୍ତ ବାସୁଦେବ ଏବଂ ବିନ୍ଦୁସାଗରର ଜୀର୍ଣ୍ଣ ସଂସ୍କାର କରିବାପାଇଁ ବ୍ରତୀ ହୋଇଥିଲେ । ସେମାନେ ଏଥିପ୍ରତି ସରକାରଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ । କିନ୍ତୁ ସରକାର ଏଥିରେ ସମ୍ମତି ପ୍ରକାଶ କରି ନଥିଲେ । ସରକାରଙ୍କ ମତଥିଲା ଯେ ବିପୁଳ ଅର୍ଥ ବ୍ୟୟକରି ପ୍ରାଚୀନ ମନ୍ଦିରମାନଙ୍କର ସଂସ୍କାର କାର୍ଯ୍ୟ କରିବା ଅନାବଶ୍ୟକ । ପୁନଶ୍ଚ ସରକାର କହିଲେ ଯେ ସହସ୍ର ସହସ୍ର ମୁଦ୍ରା ବ୍ୟୟକରି ମନ୍ଦିରମାନଙ୍କର ସଂସ୍କାରକାର୍ଯ୍ୟ କଲେ ମଧ୍ୟ ଭବିଷ୍ୟତରେ ଗୋଟିଏ ଚିରସ୍ଥାୟୀ ମନ୍ଦିର

ସଂସ୍କାର-ପାଣ୍ଠି ନ ରହିବା ଦ୍ୱାରା ସଂସ୍କାରକାର୍ଯ୍ୟ ଅଳ୍ପଦିନରେ ବ୍ୟର୍ଥ ହୋଇଯିବ । ଏହି ଯୁକ୍ତିଗୁଡ଼ିକ ଅବଶ୍ୟ ଗ୍ରାହ୍ୟନୁହେଁ । ଭାରତ ସରକାର ଲକ୍ଷ ଲକ୍ଷ ଟଙ୍କା ବ୍ୟୟକରି ଭାରତର ଅନ୍ୟାନ୍ୟ ପ୍ରଦେଶର ପ୍ରାଚୀନ କୀର୍ତ୍ତିମାନଙ୍କର ସଂସ୍କାର କାର୍ଯ୍ୟ କରିଛନ୍ତି । ଉତ୍କଳର ଏହି ପ୍ରାଚୀନ ମନ୍ଦିରମାନେ ଭାରତୀୟ ଶିଳ୍ପର ଶ୍ରେଷ୍ଠ ସମ୍ପଦ । ତେଣୁ ଏମାନଙ୍କର ସଂସ୍କାର ସର୍ବାଦୌ ଆବଶ୍ୟକ ଥିଲା । ପରନ୍ତୁ ମନ୍ଦିରଗୁଡ଼ିକ ସଂସ୍କାରକାର୍ଯ୍ୟରେ ଯେତେ ଅର୍ଥ ଆବଶ୍ୟକ ତାହା ଅନ୍ୟପ୍ରଦେଶର ଅସଂସ୍କାର କାର୍ଯ୍ୟରେ ବ୍ୟୟିତ ଅର୍ଥ ତୁଳନାରେ ଅତି ନଗଣ୍ୟ ।

ପୁନଶ୍ଚ ମନ୍ଦିରଗୁଡ଼ିକ ଥରେ ମରାମତ ହେଲେ ଶତ ଶତ ବର୍ଷ ପର୍ଯ୍ୟନ୍ତ ଏମାନଙ୍କ ସଂସ୍କାର ଆବଶ୍ୟକ ହୁଏନାହିଁ । କିନ୍ତୁ ସରକାର ବାହାଦୁର ଏ ସମସ୍ତ ଯୁକ୍ତିପ୍ରତି ଉପେକ୍ଷା ପ୍ରଦର୍ଶନ କରିଥିଲେ । ତାଙ୍କର ଉଦାସୀନତା ଯୋଗୁ ଏହିକାର୍ଯ୍ୟ ଆହୁରି ଚାରିବର୍ଷ ପର୍ଯ୍ୟନ୍ତ ବାକୀ ରହିଲା । ଭଗବାନଙ୍କ ବିରାଟ ରାଜ୍ୟରେ ମାନବର ସଦଭିପ୍ରାୟ ଯେକୌଣସି ସମୟରେ ପୂର୍ଣ୍ଣ ହୋଇଥାଏ । ଏଥିପାଇଁ ମହାପୁରୁଷମାନେ ତାଙ୍କ ମୃତ୍ୟୁପରେ ସର୍ବତ୍ର ଆଦୃତ ହୋଇଥାନ୍ତି । ୧୯୨୬ ସାଲରେ ଭୁବନେଶ୍ୱରର ଲିଙ୍ଗରାଜ ମନ୍ଦିରର ଜୀର୍ଣ୍ଣସଂସ୍କାର ପାଇଁ ସରକାରଙ୍କ ସୁଦୃଷ୍ଟି ଆକୃଷ୍ଟ ହୋଇଥିଲା ।

୧୯୨୬ରୁ ୧୯୨୯ପର୍ଯ୍ୟନ୍ତ ସମୁଦ୍ଧାର କାର୍ଯ୍ୟରେ ନିୟୋଜିତ ପାଣ୍ଠିର ବିବରଣୀ ହେଲା-

ଜଗନ୍ନାଥ ମନ୍ଦିର ସଂସ୍କାରକୋଷରୁ ଟ.୧୦,୦୦୦/-

କଳାହାଣ୍ଡି ରାଜ୍ୟାଧିପତି .........ଟ. ୮,୦୦୦/-

ପୁରୀ ଏମାର ମଠ ...............ଟ. ୫,୦୦୦/-

ନୟାଗଡ଼ ରାଜା ..................ଟ. ୫,୦୦୦/-

ପାଟଣା ରାଜା ....................ଟ. ୩,୦୦୦/-

ବାଲେଶ୍ୱରର ଜନୈକ ସାମନ୍ତ......ଟ. ୩,୦୦୦/-

**ମନ୍ଦିରବେଢା ସଂସ୍କାର ସମିତି :** ଏହି ସମିତିଟି ସୁଯୋଗ୍ୟ ପଣ୍ଡିତ ରତ୍ନାକର ଗରାବଡୁଙ୍କ ଉଦ୍ୟମରେ ଗଠିତ ହୋଇଥିଲା । ଏଥିରେ କଟକର ଭୁବନାନନ୍ଦ

ଦାସ, ବିଚିତ୍ରାନନ୍ଦ ଦାସ, ପ୍ରାଣକୃଷ୍ଣ ପରିଜା ଓ ବିପିନବିହାରୀ ରାୟ ଏବଂ କେତେକ ବଂଗାଳୀ ଭଦ୍ରଲୋକ ସାହାଯ୍ୟ କରିଥିଲେ । ଏହି ସମିତିଦ୍ୱାରା ମଳୟଗିରି ଓ ବେଢାର ଦକ୍ଷିଣ ପାଖରୁ ମାଟି ଓ ବଜା କଢା ହୋଇ ବେଢା ବାହାରେ ପକା ହୋଇଥିଲା ।

**୧୯୨୬-୧୯୨୯ମସିହା ଜୀର୍ଣ୍ଣସଂସ୍କାର :** ୧୯୨୬ଠାରୁ ୧୯୨୯ ପର୍ଯ୍ୟନ୍ତ ମନ୍ଦିରବେଢାରେ ଥିବା ଲିଙ୍ଗରାଜମନ୍ଦିର, ପାର୍ବତୀମନ୍ଦିର ପ୍ରଭୃତିର ସଂସ୍କାର କାର୍ଯ୍ୟ ହେଲା । ସଂସ୍କାର କାର୍ଯ୍ୟପ୍ରାୟ ୪ବର୍ଷକାଳ ଚାଲିଲା । ମୁଁ ମୋର ଅବକାଶ ସମୟରେ ଏହାର ସମସ୍ତ ଖବର ରଖୁଥିଲି । ଲିଙ୍ଗରାଜମନ୍ଦିର ବିମାନର ଚାରିପାଖରେ ଗୋଟିଏ ଚାର ଓ ଆଠଟା ଭାଡ଼ି ପ୍ରାୟ ୮୦୦୦ଟଙ୍କା ବ୍ୟୟରେ ନିର୍ମିତ ହୋଇଥିଲା । ବିମାନର ବାହାର ପାଖ ଭାଙ୍ଗିଯାଇଥିବା ସ୍ଥାନଗୁଡ଼ିକ ଯୋଡ଼ା ହୋଇଥିଲା । ମନ୍ଦିର ବେକୀଠାରୁ କଳସ ପର୍ଯ୍ୟନ୍ତ ଚୂନ ଛଡ଼ାଯାଇ ସିମେଣ୍ଟ ପଏଣ୍ଟିଂ ହୋଇଥିଲା । ଗଣେଶ ଓ କାର୍ତ୍ତିକେୟ ପାର୍ଶ୍ୱଦେବତା ଦୁଇଟିଙ୍କର ମନ୍ଦିରଗୁଡ଼ିକ ସଂପୂର୍ଣ୍ଣ ରୂପେ ଭଙ୍ଗାଯାଇ ନୂତନ ଭାବରେ ନିର୍ମିତ ହୋଇଥିଲା । ଉତ୍ତର ପାର୍ଶ୍ୱସ୍ଥ-ପାର୍ବତୀ ମନ୍ଦିରର ସାମାନ୍ୟ ମରାମତି ହୋଇଥିଲା । ବିମାନର ଭିତରପାଖ ଗର୍ଭମୁଦ୍ରାପର୍ଯ୍ୟନ୍ତ ସିଡ଼ିହୋଇ ମରାମତି ହୋଇଥିଲା । ବିମାନର ଭିତର କବାଟ ପର୍ଯ୍ୟନ୍ତ ମରାମତି ହୋଇଥିଲା । ମରାମତି ସମୟରେ ଲିଙ୍ଗରାଜଙ୍କ ବିମାନଭିତରେ ଥିବା ସୂକ୍ଷ୍ମ କାରୁକାର୍ଯ୍ୟଶୋଭିତ କାଷ୍ଠ ଚାନ୍ଦୁଆଟି ଭଙ୍ଗା ହୋଇଥିଲା । ବିମାନ ଓ ଜଗମୋହନ ଆଡ଼କୁ ଯେଉଁ ଦ୍ୱାର ଅଛି ତାହାର ଉପର ପାଟଗୁଡ଼ିକ ଏକାବେଳକେ ଦ୍ୱିଖଣ୍ଡ ହୋଇଯାଇ ପତନୋନ୍ମୁଖ ଅବସ୍ଥାରେ ଥିଲା । ଦ୍ୱାର ଦୁଇପାଖରେ ଦୁଇ ଧାଡ଼ି ଲୁହାକଡ଼ି ଦିଆହୋଇ ଓ ପାଟତଳେ ଲଗାଲଗି ହୋଇ ଏକଧାଡ଼ି ଲୁହାକଡ଼ି ଦିଆହୋଇ ତା ଉପରେ ଗୋଡ଼ି ଓ ସିମେଣ୍ଟର କାମ ହୋଇଥିଲା । ଏହାଦ୍ୱାରା ଦ୍ୱାରଦେଶ ମଜଭୁତ ହୋଇଗଲା । ଦ୍ୱାରଟି ପ୍ରାୟ ହଜାରେ ବର୍ଷ ପର୍ଯ୍ୟନ୍ତ ନଷ୍ଟ ହେବାର କୌଣସି ସମ୍ଭାବନା ନାହିଁ । ଜଗମୋହନର ବାହାରପାଖ ସାମାନ୍ୟ କେତେକାଂଶ ମରାମତି ହୋଇଥିଲା । କିନ୍ତୁ ଭିତରପାଖରେ ଯେଉଁ ମରାମତି ହୋଇଛି ତାହା ସୁଦୃଢ ଓ ଜଗମୋହନକୁ ବହୁତ ଶତାବ୍ଦୀ ପର୍ଯ୍ୟନ୍ତ ବିପଦରୁ ରକ୍ଷାକରିବ । ଜଗମୋହନ

ଭିତରେ ୪ଟି ସ୍ତମ୍ଭ ଭୂମିଠାରୁ ପୀଢ ପର୍ଯ୍ୟନ୍ତ ନିର୍ମିତ ହୋଇଥିଲା । କିନ୍ତୁ କାଳକ୍ରମେ ଉକ୍ତ ଚାରୋଟି ସ୍ତମ୍ଭର ଅନେକାଂଶ ଭାଙ୍ଗି ଯାଇଥିଲା । ସ୍ତମ୍ଭ ଚାରୋଟି ଉପରେ ମନ୍ଦିରର ସମସ୍ତ ଭାର ନ୍ୟସ୍ତ । ପ୍ରଥମେ ଏଗୁଡ଼ିକର ଭଗ୍ନାଙ୍ଗଗୁଡ଼ିକ ଯୋଡ଼ା ହୋଇଥିଲା । ତାହାପରେ ଖୁମ୍ବର ଚାରିପାଖରେ ଚାରିଧାଡ଼ି ଲୁହାକଡ଼ି ଭୂମିଠାରୁ ପୀଢ ପର୍ଯ୍ୟନ୍ତ ଦିଆ ହୋଇଥିଲା ଫାଙ୍କସ୍ଥାନ ମାନଙ୍କରେ ଗୋଡ଼ି ଓ ସିମେଣ୍ଟ ଦିଆ ହୋଇଥିଲା । ଏଗୁଡ଼ିକ ଏପରି ଘନ ସନ୍ନିବିଷ୍ଟ ଓ ସୁଦୃଢ ଯେ ଜଗମୋହନର ଅଧିକାଂଶ ଭାର ଏହି ଲୌହସ୍ତମ୍ଭମାନଙ୍କ ଉପରେ ପଡ଼ିବ । ତା ପରେ ଲୁହାସ୍ତମ୍ଭର ଚାରିପାଖରେ ପଥର ଘେରଉ ହୋଇଛି । ମନ୍ଦିର ଭଣ୍ଡାରଘରର ଓ ଭିତରପାଖ ଅନେକସ୍ଥାନ ଭାଙ୍ଗିଯାଇଥିଲା । ସେଗୁଡ଼ିକ ମଧ୍ୟ ଏହି ସମୟରେ ମରାମତ ହୋଇଥିଲା । ଜଗମୋହନର ଭିତରପାଖର ସଂସ୍କାରକାର୍ଯ୍ୟ ଅତୀବ ପ୍ରଶଂସନୀୟ । ଏହାଦ୍ୱାରା ମନ୍ଦିରସଂସ୍କାରକଙ୍କ ନାମ ଚିରକାଳ ଉତ୍କଳ ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ରହିବ । ଭୂମିକମ୍ପ ବ୍ୟତୀତ ଅନ୍ୟ କୌଣସି କାରଣରୁ ଜଗମୋହନ ଭିତରପାଖକୁ ଅଜାଡ଼ି ହେବାର ସମ୍ଭାବନା ନାହିଁ । ମୁଁ ନିଜେ ମରାମତି ଆମୂଳଚୂଳ ଦେଖିଛି । ଏହା ସୁଚାରୁରୂପେ ସମ୍ପାଦିତ ହୋଇଛି ଓ ତାହା ବର୍ଣ୍ଣନା କରିବାପାଇଁ ମୋ ଲେଖନୀ ଅକ୍ଷମ । ନାଟମନ୍ଦିରଟି ଅଳ୍ପକାଳ ପୂର୍ବେ ମରାମତି ହୋଇଥିଲା । ତେଣୁ ଏଥିରେ ବିଶେଷ କିଛି ମରାମତି କାର୍ଯ୍ୟ ହୋଇନାହିଁ । ଭୋଗମଣ୍ଡପର ଅବସ୍ଥା ଅତି ଶୋଚନୀୟ ହୋଇଥିଲା । ଭୋଗମଣ୍ଡପଟି ଖଡ଼ିଆକନ୍ଦାରେ ନିର୍ମିତ । ଖଡ଼ିଆକନ୍ଦାର କାର୍ଯ୍ୟ ବହୁକାଳ ସ୍ଥାୟୀ ହୁଏ ନାହିଁ । ଭୋଗମଣ୍ଡପ କେବଳ ୬୦୦ ବର୍ଷ ପୂର୍ବେ ନିର୍ମିତ ହୋଇଥିଲା । ତଥାପି ନିକମା ଓ ନିରସ ପଥରଯୋଗୁ ଏହାର ଅନେକାଂଶ ଭାଙ୍ଗି ପଡ଼ିଥିଲା । କୌଣସି ସମୟରେ ମନ୍ଦିରର ଭଗ୍ନଅଂଶଗୁଡ଼ିକ ଲୁଚାଇବା ପାଇଁ ଏହାର ଚାରିପାଖରେ ଚୂନ ଦିଆଯାଇଥିଲା । ମରାମତି ସମୟରେ ଚୂନ ଛଡ଼ାହେବାରୁ ଏହାର ଅସ୍ଥିକଙ୍କାଳ ଦେଖାଗଲା । ଭୋଗ ମଣ୍ଡପର ବହୁତ ଗୁଡ଼ିଏ ଦ୍ୱାର, କିନ୍ତୁ ସବୁଗୁଡ଼ିକ ଫାଟି ଯାଇଥିଲା । ଭିତରପାଖ ସ୍ତମ୍ଭଗୁଡ଼ିକରେ ମାଟି ଛଟା ହୋଇଥିଲା । ମାଟି ଛଡାଇଦେବାରୁ ସେଗୁଡ଼ିକର ଶୋଚନୀୟ ଅବସ୍ଥା ମଧ୍ୟ ଜଣାପଡ଼ିଲା ।

ସ୍ତମ୍ଭଦ୍ୱାର ଓ ବାହାରପାଖ ଅତି ସୁନ୍ଦର ରୂପେ ମରାମତି ହୋଇଥିଲା । ଗର୍ଭ ମୁଦ୍ରା ନିକଟରେ ଲୁହା, ଗୋଡ଼ି ଓ ସିମେଣ୍ଟର କାମ ହୋଇ ଏହାକୁ ବିଶେଷ ମଜଭୁତ କରିଥିଲା । ଏହି ଦୀର୍ଘକାଳ ମଧ୍ୟରେ ଥରେ ବଜ୍ର ପଡ଼ି ପାର୍ବତୀମନ୍ଦିରର କଳସ ଓ ଦକ୍ଷିଣପାଖର ଗଜସିଂହ ଭାଙ୍ଗିଥିଲା । ମନ୍ଦିର ସଂସ୍କାରକମାନେ ବଜ୍ରପାତରୁ ଲିଙ୍ଗରାଜଙ୍କ ବିରାଟ ମନ୍ଦିରକୁ ରକ୍ଷା କରିବା ଏକାନ୍ତ ଆବଶ୍ୟକ ମନେକରି ମନ୍ଦିରର ନୈଋତ ଓ ବାୟୁକୋଣରେ ଦୁଇଟି କୂଅ ଖୋଳାଇ ବୈଦ୍ୟୁତିକ ଶକ୍ତିଚାଳକ ତମ୍ବାର ଦୁଇଟି ମୋଟାପାତିଆ ମନ୍ଦିରରେ ଆମୂଳଚୂଳ ସଂଶ୍ଳିଷ୍ଟ କଲେ । ତାହା କୂଅଦୁଇଟିରେ ପକାଇ ଦେଲେ ।

**ପାର୍ବତୀ ମନ୍ଦିର** ପାର୍ବତୀମନ୍ଦିରର ଦକ୍ଷିଣଦିଗରେ ପାଦୁକନଳାଠାରୁ ଚଣ୍ଡେଶ୍ୱର ମନ୍ଦିରପର୍ଯ୍ୟନ୍ତ ଛଅହାତ ମୋଟା ଦଶହାତ ଉଚ୍ଚର ଗୋଟିଏ କନ୍ଦା ଓ ମାଙ୍କଡ଼ା ପଥରର ପ୍ରାଚୀର ଥିଲା । ଏହି ପ୍ରାଚୀରଟି ଅତି ସୁଦୃଢ଼ ଥିଲା । ଏହା ସମ୍ଭବତଃ ପରବର୍ତ୍ତୀ କାଳରେ କୌଣସି ରାଜା ବା ଧନାଢ୍ୟବ୍ୟକ୍ତିଙ୍କ ଦ୍ୱାରା ନିର୍ମିତ ହୋଇଥିଲା । ଏହାଦ୍ୱାରା ପାର୍ବତୀମନ୍ଦିର ସାଧାରଣତଃ ଦର୍ଶକ ମାନଙ୍କର ଦୃଷ୍ଟିର ଅନ୍ତରାଳରେ ରହୁଥିଲା । ସଂସ୍କାରସମିତି ଏହି ପ୍ରାଚୀର ରଖିବା ଅନାବଶ୍ୟକ ମନେକରି ଏହାକୁ ସମୂଳେ ଭାଙ୍ଗିପକାଇ ଏହାର ପଥରଗୁଡ଼ିକ ମରାମତି କାର୍ଯ୍ୟରେ ଲଗାଇଥିଲେ । ପାର୍ବତୀ ମନ୍ଦିରର ଜଗମୋହନ ପୀଢ଼ଅଂଶ ଏକାବେଳକେ ଭାଙ୍ଗି ଯାଇଥିଲା । ମନ୍ଦିରସଂସ୍କାର କମିଟି ପୀଢ଼ଅଂଶ ଗଡ଼ଠାରୁ ଭାଙ୍ଗିଦେଇ ପୁନର୍ବାର ଲୁହାଗୋଡ଼ି ସିମେଣ୍ଟର କାମକରି ଲହଡ଼ି ପଥରଗୁଡ଼ିକ ଖଞ୍ଜିଥିଲେ । ପୂର୍ବପାଖରେ ὑMଊଖ lookhole ବା skylight (ଜଳାକବାଟ) ରଖାଗଲା । ଏହାଦ୍ୱାରା ପାର୍ବତୀଙ୍କ ନିକଟବର୍ତ୍ତୀ ଅନ୍ଧକାର ସାମାନ୍ୟ ଦୂରୀଭୂତ ହେଲା । ବିମାନ ଓ ଜଗମୋହନର ବାହାରପାଖ ପୀଢ଼ ଓ ବାଡ଼ଅଂଶ ମଧ୍ୟ ମରାମତି ହୋଇଥିଲା ।

ପାର୍ବତୀମନ୍ଦିରର ମରାମତି କାର୍ଯ୍ୟ ମଧ୍ୟ ଅତୀବ ସନ୍ତୋଷଜନକ । ସଂସ୍କାରଦ୍ୱାରା ଭଗ୍ନଦଶାପନ୍ନ ପାର୍ବତୀମନ୍ଦିରର ଜଗମୋହନ ଅତି ସୁଦୃଢ଼ ଓ ଦୀର୍ଘକାଳସ୍ଥାୟୀ ହୋଇଗଲା । ଏହାର ଭିତରପାଖରେ କେତେକାଂଶ ମଧ୍ୟ ମରାମତି ହୋଇଥିଲା ।

ସଂସ୍କାର ସମୟରେ ସାବିତ୍ରୀମନ୍ଦିରର ଉତ୍ତରଦିଗରେ ଥିବା କଂସଜଗତୀ ନାମକ ଗୋଟିଏ ବଡ଼ମଣ୍ଡପ ଏକାବେଳକେ ଭଙ୍ଗା ହୋଇଥିଲା । ମଣ୍ଡପଟିର ପୀଠ ପ୍ରାୟ ୧୦ଫୁଟ ଉଚ୍ଚଥିଲା । ଏଠାରେ କଂସଲୀଳା ଅଭିନୀତ ହେଉଥିଲା । ଏହାର ପଥରଗୁଡ଼ିକ ମରାମତି କାର୍ଯ୍ୟରେ ଲାଗିଥିଲା । ବା'ଖିଆ ମଣ୍ଡପର ଚଟାଣ ମଧ୍ୟ ଭଙ୍ଗା ହୋଇଥିଲା । ଏ ମଣ୍ଡପଟି ମଧ୍ୟ ପରବର୍ତ୍ତୀକାଳରେ । ଏହି ସ୍ଥାନଟିରେ ଜନ୍ମାଷ୍ଟମୀ ଦିନ କୃଷ୍ଣଜନ୍ମୋତ୍ସବ ପାଳନ କରାଯାଏ ।

ଲିଙ୍ଗରାଜ ଓ ପାର୍ବତୀମନ୍ଦିରର ସଂସ୍କାରକାର୍ଯ୍ୟ ଶେଷ ହେବାପରେ ସଂସ୍କାର କମିଟି ଭୁବନେଶ୍ୱରର ଅନ୍ୟତମ ପ୍ରସିଦ୍ଧ ଅନନ୍ତବାସୁଦେବଙ୍କର ମନ୍ଦିରସଂସ୍କାର କାର୍ଯ୍ୟରେ ହସ୍ତକ୍ଷେପ କରିଥିଲା । ମନ୍ଦିରର ବିମାନ ଓ ମୋହନର ବାହାରପାଖ ଅତି ସୁନ୍ଦରରୂପେ ମରାମତି ହୋଇଥିଲା ଓ ଲହଡ଼ିପଥର ତଳେ ଭାର ସହିବା ପାଇଁ ଲୁହାର ସ୍ତମ୍ଭମାନ ରଖାଯାଇଅଛି । ଦୀର୍ଘ ଚାରିବର୍ଷ ମଧ୍ୟରେ ଭଗବାନଙ୍କ ଅପାର କରୁଣାବଳରୁ ଭୁବନେଶ୍ୱରର ଏହି କେତେକ ପ୍ରସିଦ୍ଧ କୀର୍ତ୍ତିର ସମୁଦ୍ଧାର କାର୍ଯ୍ୟ ସାଧିତ ହୋଇଥିଲା ଏହା ଉତ୍କଳ ତଥା ଭାରତପକ୍ଷରେ ଗୌରବର ବିଷୟ । ପିତୃପିତାମହଙ୍କର କୀର୍ତ୍ତିସଂରକ୍ଷଣ ଆମ୍ଭମାନଙ୍କର ପ୍ରଧାନ କାର୍ଯ୍ୟ । ତାହା ନହେଲେ ଆମ୍ଭେମାନେ ତାଙ୍କର ଉପଯୁକ୍ତ ବଂଶଧର ବୋଲି ପରିଗଣିତ ହେବୁ ନାହିଁ । ଇଂରେଜ ରାଜତ୍ୱରେ ଭୁବନେଶ୍ୱରର ପ୍ରଧାନ ପ୍ରଧାନ ମନ୍ଦିରର ସଂସ୍କାର କାର୍ଯ୍ୟ ହେବାଦ୍ୱାରା ଦେଶ ଓ ଜାତିର ପ୍ରଭୂତ ଉପକାର ସାଧିତହୋଇଛି ।

**ଗୌରୀମନ୍ଦିର :** ୧୯୨୨-୨୩ ମସିହାରେ ବୃନ୍ଦାବନ ନିବାସୀ ଶ୍ରୀ କେଶବାନନ୍ଦ ବ୍ରହ୍ମଚାରୀଙ୍କ ଯତ୍ନରେ ଗୌରୀମନ୍ଦିର ବିମାନର ଜୀର୍ଣ୍ଣସଂସ୍କାର ହୋଇଥିଲା । ଏହାର ବିମାନ ବହୁପ୍ରାଚୀନ ଓ ଏହାର ଉପରଅଂଶ ଏକାବେଳକେ ନଷ୍ଟହୋଇ ଯାଇଥିଲା । ପୂର୍ବରୁ ଗୌରୀଙ୍କ ଜଗମୋହନ ନଥିଲା । ତେଣୁ ଯାତ୍ରୀ ଓ ପଣ୍ଡାମାନଙ୍କର ବିଶେଷ ଅସୁବିଧା ହେଉଥିଲା । ତାଙ୍କଦ୍ୱାରା ଜଗମୋହନ ନିର୍ମିତ ହେବାଦ୍ୱାରା ଏ ସମସ୍ତ ଅସୁବିଧା ଦୂର ହୋଇଯାଇଛି । ତଥାପି ଏଠାରେ କେଦାରେଶ୍ୱର ମନ୍ଦିର ଓ ମନ୍ଦିରବେଢାର ଜୀର୍ଣ୍ଣ ସଂସ୍କାର ଏକାନ୍ତ ଆବଶ୍ୟକ । ଭୁବନେଶ୍ୱରର ଉତ୍ସାହୀ ଯୁବକ ଶ୍ରୀ

ପୀତବାସ ମହାପାତ୍ର, ଶ୍ରୀ ଲିଙ୍ଗରାଜ ସାମନ୍ତ ରାୟ ଓ ଶ୍ରୀ କେଦାରନାଥ ମହାପାତ୍ର ଏକାର୍ଯ୍ୟରେ ବ୍ରତୀ ହୋଇଛନ୍ତି । ସେମାନଙ୍କର କାର୍ଯ୍ୟକଳାପ ସନ୍ତୋଷଜନକ ।

**ମିଉଜିୟମ :** ସାର ଉଇଲିୟମ୍ ଜୋନ୍ସ (Sir William Jones)ଙ୍କ ପ୍ରବଳ ପରିଶ୍ରମ ଯୋଗୁ ବଙ୍ଗଳାରେ 'ଏସିୟାଟିକ୍ ସୋସାଇଟି' ନାମକ ପ୍ରତ୍ନତତ୍ତ୍ୱାନୁସନ୍ଧିତ୍ସୁ ସମିତି ପ୍ରତିଷ୍ଠିତ ହୋଇଥିଲା । ଇଂରେଜମାନଙ୍କ ଦ୍ୱାରା ଉତ୍କଳ ଅଧିକାରପରେ ଏହା ବଙ୍ଗଳା ସହିତ ସଂଯୁକ୍ତ ହୋଇ ଶାସିତ ହେଲା । ଉପରୋକ୍ତ ସମିତି ପ୍ରତିଷ୍ଠିତ ହେବାର କେତେକ ବର୍ଷପରେ ପ୍ରତିଷ୍ଠାତାମାନଙ୍କର ଉତ୍କଳ ଓ ବିଶେଷତଃ ଭୁବନେଶ୍ୱରର ବିରାଟ ପ୍ରତ୍ନତତ୍ତ୍ୱ ଭଣ୍ଡାରପ୍ରତି ଲୋଲୁପଦୃଷ୍ଟି ପଡ଼ିଲା । ସେମାନେ ଭୁବନେଶ୍ୱରରୁ ଅନେକମୂର୍ତ୍ତି ନେଇଯାଇଥିଲେ । ଭୁବନେଶ୍ୱର ନିକଟବର୍ତ୍ତୀ ପ୍ରାଚୀନ ଶିଳାଲିପି ଓ କୀର୍ତ୍ତିମାନଙ୍କ ପ୍ରତି ସେମାନଙ୍କର ଦୃଷ୍ଟି ପ୍ରଥମେ ଆକୃଷ୍ଟ ହୋଇଥିଲା । ଜେନେରାଲ ଷ୍ଟୁଆର୍ଟ ୧୮୧୦ ଖ୍ରୀଷ୍ଟାବ୍ଦରେ ଅନନ୍ତବାସୁଦେବ, ବ୍ରହ୍ମେଶ୍ୱର ଓ ମେଘେଶ୍ୱର ମନ୍ଦିରରୁ ଶିଳାଲିପି ଓ ଆହୁରି ଅନେକମୂର୍ତ୍ତି Bengal Asiatic Society Museumକୁ ନେଇ ଯାଇଥିଲେ । ଲୋକମାନେ ଆପତ୍ତି କରିବାରୁ Major Kittoe ବ୍ରହ୍ମେଶ୍ୱର ଓ ଅନନ୍ତବାସୁଦେବ ଲିପି ପରିବର୍ତ୍ତେ ଅନନ୍ତ-ନାରାୟଣ ମନ୍ଦିର ଲିପି ଏଠାକୁ ଘେନି ଆସିଥିଲେ । Kittoe ସାହେବ ୧୮୩୭ ଖ୍ରୀଷ୍ଟାବ୍ଦରେ ଧଉଳୀ ଶିଳାଲିପି ପାଠ କରିଥିଲେ । ଏମାନଙ୍କ ବ୍ୟତୀତ ଆହୁରି ଅନେକ ପାଶ୍ଚାତ୍ୟ ଭଦ୍ରବ୍ୟକ୍ତି ଭୁବନେଶ୍ୱରର ଅନେକ ପ୍ରାଚୀନମୂର୍ତ୍ତି ମିଉଜିୟମ ଓ ସ୍ୱଦେଶକୁ ନେଇ ଯାଇଛନ୍ତି ।

ସାହେବମାନଙ୍କ ପରେ ବଂଗାଳୀମାନଙ୍କର ଦୃଷ୍ଟି ଏଥିପ୍ରତି ଆକୃଷ୍ଟ ହୋଇଥିଲା । ଭାରତର ପ୍ରସିଦ୍ଧ ଐତିହାସିକ ସ୍ୱର୍ଗୀୟ ରାଜା ରାଜେନ୍ଦ୍ର ଲାଲ ମିତ୍ର ଐତିହାସିକ ମାନଙ୍କ ମଧ୍ୟରେ ସର୍ବପ୍ରଥମେ ଉତ୍କଳ ବିଷୟରେ ଦୁଇଟି ବିରାଟ ଗ୍ରନ୍ଥ ଲେଖିଥିଲେ । ତାଙ୍କ ଗ୍ରନ୍ଥରେ ଭୁବନେଶ୍ୱରର ବିସ୍ତୃତ ବର୍ଣ୍ଣନା ଦିଆଯାଇଛି । ଉକ୍ତଗ୍ରନ୍ଥ ରଚିତ ହେବାପରେ ସମଗ୍ର ଜଗତର ଦୃଷ୍ଟି ଭୁବନେଶ୍ୱର ପ୍ରତି ପ୍ରଧାବିତ ହେଲା । ସେହିଦିନୁ ପୃଥିବୀର ଅନେକ ବିଖ୍ୟାତ ଐତିହାସିକ ଭୁବନେଶ୍ୱର ସମ୍ବନ୍ଧରେ ବିଶେଷ ଆଲୋଚନା

କରୁଛନ୍ତି । ଏଥିପାଇଁ ମିତ୍ରଙ୍କ ନାମ ଉତ୍କଳୀୟମାନଙ୍କର ଚିରସ୍ମରଣୀୟ ହୋଇ ରହିବ। ମିତ୍ର କଲିକତା ମିଉଜିୟମ୍‌ର ଜଣେ ପ୍ରଧାନ ପୃଷ୍ଠପୋଷକ ଓ ପରିଚାଳକ ଥିଲେ । ସେହିଦିନୁ ଅନେକ ବଙ୍ଗୀୟ ଐତିହାସିକ ଭୁବନେଶ୍ୱରରୁ ଶତଶତ ପ୍ରାଚୀନମୂର୍ତ୍ତି, ଲିପି ଓ ପୋଥି କଲିକତା ମିଉଜିୟମ ଏବଂ ନିଜ ବାସଭବନର ସୌନ୍ଦର୍ଯ୍ୟ ବୃଦ୍ଧି ଓ ଜ୍ଞାନର ବିକାଶ ନିମିତ୍ତ ନେଇ ଯାଇଛନ୍ତି । ବିହାର-ଉତ୍କଳ ପ୍ରଦେଶ ଗଠିତ ହେବାପରେ ଅନେକ ପୋଥି ଓ ପ୍ରାଚୀନ ମୂର୍ତ୍ତି ମଧ୍ୟ ପାଟଣା ମିଉଜିୟମକୁ ନିଆ ହୋଇଛି । ବ୍ରିଟିଶ୍‌ରାଜତ୍ୱରେ ଭୁବନେଶ୍ୱରର ପ୍ରଧାନ ପ୍ରଧାନ ମନ୍ଦିରରେ ସୁନ୍ଦର ମୂର୍ତ୍ତିମାନଙ୍କର ଅଭାବ ପରିଲକ୍ଷିତ ହୁଏ । ମିଉଜିୟମ୍ ପାଇଁ ମୂର୍ତ୍ତି ସଂଗଠନ ହିଁ ଏହାର ପ୍ରଧାନ କାରଣ । ମୁସଲମାନ ଯୁଗରେ ମୂର୍ତ୍ତିଗୁଡ଼ିକ ନଷ୍ଟ ହେଉଥିଲେ ମଧ୍ୟ ସ୍ଥାନଚ୍ୟୁତ ହେଉନଥିଲା, କିନ୍ତୁ ବ୍ରିଟିଶ୍‌ରାଜତ୍ୱରେ ମୂର୍ତ୍ତିଗୁଡ଼ିକ ସୁରକ୍ଷିତ ହେଲେ ମଧ୍ୟ ଦେଶାନ୍ତରିତ ହେଲା । ଏହାଦ୍ୱାରା ଜାତିର ପ୍ରଭୂତ କ୍ଷତିସାଧିତ ହେଉଛି ।

ଷ୍ଟର୍ଲିଙ୍ଗ, ହଣ୍ଟର, ଫରଗୁସନ୍ ରାଜେନ୍ଦ୍ରଲାଲ ମିତ୍ର ଓ ପୁରୀଜିଲ୍ଲା ବିବରଣ (gazetteer)ର ସଂପାଦକ ପ୍ରଭୃତି ନିଜରଚିତ ଗ୍ରନ୍ଥମାନଙ୍କରେ ବିସ୍ତୃତ ବିବରଣ ଦେଇଛନ୍ତି । ସେ ସମସ୍ତ ଏଠାରେ ଦେବା ଅନାବଶ୍ୟକ । ମଧ୍ୟଯୁଗରେ ଏହା ତୀର୍ଥ ରୂପେ ସମଗ୍ର ଭାରତବର୍ଷରେ ଆଦୃତ ଓ ପୂଜିତ ହେଉଥିଲା । କିନ୍ତୁ ବିଦେଶୀୟ ଐତିହାସିକମାନଙ୍କ ବିସ୍ତୃତ ବର୍ଣ୍ଣନା ଯୋଗୁ ଭୁବନେଶ୍ୱର ବର୍ତ୍ତମାନ ସମଗ୍ର ଭାରତବର୍ଷରେ 'ପ୍ରାଚୀନକୀର୍ତ୍ତିଶାଳିନୀ' ଐତିହାସିକସ୍ଥଳୀ ରୂପେ ପରିଚିତ ହୋଇ ପାରିଛି । ଏହାର ତୀର୍ଥ ମାହାତ୍ମ୍ୟ କ୍ରମଶଃ ହ୍ରାସହୋଇ ପ୍ରତ୍ନତତ୍ତ୍ୱଶିକ୍ଷିତଜନସମାଜରେ ବିଶେଷ ଆଦୃତ ହେଉଅଛି ।

ଉତ୍କଳର ପରାଧୀନତା ସମୟରୁ ଊନବିଂଶ ଶତାବ୍ଦୀର ମଧ୍ୟ ପର୍ଯ୍ୟନ୍ତ ପ୍ରାୟ ୩୦୦ ବର୍ଷକାଳ ଭୁବନେଶ୍ୱରର ମାହାତ୍ମ୍ୟ କ୍ରମଶଃ କ୍ଷୀଣ ହୋଇ ଏକାବେଳକେ ମ୍ଳାନ ହୋଇଥିଲା । ଉକ୍ତ ଯୁଗରେ ଏ ସ୍ଥାନରେ ବିଦେଶୀ ଯାତ୍ରୀମାନଙ୍କର ସମାଗମ ଏକାବେଳକେ କମ୍ ହୋଇଯାଇଥିଲା । କେବଳ ସମୟ ସମୟରେ ଓଡ଼ିଶା ତଥା ଭାରତର ବଡ଼ ବଡ଼ ରାଜା ଓ ଧନୀମାନେ ଏଠାକୁ ଆସୁଥିଲେ । କିନ୍ତୁ ୧୮୬୬ ନ'ଅଙ୍କପରେ ଉତ୍କଳରେ ଚାରିଆଡ଼େ

ରାସ୍ତାମାନ ନିର୍ମିତ ହେବାରୁ ଭୁବନେଶ୍ୱରରେ ଯାତ୍ରୀ ସମାଗମ କ୍ରମଶଃ ବୃଦ୍ଧି ପାଇବାକୁ ଲାଗିଲା । ୧୯୦୦ ସାଲ ବେଳକୁ ବାରଙ୍ଗ ପର୍ଯ୍ୟନ୍ତ B.N. Railway ନିର୍ମିତ ହୋଇଥିଲା । ୧୯୦୨ ବେଳକୁ ପୁରୀ ପର୍ଯ୍ୟନ୍ତ ଲାଇନ୍ ଯାଇଥିଲା । ସେହି ସମୟରୁ ଉତ୍କଳରେ ନବଯୁଗ ଆରମ୍ଭ ହୋଇଥିଲା । ଭୁବନେଶ୍ୱର ସେହି ନବଯୁଗର ସ୍ରୋତରେ ଭାସମାନ ହୋଇଥିଲା । ଉତ୍ତର ଭାରତର ଅସଂଖ୍ୟ ଯାତ୍ରୀ ପୁରୀ ବାଟରେ ଥିବା ଭୁବନେଶ୍ୱରରେ ଓହ୍ଲାଇବାକୁ ସୁବିଧାଜନକ ମନେକଲେ ।

ସେହି ସମୟରୁ ଭୁବନେଶ୍ୱର କ୍ରମଶଃ ଉନ୍ନତି ମାର୍ଗରେ ଧାବିତ ହେଉଛି । ବୈଦେଶିକ ସମାଗମ ଦ୍ୱାରା ଭୁବନେଶ୍ୱରର ସେବକମାନେ ସେମାନଙ୍କ ଦତ୍ତଧନରେ ପରିପୁଷ୍ଟ ହେଲେ । ରେଳଲାଇନ ଖୋଲିବା ପରେ ଭୁବନେଶ୍ୱର ପ୍ରାଚୀନକୀର୍ତ୍ତିମାନଙ୍କର ସଂସ୍କାର ପ୍ରତି ସରକାର ଓ ବଙ୍ଗୀୟ ପ୍ରସିଦ୍ଧ ବ୍ୟକ୍ତିମାନଙ୍କର ଦୃଷ୍ଟି ପଡ଼ିଥିଲା । ଭୁବନେଶ୍ୱରର ଚତୁର୍ଦ୍ଦିଗରୁ ଜଙ୍ଗଲ କଟାଯାଇ କ୍ରମେ କ୍ରମେ ପରିଷ୍କୃତ ହୋଇଥିଲା । ବଙ୍ଗୀୟମାନେ ଭୁବନେଶ୍ୱରର ଜଳବାୟୁ ସେମାନଙ୍କର ସ୍ୱାସ୍ଥ୍ୟ ପରିବର୍ତ୍ତନ ପାଇଁ ବିଶେଷ ଉପଯୋଗୀ ବୋଲି ସ୍ଥିର କରି ଏଠାରେ ଖଣ୍ଡିଏ ଖଣ୍ଡିଏ ଘର ନିର୍ମାଣ କରିବାକୁ ଆରମ୍ଭ କଲେ । ୧୯୧୦ ଖ୍ରୀଷ୍ଟାବ୍ଦରେ ରାମକୃଷ୍ଣ ମଠ ପ୍ରତିଷ୍ଠିତ ହେବାପରେ ବଙ୍ଗୀୟମାନେ ଏ ସ୍ଥାନ ପ୍ରତି ବିଶେଷ ଆକୃଷ୍ଟ ହେଲେ । ବର୍ତ୍ତମାନ ଭୁବନେଶ୍ୱର ଚତୁର୍ଦ୍ଦିଗରେ ବଙ୍ଗୀୟ ପ୍ରାସାଦ ହର୍ମ୍ୟମାନଙ୍କଦ୍ୱାରା ଶୋଭିତ । ବାହାରୁ ଦେଖିଲେ ଏହା ବଙ୍ଗୀୟଉପନିବେଶ ବୋଲି ମନେହୁଏ । (ବର୍ତ୍ତମାନ ଭୁବନେଶ୍ୱର ସମଗ୍ର ଉତ୍ତର ଭାରତରେ ଜଳବାୟୁ ପରିବର୍ତ୍ତନର ଗୋଟିଏ ପ୍ରଧାନ ସ୍ଥାନରୂପେ ପରିଗଣିତ ହେଉଅଛି । ପୁରୀ, ଦେଓଗଡ଼, ଗୋପାଳପୁର ପରି ଏହାର ସ୍ୱାସ୍ଥ୍ୟ ସମ୍ପଦ ଅନେକ ବିଦେଶୀ ରାଜାମାନଙ୍କର ପ୍ରଧାନ ଆକର୍ଷଣର ବସ୍ତୁ । ଏହାଦ୍ୱାରା ଭୁବନେଶ୍ୱର ଲୋକମାନଙ୍କର ଉପକାର ତଥା ଅପକାର ସାଧିତ ହେଉଅଛି । କେଦାରଗୌରୀ ଜଳ ଓ କୋଚିଲା ହାଉଆ ବର୍ତ୍ତମାନ ଭାରତରେ ବିଶେଷ ପ୍ରସିଦ୍ଧି ଲାଭ କରିଛି ।

**ଭୁବନେଶ୍ୱରରେ ଆଧୁନିକ ଯୁଗର ଅନୁଷ୍ଠାନ ସକଳ :** ଆଧୁନିକ ଯୁଗରେ

ଭୁବନେଶ୍ୱରରେ ଅନେକ ଅନୁଷ୍ଠାନ ସ୍ଥାପିତ ହୋଇଅଛି । ପ୍ରଥମଟି Êÿ। gû ^ckK Union Board । ଏହା ଅଧୀନରେ ଭୁବନେଶ୍ୱର, କପିଳେଶ୍ୱର, ସୁନ୍ଦରପଦା ଓ ବରଗଡ଼ ଗ୍ରାମ ବିଦ୍ୟମାନ । ସ୍ୱର୍ଗୀୟ ସୁଦର୍ଶନ ନନ୍ଦଙ୍କ ଯତ୍ନରେ ଏଠାରେ ଗୋଟିଏ Union Committee ପ୍ରତିଷ୍ଠିତ ହୋଇଥିଲା । ତାହା ପରବର୍ତ୍ତୀ ଶାସନସଂସ୍କାର ସମୟରେ Union Boardରେ ପରିଣତ ହୋଇ ବର୍ତ୍ତମାନ ସୁଚାରୁରୂପେ ଏହାର କାର୍ଯ୍ୟ ଚଳାଉଅଛି ।

**ଡାକ୍ତରଖାନା** :୧୯୧୬ ମସିହାରେ ଏଠାରେ ଦାତବ୍ୟ ଚିକିତ୍ସାଳୟ ସ୍ଥାପିତ ହୋଇଥିଲା । ପୂର୍ବରୁ ଏଠାରେ ଶବ ବ୍ୟବଚ୍ଛେଦ ପାଇଁ ମଧ୍ୟ ବ୍ୟବସ୍ଥା ଅଛି । ଦାତବ୍ୟ ଚିକିତ୍ସାଳୟ ବ୍ୟତୀତ ଏଠାରେ ପ୍ରତିବର୍ଷ ଅସଂଖ୍ୟ ଯାତ୍ରୀଙ୍କର ସମାଗମ ହେତୁ ସରକାରଙ୍କ ତରଫରୁ ଜଣେ ସ୍ୱାସ୍ଥ୍ୟ କର୍ମଚାରୀ (Health-officer) ମଧ୍ୟ ନିଯୁକ୍ତ ହୋଇଥିଲେ ।

**ଥାନା** ୧୯୧୬ ମସିହା ପୂର୍ବରୁ ଏଠାରେ ଗୋଟିଏ ପୋଲିସ୍‌ଷ୍ଟେସନ ସ୍ଥାପିତ ହୋଇଛି ।

**ଡାକଘର** : ୧୯୧୦ ପୂର୍ବରୁ ଏଠାରେ ଡାକଘର ସ୍ଥାପିତ ହୋଇଥିଲା ।

**ମାଇନର ସ୍କୁଲ** : ପ୍ରଥମେ ଏଠାରେ ଗୋଟିଏ ମଧ୍ୟ-ଭର୍ଣ୍ଣାକୁଲାର ସ୍କୁଲ ୧୮୫୮ ମସିହାରେ ପ୍ରତିଷ୍ଠିତ ହୋଇଥିଲା । ତାହା ବ୍ରଜବନ୍ଧୁ ଦାସ କାନଗୋଇଙ୍କ ଯତ୍ନରେ ମଧ୍ୟ-ଇଂରାଜୀ ବିଦ୍ୟାଳୟରେ ପରିଣତ ହେଲା । ସ୍କୁଲଟି ହାଟତୋଟା ନିକଟରେ ନିର୍ମିତ ହେଲା । ସେହିଦିନୁ ମାଇନର ସ୍କୁଲ ୧୯୨୮ ପର୍ଯ୍ୟନ୍ତ ଉନ୍ନତି ପଥରେ ଧାବିତ ହୋଇଥିଲା । ୧୯୧୬ ସାଲରେ ସ୍ୱର୍ଗୀୟ ପଣ୍ଡିତ ସୁଦର୍ଶନ ନନ୍ଦଙ୍କ ଅକ୍ଲାନ୍ତ ପରିଶ୍ରମ, କର୍ମନିଷ୍ଠା, ଅଧ୍ୟବସାୟ ଓ ସ୍ୱାର୍ଥତ୍ୟାଗ ଯୋଗୁ ଏହାର ଉନ୍ନତି ଘଟିଥିଲା । ଚୌଧୁରୀ ନୀଳକଣ୍ଠ ଦାଶ BA ମଧ୍ୟ ଏଥିରେ ବିଶେଷ ସହଯୋଗ କରିଥିଲେ । ଏହା ବ୍ୟତୀତ ଏଠାରେ ଗୋଟିଏ ସଂସ୍କୃତ ଟୋଲ, ବାଳିକା ବିଦ୍ୟାଳୟ ଓ ବାଳକ ବିଦ୍ୟାଳୟ ଅଛି ।

**ହାଟ** ବ୍ରଜବନ୍ଧୁ ଦାସ କାନଗୋଇଙ୍କ ଯତ୍ନରେ ଏଠାରେ ଗୋଟିଏ ହାଟ ସ୍ଥାପିତ ହୋଇଅଛି । ପୂର୍ବେ ଲିଙ୍ଗିପୁର ନିକଟରେ ହାଟଥିଲା । ତାଙ୍କର

ଯନ୍ତ୍ରରୁ ଏହା ଏଠାକୁ ସ୍ଥାନାନ୍ତରିତ ହୋଇଥିଲା ।

**ଧର୍ମଶାଳା:** ପ୍ରଥମେ ରାୟବାହାଦୁର ବିଶେଶ୍ୱର ଲାଲ ହର ଗୋବିନ୍ଦ ପ୍ରାୟ ଏକଲକ୍ଷ ମୁଦ୍ରା ବ୍ୟୟ କରି ବିନ୍ଦୁସାଗରର ଅଗ୍ନିକୋଣରେ ୧୯୨୦ମସିହାରେ ଗୋଟିଏ ବିରାଟ ଧର୍ମଶାଳା ନିର୍ମାଣ କରିଥିଲେ । ତାହାଙ୍କ ପରେ ହଜାରିମଲ୍ଲ ଦୋଦୱାଲା ୨ଲକ୍ଷ ମୁଦ୍ରା ବ୍ୟୟକରି ୧୯୩୦ ମସିହାରେ ଆଉଗୋଟିଏ ଧର୍ମଶାଳା ନିର୍ମାଣ କରିଥିଲେ । ଏହି ଦୁଇଟି ଧର୍ମଶାଳା ନିର୍ମିତ ହେବା ପୂର୍ବରୁ ଏଠାରେ ଅନେକ ଭଡ଼ାଘର ଥିଲା । କିନ୍ତୁ ବର୍ତ୍ତମାନ ଭଡ଼ାଘର ସଂଖ୍ୟା ଖୁବ୍ କମିଯାଇଛି । ଆହୁରି ଗୋଟିଏ ଧର୍ମଶାଳା ଷ୍ଟେସନ ନିକଟରେ ନିର୍ମିତ ହେଉଛି । ଏହାଦ୍ୱାରା ବିଦେଶାଗତ ଯାତ୍ରୀମାନଙ୍କର ବିଶେଷ ସୁବିଧା ହେଉଛି ।

ଏହାବ୍ୟତୀତ ଏଠାରେ ଗୋଟିଏ ସଂସ୍କୃତ ଟୋଲ, ଗୋଟିଏ ବାଳିକା ବିଦ୍ୟାଳୟ, ଗୋଟିଏ ବାଳକ ବିଦ୍ୟାଳୟ, ଗୋଟିଏ ଡାକବଙ୍ଗଳା, ଗୋଟିଏ ଫରେଷ୍ଟ ଅଫିସ୍ ଓ ରେଳଷ୍ଟେସନ ଅଛି ।

**ଲିଙ୍ଗରାଜଙ୍କ ମାହାଲ :** ମନ୍ଦିରମାନଙ୍କ ଯୋଗୁ ଭୁବନେଶ୍ୱର ସମଗ୍ର ଭାରତବର୍ଷ ତଥା ପୃଥିବୀରେ ବିଖ୍ୟାତ । ଦେବଦେବୀ ପୂଜା ଆମ୍ଭମାନଙ୍କର ହିନ୍ଦୁଧର୍ମର ପ୍ରଧାନଅଂଶ । ଦେବଦେବୀଙ୍କ ମନ୍ଦିର ନିର୍ମାଣ କରିବା ପାଇଁ ପ୍ରାଚୀନ ଭାରତୀୟ ନରପତିମାନେ କୋଟି କୋଟି ମୁଦ୍ରା ବ୍ୟୟ କରିଥିଲେ । ମନ୍ଦିରର ଐତିହାସିକ ମୂଲ୍ୟ ଯାହାହେଉ ପଛକେ ଦେବତା ବିନା ମନ୍ଦିର ଅବସ୍ଥା ଶୋଚନୀୟ ହୋଇଥାଏ ଓ ଏହା କ୍ରମଶଃ ପରିତ୍ୟକ୍ତ ହୁଏ । ଦେବତା ଥିଲେ ମଧ୍ୟ ରୀତିମତ ସେବାପୂଜା ନ ହେଲେ ଦେବତାଙ୍କ ପ୍ରତି ଲୋକମାନଙ୍କର ଭକ୍ତି ଓ ବିଶ୍ୱାସ ତୁଟିଯାଏ ଏବଂ ଦେବସ୍ଥଳୀ ନିର୍ଜନ ସ୍ଥାନରେ ପରିଣତ ହୁଏ । କିନ୍ତୁ ଘୋର ଦୁଃଖର ବିଷୟ ଭୁବନେଶ୍ୱରର ଅଧିକାଂଶ ମନ୍ଦିରର ଦେବାଦେବୀ ଆଦୌ ପୂଜିତ ହୁଅନ୍ତି ନାହିଁ । ରାଜାମାନେ ମନ୍ଦିର ନିର୍ମାଣ ସମୟରେ ମନ୍ଦିରର ପରିଚାଳନା ଓ ସେବା ପୂଜା ନିମିତ୍ତ ବହୁତ ନିଷ୍କର ଜମିବାଡ଼ି ଖଞ୍ଜିଥିଲେ । ମୁସଲମାନମାନଙ୍କ ସମୟରେ କେତେକ ଦେବୋତ୍ତର ଓ ବ୍ରହ୍ମୋତ୍ତର ଜମି ଉପରେ କରଧାର୍ଯ୍ୟ ହୋଇଥିଲା । ଜମିବାଡ଼ି ଏପରି ହେବାରୁ ଅନେକ ମନ୍ଦିରର ସେବକମାନେ

ସେବାପୂଜା ପ୍ରତି ବିତୃଷ୍ଣ ହୋଇଗଲେ । ମୁସଲମାନ ଓ ଇଂରେଜ ରାଜତ୍ୱ କାଳରେ ବନ୍ଦୋବସ୍ତ ବିଭ୍ରାଟଦ୍ୱାରା ଭୁବନେଶ୍ୱରର ଦେବୋତ୍ତର ମାହାଲର ପରିମାଣ କ୍ରମଶଃ ହ୍ରାସହେବାକୁ ଲାଗିଲା । ଇଂରେଜ ଅଧିକାର ସମୟରେ ଭୁବନେଶ୍ୱରରେ ବନ୍ଦୋବସ୍ତ ହୋଇଥିଲା । ବର୍ତ୍ତମାନ ମନ୍ଦିରମାନଙ୍କର ପରିଚାଳନା ଓ ସେବାପୂଜା ନିମିତ୍ତ ଯେଉଁ ନିଷ୍କରଜମି ଖଞ୍ଜା ହୋଇଅଛି ତାହା ଆଦୌ ଯଥେଷ୍ଟ ନୁହେଁ । ବନ୍ଦୋବସ୍ତ ବିଭ୍ରାଟଯୋଗୁ ଭୁବନେଶ୍ୱର ବର୍ତ୍ତମାନ ଖଣ୍ଡିଏ କ୍ଷୁଦ୍ରଗ୍ରାମରେ ପରିଣତ ହୋଇଛି । ବିନ୍ଦୁସାଗରଠାରୁ କେଦାରଗୌରୀ ପର୍ଯ୍ୟନ୍ତ ଯେଉଁ ରାସ୍ତା ଯାଇଛି ତାହାହିଁ ପ୍ରକାରାନ୍ତରେ ଭୁବନେଶ୍ୱରର ଉତ୍ତରସୀମା । ବ୍ରହ୍ମେଶ୍ୱର, ମେଘେଶ୍ୱର, ଭାସ୍କରେଶ୍ୱର, ଅଲାବୁକେଶ୍ୱର, ରାମେଶ୍ୱର, ବୁଧେଶ୍ୱର, ଚିନ୍ତାମଣୀଶ୍ୱର ପ୍ରଭୃତି ଭୁବନେଶ୍ୱରର ପ୍ରସିଦ୍ଧ ମନ୍ଦିରମାନ ବର୍ତ୍ତମାନ ଖାସମାହାଲର ବଡ଼ଗଡ଼ ମୌଜାରେ । ଭୁବନେଶ୍ୱର ପଶ୍ଚିମ ସୀମା ବେଙ୍ଗଲ ନାଗପୁର ରେଲଲାଇନ ପର୍ଯ୍ୟନ୍ତ, ଦକ୍ଷିଣସୀମା କପିଳେଶ୍ୱରର କୁମ୍ଭାରସାହି ପର୍ଯ୍ୟନ୍ତ । ସୁନ୍ଦରେଶ୍ୱର ଖାସ ମାହାଲ ସୁନ୍ଦରପଦା ମୌଜାରେ । ଭୁବନେଶ୍ୱରର ପୂର୍ବସୀମା ଭୁଆସୁଣୀ ପର୍ଯ୍ୟନ୍ତ । ଏଥିରୁ ମଠମାନଙ୍କର ମଧ୍ୟ ଅନେକ ଜମିଅଛି । ସେ ସମସ୍ତ ବାଦ ଦେଲେ ଭୁବନେଶ୍ୱର ମୌଜା ଗୋଟିଏ କ୍ଷୁଦ୍ର ପଲ୍ଲୀ କୁହାଯାଇ ପାରିବ । ପ୍ରାଚୀନଯୁଗରେ ଭୁବନେଶ୍ୱରର ସୀମା ମେଘେଶ୍ୱର (ଗନ୍ଧବତୀ ନଦୀ)ଠାରୁ ପଶ୍ଚିମରେ ଭୀମକୁଣ୍ଡ, ଦକ୍ଷିଣରେ ସୁନ୍ଦରେଶ୍ୱରଙ୍କଠାରୁ ଉତ୍ତରରେ ବୁଧେଶ୍ୱର ପର୍ଯ୍ୟନ୍ତ ଥିଲା । ବର୍ତ୍ତମାନର ଭୁବନେଶ୍ୱର ଏହାର ଏକପଞ୍ଚମାଂଶ ମଧ ହେବ ନାହିଁ । ଏହା ଭୁବନେଶ୍ୱରର ନ୍ୟାଯ୍ୟପ୍ରାପ୍ତି । ଏହାକୁ କ୍ଷେତ୍ର କୁହାଯାଉଥିଲା । ଭୁବନେଶ୍ୱରର ଚରମ ଉନ୍ନତି ସମୟରେ ପଞ୍ଚକ୍ରୋଶହିଁ ଭୁବନେଶ୍ୱରର ଆୟତନ ଥିଲା ଓ ଏହା ଲିଙ୍ଗରାଜ ମହାପ୍ରଭୁଙ୍କ ମାହାଲ ଥିଲା ବୋଲି ମନେହୁଏ । ଆଜିକାଲି ପଞ୍ଚକ୍ରୋଶ ମଧ୍ୟରେ ନିମ୍ନଲିଖିତ ଗ୍ରାମମାନ ବିଦ୍ୟମାନ । କାଳକ୍ରମେ ଅନେକ ଗ୍ରାମ ମଧ୍ୟ ଧ୍ୱଂସ ହୋଇଯାଇଛି ।

"ଖଣ୍ଡାଚଳାତ୍ ସମାସାଦ୍ୟ ଯତ୍ରାନ୍ତେ କୁଣ୍ଡଳେଶ୍ୱର
ଆସାଦ୍ୟ ବାରାହୀଂ ଦେବୀଂ ବହିରଙ୍ଗେଶ୍ୱରାବଧି ।"

ପଞ୍ଚକ୍ରୋଶ ମଧ୍ୟରେ ବର୍ତ୍ତମାନ ୪୫ଟି ଗ୍ରାମ ବିଦ୍ୟମାନ ଅଛି ।

ବ୍ରିଟିଶ୍ ରାଜତ୍ୱ ସମୟରେ ଲିଙ୍ଗରାଜମହାପ୍ରଭୁଙ୍କ ମାହାଲ ଅତି କ୍ଷୁଦ୍ରାକାର ଧାରଣ କରିଛି । ବର୍ତ୍ତମାନ ଯାହା ଲିଙ୍ଗରାଜ ମହାପ୍ରଭୁଙ୍କ ଲାଖରାଜ ମାହାଲ ତାହା ଭୁବନେଶ୍ୱର, ମହାଭୋଇ ଶାସନ, ଦକ୍ଷିଣ ନୂଆଗାଁ, ଗଙ୍ଗେଶ୍ୱରପୁର, କୁକୁଡ଼ା ଘାଇ ପାଟଣା, କୁହା କ୍ଷେତ୍ରପାଳ, ସୁନ୍ଦରପଦାର କେତେକାଂଶ, କାଠ ରାହାଙ୍ଗ, ପୁବାଶାସନ ଓ ଅମାନଙ୍ଗ ଆଦି କେତେଖଣ୍ଡି ଛୋଟ ଗ୍ରାମର ସମଷ୍ଟିମାତ୍ର ।

**ମନ୍ଦିର ପରିଚାଳନ :** ଇଂରେଜ ଅଧିକାର ପର୍ଯ୍ୟନ୍ତ ଏହା ଖୁରଧା ରାଜାଙ୍କ ଦ୍ୱାରା ପରିଚାଳିତ ହେଉଥିଲା । ଖୁରଧାର ସ୍ୱାଧୀନତା ଲୋପ ହେବାପରେ ଏହା ଇଂରେଜମାନଙ୍କର ଖାସ ମାହାଲ ହେଲା । ପୁରୀରାଜାଙ୍କ ହାତରୁ ଭୁବନେଶ୍ୱର ପରିଚାଳନର ଭାର ରହିତ ହେଲା । ତଦନନ୍ତର ସ୍ଥାନୀୟ କର୍ମଚାରୀ(Local agent)ଙ୍କ ଅଧୀନରେ ଜଣେ ପରିଛା ଥିଲେ । ସେହି ପରିଛାଙ୍କ ଉପରେ ଲିଙ୍ଗରାଜ ମହାପ୍ରଭୁଙ୍କ ମାହାଲ ଓ ମନ୍ଦିରର ପରିଚାଳନ ଭାର ନ୍ୟସ୍ତ ଥିଲା । କିନ୍ତୁ ସେବାପୂଜାର ତତ୍ତ୍ୱ ମନ୍ଦିରର ପଞ୍ଚାୟତ ଓ ପରକରଣମାନଙ୍କ ତତ୍ତ୍ୱାବଧାନରେ ରହୁଥିଲା । ସୁଆର ଓ ବଡୁମାନଙ୍କ ମଧ୍ୟରୁ ପଞ୍ଚାୟତ ନିଯୁକ୍ତ ହୁଅନ୍ତି । ପରିଛା ଆୟବ୍ୟୟର ହିସାବ ବୁଝନ୍ତି । ଭୁବନେଶ୍ୱରରେ ଗୋଟିଏମାତ୍ର କରଣଘର । ସେମାନେ ଦେଉଳର ପରକରଣ ଥିଲେ । ସେମାନଙ୍କ ଘରେ ମନ୍ଦିରର ପଞ୍ଜିକା ଆଦି ରହୁଥିଲା, କିନ୍ତୁ ଘର ପୋଡ଼ିଦ୍ୱାରା ସେଗୁଡ଼ିକ କାଳକ୍ରମେ ନଷ୍ଟ ହୋଇଯାଇଛି । ପରମଗୁରୁଙ୍କ ଘର ମଧ୍ୟ କେତେଦିନ ପରିଛା କାମ କରୁଥିଲେ । ସାମନ୍ତରାୟ ଓ ମକଦ୍ଦମ ଘର ମଧ୍ୟ ମନ୍ଦିର ବୁଝୁଥିଲେ । ବିଦ୍ୟାଧର ମହାପାତ୍ର ମନ୍ଦିରର ଶେଷ ପରିଛା ଥିଲେ । ଲିଙ୍ଗରାଜ ମନ୍ଦିରର ପରିଚାଳନ ସ୍ୱାୟତ୍ତଶାସନମୂଳକ ଥିଲା । ଅଦ୍ୟାପି କପିଳେଶ୍ୱର ମନ୍ଦିରର ସେବାପୂଜା ମଧ୍ୟ ସ୍ୱାୟତ୍ତ ଶାସନ ମୂଳକ, କାରଣ ଏଠାରେ ଷୋହଳ ମକଦ୍ଦମ ମନ୍ଦିରର ମାରଫତଦାର ରୂପେ ନିଯୁକ୍ତ ହୋଇଛନ୍ତି ।

Religious Endowment Act ବା ଦେବୋତ୍ତର ପରିଚାଳନ ଆଇନ ପ୍ରଣୀତ ହେବାପରେ ମନ୍ଦିରର ପରିଚାଳନ ଭାର ଗୋଟିଏ କମିଟି ଉପରେ ନ୍ୟସ୍ତ ହେଲା । କମିଟି ତିନିଜଣ ସଭ୍ୟଙ୍କ ଦ୍ୱାରା ଗଠିତ ହୁଏ ।

ଏହି ତିନିଜଣ ମେମ୍ବର ଜଜ୍‌ସାହେବଙ୍କ ଦ୍ୱାରା ମନୋନୀତ ହୁଅନ୍ତି । ସେମାନେ ଜୀବନବ୍ୟାପୀ ସଭ୍ୟ । କୃତ୍ତିବାସ ଦାଶଚୌଧୁରୀ, ପ୍ରିୟନାଥ ଚାଟାର୍ଜୀ ଓ କୃଷ୍ଣଚନ୍ଦ୍ର ନନ୍ଦ ଏହି କମିଟିର ମେମ୍ବର ଥିଲେ । ବର୍ତ୍ତମାନ ଶ୍ରୀ ଗୋପାଳଚନ୍ଦ୍ର ପ୍ରହରାଜ, ଶ୍ରୀ ଗଦାଧର ରାମାନୁଜଦାସ (ଏମାର ମଠର ମହନ୍ତ) ଓ ଶ୍ରୀ ଗଙ୍ଗାଧର ଦାଶ ଚୌଧୁରୀ କମିଟିର ମେମ୍ବର । ଗଙ୍ଗାଧର ବାବୁ ଏମାନଙ୍କ ମଧ୍ୟରେ କାର୍ଯ୍ୟାଧ୍ୟକ୍ଷ ସଭ୍ୟ ବା **Managing Committee member** । କମିଟି ଗଠିତ ହେବାପରେ ପରିଚ୍ଛାପଦବୀ ଉଠିଗଲା । ପଞ୍ଚାୟତ ଓ ପରକରଣମାନଙ୍କର କ୍ଷମତା ହ୍ରାସ ଲାଭ କଲା । କମିଟି ଅଧୀନରେ ଜଣେ ମ୍ୟାନେଜର, ଜଣେ ତହସିଲଦାର, ଜଣେ ମୋହରିର ଓ ତିନିଚାରିଜଣ ଚପରାସି କାର୍ଯ୍ୟ କରନ୍ତି ।





(୧୯୧୧-୧୯୮୧)

ସ୍ୱର୍ଗତ କେଦାରନାଥ ମହାପାତ୍ର ଥିଲେ ପ୍ରସିଦ୍ଧ ପ୍ରନ୍ତତାତ୍ତ୍ୱିକ, ଗବେଷକ, ପୋଥିବିତ୍ ଏବଂ ଐତିହାସିକ । ଏକାମ୍ରକ୍ଷେତ୍ରର ବିଖ୍ୟାତ ବୈଦ୍ୟ ପରିବାରରେ ତାଙ୍କର ଜନ୍ମ ୧୯୧୧ ମସିହା ଅକ୍ଟୋବର ୨୧ ତାରିଖରେ ହୋଇଥିଲା । ୧୯୮୧ ମସିହା ଏପ୍ରିଲ୍ ୨୦ ତାରିଖରେ ତାଙ୍କର ଦେହାବସାନ ହୋଇଥିଲା । ସେ ରେଭେନ୍‌ସା ମହାବିଦ୍ୟାଳୟରେ ଇତିହାସ(ଅନର୍ସ) ନେଇ ୧୯୩୩ ମସିହାରେ ସ୍ନାତକ ହୋଇଥିଲେ ।

ଶିକ୍ଷକତାରୁ ଜୀବିକା ଆରମ୍ଭ କରି ୧୯୪୩ରେ ସେ ପ୍ରାକ୍ତନ କଳାହାଣ୍ଡି ରାଜ୍ୟରେ ପ୍ରତ୍ନତତ୍ତ୍ୱବିଦ୍ ଭାବେ ଯୋଗ ଦେଇ ଏକ କ୍ଷୁଦ୍ର ସଂଗ୍ରହାଳୟ ବ୍ୟବସ୍ଥିତ କରିଥିଲେ ଏବଂ ୧୯୫୦ ରେ ରାଜ୍ୟ ସଂଗ୍ରହାଳୟ ସଂଗ୍ରହାଧିକାରୀ ଭାବେ ପୋଥି ବିଭାଗର ଗବେଷଣା କ୍ଷେତ୍ରକୁ ପ୍ରସାରିତ ତଥା ଋଦ୍ଧିମନ୍ତ କରି ଜାତୀୟ ତଥା ଅନ୍ତର୍ଜାତୀୟ କ୍ଷେତ୍ରରେ ପ୍ରତିଷ୍ଠା ଅର୍ଜନ କରିଥିଲେ । ତେଣୁ ସେ ପୋଥିନାଥ କେଦାରନାଥ ଭାବେ ସୁପରିଚିତ । ତାଙ୍କର ଲିଖିତ ଅନେକ ପୁସ୍ତକ ମଧ୍ୟରେ ଅଭିନବ ଭାରତ ଇତିହାସ(୧୯୩୮), ଅଭିନବ ଇଂଲଣ୍ଡ ଇତିହାସ(୧୯୪୦) ନୂତନ ଭାରତ ଇତିହାସ(୧୯୫୦), ଅଭିନବ ପୃଥିବୀ ଇତିହାସ(୧୯୫୭), ଖାରବେଳ ଇତିହାସ (୧୯୬୧), ଅଭିନବ ସାମାଜିକ ଶିକ୍ଷା (୧୯୬୩), ଅମରକବି ଜୟଦେବ(୧୯୬୪), ଖୁରୁଧା ଇତିହାସ(୧୯୬୯), ଶ୍ରୀଜୟଦେବ ଓ ଶ୍ରୀଗୀତଗୋବିନ୍ଦ(୧୯୭୩), ଧଉଳି ଇତିହାସ(୧୯୭୫) ଏବଂ The Jagannath temples in Eastern India(1977) ଇତ୍ୟାଦି ପ୍ରମୁଖ ।

'ଭୁବନେଶ୍ୱର ଇତିହାସ' ତାଙ୍କର ତୀକ୍ଷ୍ଣ ଦୃଷ୍ଟିଭଙ୍ଗୀ ଓ ଶାଣିତ ଗବେଷଣାର ଫଳଶ୍ରୁତି । ଉକ୍ତ ପୁସ୍ତକଟି ପୂର୍ବରୁ ରଚିତ ହୋଇଥିଲେ ମଧ୍ୟ ତାଙ୍କ ଜୀବଦ୍ଦଶାରେ ମୁଦ୍ରିତ ହୋଇପାରି ନ ଥିଲା ।